# ଅଧ୍ୟାପକ ଶ୍ରୀଧର ଦାସ

ଲେଖକ :
ଡକ୍ଟର ରବିନାରାୟଣ ମହାରଣା

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ, ସଂସ୍କୃତି ଭବନ
ଭୁବନେଶ୍ୱର - ୭୫୧୦୧୪

ପ୍ରଥମ ପ୍ରକାଶ : ୨୦୦୮

ଡି.ଟି.ପି ଓ ମୁଦ୍ରଣ :
ଅରୋପ୍ରଭା ପ୍ରିଣ୍ଟର୍ସ, ଆଇ.ଡି.ମାର୍କେଟ୍
ଆଇ.ଆର୍.ସି. ଭିଲେଜ୍, ଭୁବନେଶ୍ୱର-୭୫୧୦୧୫

ମୂଲ୍ୟ : ଟ ୮୦.୦୦ (ଅଶୀ ଟଙ୍କା ମାତ୍ର)

# ADHYAPAK SRIDHAR DAS

Author :
**Dr. Rabinarayan Moharana**

Published by :
**Orissa Sahitya Akademi,** Sanskruti Bhawan
Bhubaneswar - 751014

First Edition : 2008

D.T.P. & Printed at :
Auroprava Printers, I.D. Market,
IRC Village, Bhubaneswar-15

Price : Rs. 80.00 (Rupees eighty only)

ISBN : 81-7586-137-1

# ପ୍ରାଗ୍‌ଭାଷ

ଅଧ୍ୟାପକ ଶ୍ରୀଧର ଦାସ (୧୯୦୧-୧୯୮୮) ଏକ ଧାରାରେ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ପ୍ରାବନ୍ଧିକ, କବି, ନାଟ୍ୟକାର, ଅନୁବାଦକ, ଶିଶୁସାହିତ୍ୟିକ ଭାବରେ ସୁପରିଚିତ । ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ଅନନ୍ୟ ସାଧକ ଭାବରେ ସେ ଦୀର୍ଘକାଳ ଧରି ସାହିତ୍ୟ ସେବାରେ ବ୍ରତୀ ରହିଥିଲେ । ତାଙ୍କର ଗଭୀର ଅନୁସନ୍ଧିତ୍ସା ଓ ଗବେଷଣା ଫଳରେ ଓଡ଼ିଆ ସାହିତ୍ୟର ଅନେକ ବିସ୍ମୃତ ଅଧ୍ୟାୟକୁ ଲୋକଲୋଚନକୁ ଆଣିବାରେ ସେ ସମର୍ଥ ହେବା ସଙ୍ଗେ ସଙ୍ଗେ ତାହା ପାଠକମାନଙ୍କ ଆଲୋଚନା ପର୍ଯ୍ୟାୟଭୁକ୍ତ ହୋଇପାରିଛି । ଅଧ୍ୟାପକ ଶ୍ରୀଧର ଦାସଙ୍କ ସାହିତ୍ୟ ମଧ୍ୟରେ ମୌଳିକ ସୃଷ୍ଟି ଯେପରି ବୌଦ୍ଧିକତାରେ ଋଦ୍ଧିମନ୍ତ ତାଙ୍କର ଅନୁବାଦ ମଧ୍ୟ ସେହିପରି ପ୍ରାଣବନ୍ତ । ସାହିତ୍ୟ ସୃଷ୍ଟି ଓ ଅନୁବାଦରେ ସିଦ୍ଧହସ୍ତତା ପ୍ରତିପାଦନ କରିଥିବା ଏହି ଯଶସ୍ୱୀ ଲେଖକ ଜଣେ ବ୍ୟାକରଣକାର ଓ ଅଭିଧାନ ପ୍ରଣେତା ଭାବରେ ମଧ୍ୟ ଓଡ଼ିଆ ସାହିତ୍ୟ ଜଗତରେ ଖ୍ୟାତିଲାଭ କରିଛନ୍ତି । ଓଡ଼ିଆ ସାହିତ୍ୟର ଅନେକ ବିଭବରେ ଲେଖନୀ ଚାଳନା କରି ଯଶପ୍ରାପ୍ତ ହୋଇଥିବା ଏହି ସାରସ୍ୱତ ସାଧକଙ୍କ ଜୀବନ ସଂଗ୍ରାମ, ସୃଷ୍ଟି ଓ ପ୍ରତିଭା ସମ୍ପର୍କରେ ଆକଳନ କରି ଏକ ପୁସ୍ତିକା ଆକାରରେ ପ୍ରକାଶ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀ ଦୀର୍ଘଦିନରୁ ପ୍ରଚେଷ୍ଟା କରିଆସୁଥିଲା । ଏହି ପ୍ରଜ୍ଞାଦୀପ୍ତ ସାରସ୍ୱତ ପ୍ରତିଭାଧରଙ୍କ ସମ୍ପର୍କରେ ଏକ ଆଲେଖ୍ୟ ପ୍ରସ୍ତୁତ କରିବାକୁ ଏକାଡେମୀ ପକ୍ଷରୁ ଅଧ୍ୟାପକ ଡକ୍ଟର ରବି ନାରାୟଣ ମହାରଣାଙ୍କୁ ଅନୁରୋଧ ପୂର୍ବକ ଦାୟିତ୍ୱ ଅର୍ପଣ କରାଯାଇଥିଲା । ଏକାଡେମୀର ଅନୁରୋଧକୁ ସାଗ୍ରହରେ ଡକ୍ଟର ମହାରଣା ସ୍ୱୀକାର କରି ଉକ୍ତ ପାଣ୍ଡୁଲିପି ସ୍ୱଳ୍ପ ସମୟ ବ୍ୟବଧାନରେ ଅତ୍ୟନ୍ତ କୁଶଳତାର ସହ ପ୍ରସ୍ତୁତ କରି ଏକାଡେମୀକୁ ପ୍ରକାଶନ ନିମନ୍ତେ ପ୍ରଦାନ କରିଥିଲେ । ଏଣୁ ଏହି ଅବସରରେ ଉକ୍ତ ପୁସ୍ତିକାର ରଚନାକାରଙ୍କୁ ଏକାଡେମୀ ପକ୍ଷରୁ ଧନ୍ୟବାଦ ଜ୍ଞାପନ କରୁଅଛି ।

ଓଡ଼ିଆ ସାହିତ୍ୟର ଉନ୍ମେଷ କାଳରୁ ଉତ୍ତରଣ ପର୍ଯ୍ୟନ୍ତ ଯେଉଁ ବିଶିଷ୍ଟ ବରେଣ୍ୟ ସାରସ୍ୱତ ସାଧକଗଣଙ୍କ ଅବଦାନରେ ଆମ ଭାଷା ଓ ସାହିତ୍ୟ ଋଦ୍ଧିମନ୍ତ ହୋଇପାରିଛି, ସେମାନଙ୍କ ଜୀବନୀ, କୃତି ଓ ସାହିତ୍ୟ ସାଧନା ସମ୍ପର୍କରେ ଉତ୍ତର ପିଢ଼ିର ଲେଖକ ଓ ପାଠକମାନଙ୍କୁ ଅବଗତ କରାଇ ପୂର୍ବସୂରୀମାନଙ୍କର ଭାବଧାରାରେ ଉଦ୍‌ବୁଦ୍ଧ କରାଇବା ଲକ୍ଷ୍ୟରେ ଓଡ଼ିଶା ସାହିତ୍ୟ ଏକାଡେମୀ ଅନେକ କ୍ଷୁଦ୍ର ପୁସ୍ତକ (ମନୋଗ୍ରାଫ୍) ପ୍ରକାଶ କରିଚାଲିଛନ୍ତି । ଏକାଡେମୀର ଅନ୍ୟାନ୍ୟ ପ୍ରକାଶିତ ପୁସ୍ତିକାମାନଙ୍କ ମଧ୍ୟରୁ ଏ ପ୍ରକାରର ପୁସ୍ତିକାର ପାଠକୀୟ ଚାହିଦା ବେଶ୍ ଉତ୍ସାହଜନକ ହୋଇଥିବାରୁ ଏକାଡେମୀ ପ୍ରତିବର୍ଷ ପ୍ରାୟ ଏହି ସ୍ତରର ଅନେକ ପୁସ୍ତିକା ପ୍ରକାଶନ କରୁଅଛି । 'ଅଧ୍ୟାପକ ଶ୍ରୀଧର ଦାସ' ମନୋଗ୍ରାଫ୍‌ଟି ଏହି ପର୍ଯ୍ୟାୟଭୁକ୍ତ ପୁସ୍ତକ । ଶ୍ରୀଧର ଦାସଙ୍କ ସମ୍ପର୍କରେ ଅନେକ ତଥ୍ୟ ଏହି ପୁସ୍ତକରେ ପରିବେଷଣ କରାଯାଇଥିବାରୁ ଭବିଷ୍ୟତରେ ଏହି ପୁସ୍ତିକାଟି ଲେଖକଙ୍କ ଉପରେ ଏକ ପୂର୍ଣ୍ଣାଙ୍ଗ ଆଲୋଚନା ପୁସ୍ତକ ଭାବରେ ଦାବୀ ଜାହିର କରିବ ଏଥିରେ ସନ୍ଦେହ ନାହିଁ । ସୁଲଭ ମୂଲ୍ୟରେ ପୁସ୍ତକ ପ୍ରକାଶନ ଏ ପବିତ୍ର ଅନୁଷ୍ଠାନର ଏକ ପ୍ରମୁଖ କାର୍ଯ୍ୟକ୍ରମ ।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଚାଶବର୍ଷ ପୂର୍ତ୍ତି ସୁବର୍ଣ୍ଣ ଜୟନ୍ତୀ ପାଳନ ଉପଲକ୍ଷେ ଓଡ଼ିଆ ସାହିତ୍ୟର ଏହି ପ୍ରବୀଣ ସାହିତ୍ୟାକାରଙ୍କ ଜୀବନୀ ଓ ପ୍ରତିଭା ସମ୍ପର୍କରେ ଏକାଡେମୀ ପକ୍ଷରୁ ଆଲେଖ୍ୟଟିଏ ପ୍ରକାଶ ପାଉଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ଉକ୍ତ ପୁସ୍ତକଟି ଶ୍ରୀଧର ଦାସଙ୍କ ସମ୍ପର୍କରେ ଆଗାମୀ ପିଢ଼ିର ସାହିତ୍ୟିକମାନଙ୍କୁ ଅନୁପ୍ରାଣିତ କରାଇବା ସଙ୍ଗେ ସଙ୍ଗେ ପ୍ରୋତ୍ସାହନ ଯୋଗାଇବ । ପାଠକପାଠିକାମାନଙ୍କ ଦ୍ୱାରା ଏହି ମର୍ଯ୍ୟାଦାବନ୍ତ ପ୍ରକାଶନଟି ଆଦୃତ ହେଲେ ଏକାଡେମୀର ଶ୍ରମ ଲାଘବ ହେବ ବୋଲି ଆଶା କରୁଛି ।

ଭୁବନେଶ୍ୱର
ରଥଯାତ୍ରା, ୨୦୦୮

ଡକ୍ଟର ହରପ୍ରସାଦ ପରିଛା ପଟ୍ଟନାୟକ
ସଚିବ

# ଅବତରଣିକା

ଅଧ୍ୟାପକ ଶ୍ରୀ ଶ୍ରୀଧର ଦାସ (୧୯୦୧-୧୯୮୮) ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଅତ୍ୟନ୍ତ ସ୍ପର୍ଦ୍ଧାଶୀଳ ବ୍ୟକ୍ତିତ୍ୱ । ତାଙ୍କ ପାଇଁ ଅନେକ ବିଶେଷଣ ବ୍ୟବହାର କରାଯାଇପାରେ, ଯେପରି ଶିକ୍ଷକ, ଅଧ୍ୟାପକ, ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ, ଶିକ୍ଷାବିତ୍, କବି, ନାଟ୍ୟକାର, ଅନୁବାଦକ ଓ ବୈୟାକରଣ ଇତ୍ୟାଦି ଇତ୍ୟାଦି । ତେବେ ସର୍ବାନ୍ତକରଣରେ ସେ ଯେ ଜଣେ ଅଧ୍ୟାପକ ଥିଲେ, ତାହା ସର୍ବୋତଭାବେ କୁହାଯାଇପାରେ । ତାଙ୍କର ଜୀବନ ଥିଲା ଅତ୍ୟନ୍ତ ସଂଘର୍ଷମୟ । ମାତ୍ର ସେ ଜୀବନ ସଂଗ୍ରାମରେ କେବେ ହାରି ଯାଇନାହାନ୍ତି, ଅଧିକନ୍ତୁ ସେ ନିଜର ପ୍ରଚଣ୍ଡ ଆତ୍ମବିଶ୍ୱାସ ବଳରେ ନିଜର ଭାଗ୍ୟକୁ ନିଜେ ଗଢ଼ି ତୋଳି ଧରିଛନ୍ତି । ପିତା ତାଙ୍କର ଚାଟଶାଳୀ ପାଠ ପଢ଼ି କୌଣସି ଏକ ମାଇନର ସ୍କୁଲର ଶିକ୍ଷକଟିଏ ହୋଇପାରିଥିଲେ, ମାତ୍ର ତାଙ୍କର ସ୍ୱପ୍ନ ଥିଲା ଅତ୍ୟନ୍ତ ସୁଦୂରପ୍ରସାରୀ । ପୁତ୍ରର ପାଠପଢ଼ାରେ ଅସାମାନ୍ୟ କୃତିତ୍ୱକୁ ଲକ୍ଷ୍ୟ କରି ଅନେକ ସମୟରେ ସେ ପୁତ୍ରର ଭବିଷ୍ୟତ ସମ୍ପର୍କରେ ଚିନ୍ତା କରିଛନ୍ତି । ପୁତ୍ରର ବୃତ୍ତିରେ ପୁତ୍ରର ଉଚ୍ଚତର ଅଧ୍ୟୟନ କିଛି କମ ଗୌରବମୟ କଥା ନୁହେଁ । ଏକ ସଂଘର୍ଷଶୀଳ ତଥା ଦୁର୍ଗମ ଶିକ୍ଷାପଥରେ ଶିଶୁ ଶ୍ରୀଧର ପିତାଙ୍କ ଆଶୀର୍ବାଦରେ ଆଗେଇ ଯାଇଛନ୍ତି ଆଗକୁ ଆଗକୁ । ମାଟ୍ରିକ୍ୟୁଲେସନ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲାପରେ ଅବଶ୍ୟ ତାଙ୍କର ଦାୟିତ୍ୱବୋଧ ଆସିଛି । ଅଯାଚିତ ଭାବରେ ଆସିଥିବା ପ୍ରଥମ ଚାକିରିକୁ ସେ ପିତାଙ୍କର ଇଚ୍ଛାରେ ହାତଛଡ଼ା ନକରି ଏକ ଅସ୍ଥାୟୀ ପ୍ରଧାନଶିକ୍ଷକ ଭାବରେ ନିଜର କର୍ମମୟ ଜୀବନକୁ ଆରମ୍ଭ କରିଛନ୍ତି । ମାତ୍ର ଅଧ୍ୟୟନ ବୃତ୍ତିରୁ ନିଜକୁ ନିବୃତ୍ତ ରଖିନାହାନ୍ତି । କ୍ରମଶଃ ସେ ଶିକ୍ଷା କ୍ଷେତ୍ରରେ ଅଧିକାର କରିଛନ୍ତି ଶିକ୍ଷାର ସର୍ବୋଚ୍ଚ ଡିଗ୍ରୀ ଏମ୍.ଏ । ସରକାରୀ ଚାକିରିକୁ ଉପେକ୍ଷା କରିଛନ୍ତି । ଶେଷ ଜୀବନ ପର୍ଯ୍ୟନ୍ତ ସେ ଉତ୍କଳ ଖ୍ରୀଷ୍ଟିଆନ କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ କାର୍ଯ୍ୟ ସମ୍ପନ୍ନ କରିଛନ୍ତି ଏବଂ ସାହିତ୍ୟ ସେବାରେ

ନିଜକୁ ଉତ୍ସର୍ଗ କରିଛନ୍ତି । ନିଜର ଜୀବନ କାଳ ମଧ୍ୟରେ ସେ କିଛି ମୌଳିକ ସୃଷ୍ଟି, କିଛି ବ୍ୟାକରଣ ଓ ଅଭିଧାନ ଇତ୍ୟାଦି ବିଭିନ୍ନ ପୁସ୍ତକ ଲେଖିଛନ୍ତି, ମାତ୍ର ଅନେକ ଅନୁବାଦ କାର୍ଯ୍ୟ ସମ୍ପନ୍ନ କରିଛନ୍ତି । ତେବେ ଶେଷ ପର୍ଯ୍ୟନ୍ତ ସେ ବୈୟାକରଣ ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କ ଜୀବନରେ ଅନେକ ପ୍ରତିଭାଶାଳୀଙ୍କ ପ୍ରଭାବ ରହିଛି । ନିମ୍ନ ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଦିବ୍ୟସିଂହ ମହାନ୍ତିଙ୍କ ଠାରୁ ଆରମ୍ଭ କରି ପୁରୀ ଜିଲ୍ଲା ସ୍କୁଲର ପ୍ରଧାନଶିକ୍ଷକ ଉପେନ୍ଦ୍ରବାବୁ ବା ଚନ୍ଦ୍ରମୋହନ ମହାରଣା, ପୁଣି ଅନ୍ୟପକ୍ଷରେ ସତ୍ୟବାଦୀର ଶିକ୍ଷକ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହରଙ୍କ ଠାରୁ ଆରମ୍ଭ କରି ଠକ୍କର ବାପା ଓ ମହାତ୍ମାଗାନ୍ଧୀଙ୍କ ପର୍ଯ୍ୟନ୍ତ ଅନେକଙ୍କ ବ୍ୟକ୍ତିତ୍ୱର ପ୍ରଭାବରେ ତାଙ୍କର ଜୀବନାଦର୍ଶ ଗଠିତ ହୋଇଛି । ତେଣୁ ଶେଷ ପର୍ଯ୍ୟନ୍ତ ସେ ହୋଇଉଠିଛନ୍ତି କର୍ମଯୋଗୀ । କର୍ମ ମଧ୍ୟରେ ସେ ନିଜ ଜୀବନକୁ ଉପଭୋଗ କରିଛନ୍ତି ଏବଂ କର୍ମ ମଧ୍ୟରେ ଜୀବନକୁ କିପରି ଉପଭୋଗ କରିବାକୁ ହୁଏ ତାହା ମଧ୍ୟ ସେ ଶିକ୍ଷା ଦେଇଛନ୍ତି । କେବଳ ନିଜର ସନ୍ତାନମାନଙ୍କୁ ନୁହେଁ, ଅଧିକନ୍ତୁ ସେ ନିଜର ସନ୍ତାନତୁଲ୍ୟ ଛାତ୍ରମାନଙ୍କୁ ମଧ୍ୟ ସେହି ମାର୍ଗରେ ପରିଚାଳିତ ହେବାପାଇଁ ସୁପରାମର୍ଶ ପ୍ରଦାନ କରିଛନ୍ତି । ଓଡ଼ିଆ ସାହିତ୍ୟରେ ଏହିଭଳି ଏକ ଶ୍ରଦ୍ଧେୟ ବ୍ୟକ୍ତିତ୍ୱଙ୍କର ସାମଗ୍ରିକ ତଥା ସାଦୃଶ୍ୟ ମୂଲ୍ୟାଙ୍କନ ପାଇଁ ଏହି ପୁସ୍ତକରେ ପ୍ରଚେଷ୍ଟା କରାଯାଇଅଛି ।

ଅଧ୍ୟାପକ ଶ୍ରୀ ଶ୍ରୀଧର ଦାସଙ୍କ ଉପରେ ଏକ ସମୀକ୍ଷାତ୍ମକ ଜୀବନୀ ପୁସ୍ତକ (Monograph) ପ୍ରସ୍ତୁତ କରିବା ନିଶ୍ଚିତ ଭାବରେ ଏକ ଆୟାସସାଧ୍ୟ କର୍ମ । ତେବେ ପୁସ୍ତକଟିର ରଚନା କାଳରେ ଯେଉଁମାନେ ଆନ୍ତରିକତାର ସହିତ ଏ ଲେଖକକୁ ଅକୁଣ୍ଠିତ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ଏହି ଅବସରରେ ସ୍ମରଣ କରିବା ପୂର୍ବକ ସେମାନଙ୍କ ନିକଟରେ ଋଣ ସ୍ୱୀକାର କରୁଅଛି ।

ଏତଦ୍‌ବ୍ୟତୀତ ଅଧ୍ୟାପକ ଶ୍ରୀଧର ଦାସଙ୍କର ଜ୍ୟେଷ୍ଠପୁତ୍ର ତଥା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କବି ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ ଓ କନିଷ୍ଠ ପୁତ୍ର ତଥା ଅବସରପ୍ରାପ୍ତ ଦକ୍ଷ ଇଞ୍ଜିନିୟର ରଘୁନାଥ ପ୍ରସାଦ ଦାସ ବ୍ୟକ୍ତିଗତ ଭାବରେ ବହୁ ଦୁଷ୍ପ୍ରାପ୍ୟ ପାଣ୍ଡୁଲିପି ଓ ତଥ୍ୟ ଲେଖକଙ୍କୁ ପ୍ରଦାନ କରିଛନ୍ତି, ଯାହା ବ୍ୟତିରେକ ଏ ପୁସ୍ତକ ରଚନା ସମ୍ପୂର୍ଣ୍ଣ ହେବା ଅତ୍ୟନ୍ତ କଷ୍ଟକର ହୋଇପଡ଼ିଥାନ୍ତା । ତେଣୁ ଏହି ଅବସରରେ ଲେଖକ ସେମାନଙ୍କ ଠାରେ ମଧ୍ୟ ନିଜ ହୃଦୟର କୃତଜ୍ଞତା ଜ୍ଞାପନ କରୁଅଛି ।

**ରବିନାରାୟଣ ମହାରଣା**

**ଲେଖକ**

# ସୂଚୀପତ୍ର



***

# ସାରସ୍ୱତ ଜୀବନୀ

ଅଧ୍ୟାପକ ଶ୍ରୀଧର ଦାସ ପୁରୀ ଜିଲ୍ଲା ଅନ୍ତର୍ଗତ କାକଟପୁର ଅଞ୍ଚଳର ନାଉସିରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଜନ୍ମକାଳ ୧୯୦୧ ମସିହା ଅକ୍ଟୋବର ମାସ ୪ ତାରିଖ ।[୧] ପିତାଙ୍କ ନାମ ଥିଲା ଶ୍ୟାମାଚରଣ ଦାସ ଓ ମାତାଙ୍କ ନାମ ଥିଲା ଶ୍ରଦ୍ଧାମଣି ଦେବୀ । ପିତା ଶ୍ୟାମାଚରଣ ଥିଲେ ଜଣେ ଶିକ୍ଷକ । ସେତେବେଳେ ସେ ମାତ୍ର ପୁରୁଣା ରୀତିରେ ଚାଟଶାଳି ପାଠକୁ ସମାପ୍ତ କରି ଏକ ସାଧାରଣ ଶିକ୍ଷକ ତାଲିମ ପ୍ରାପ୍ତି ପରେ ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ସମକାଳୀନ ସାହିତ୍ୟ ଓ ଗଣିତରେ ସେ ଥିଲେ ପ୍ରବୀଣ । ଏହାଛଡ଼ା ନିଜର ଅଧ୍ୟବସାୟ ବଳରେ ସେ ବଙ୍ଗଳା ଓ ହିନ୍ଦୀ ଭାଷାକୁ ମଧ୍ୟ ଆୟତ୍ତ କରିପାରିଥିଲେ । ଜ୍ୟୋତିଷ ଶାସ୍ତ୍ର ଓ ଆୟୁର୍ବେଦୀୟ ଚିକିତ୍ସାରେ ମଧ୍ୟ ତାଙ୍କର ପ୍ରବେଶ ସମଧିକ ଥିଲା । ଏହିସବୁ କାରଣରୁ ଆଖପାଖ ଗ୍ରାମମାନଙ୍କରେ ସେ ବିଶେଷ ଭାବରେ ଲୋକପ୍ରିୟତା ଅର୍ଜନ କରିପାରିଥିଲେ । ତାଙ୍କର ବିଶେଷ ଜମିବାଡ଼ି ନଥିଲା । ବିଦ୍ୟାଳୟର ସ୍ୱଳ୍ପ ବେତନ ଓ ଗ୍ରାମବାସୀଙ୍କ ଠାରୁ ମିଳୁଥିବା 'ସିଧା'ରେ କୌଣସିମତେ ସେ ନିଜର ପରିବାରକୁ ପ୍ରତିପୋଷଣ ମାତ୍ର କରୁଥିଲେ । ସେହି କାରଣରୁ ସେ ପୁତ୍ର ଶ୍ରୀଧର ଉପରେ ଖୁବ୍ ଆଶାୟୀ ଥିଲେ । ଶିକ୍ଷକ ପିତାଙ୍କର ଯୋଗ୍ୟତମ ପୁତ୍ର

---

(୧) ଶ୍ରୀଧର ଦାସଙ୍କ ଜନ୍ମ ସମୟ ସ୍କୁଲ ସାର୍ଟିଫିକେଟ୍‌ରେ ୧୯୦୨ ମସିହା ଅକ୍ଟୋବର ମାସ ୧ ତାରିଖ ବୋଲି ଉଲ୍ଲେଖ ଥିଲେ ମଧ୍ୟ ଜାତକାନୁସାରେ ତାହା ୧୯୦୧ ମସିହା ଅକ୍ଟୋବର ମାସ ୪ ତାରିଖ ବୋଲି ତାଙ୍କ ଆତ୍ମଜୀବନୀ 'ସୁଅ ମୁହଁର ପତର'ରେ ଉଲ୍ଲେଖ କରାଯାଇଛି ।

ସୁଅ ମୁହଁର ପତର / ପୃ : ୧ (ପ୍ରକାଶକ : ଶ୍ରୀଧର ଦାସ, ୧ମ ପ୍ରକାଶ : ୧୯୮୨)*

* ଏହି ଗ୍ରନ୍ଥରେ କେବଳ 'ସୁଅ ମୁହଁର ପତର'ର ପ୍ରଥମ ପ୍ରକାଶନକୁ ସହାୟକ ଗ୍ରନ୍ଥ ଭାବରେ ବ୍ୟବହାର କରାଯାଇଛି ।

ଶ୍ରୀଧର ମଧ୍ୟ ପିତାଙ୍କର ଆଶାକୁ ଚରିତାର୍ଥ କରି ପରବର୍ତ୍ତୀ ପର୍ଯ୍ୟାୟରେ ନିଜର ସମଗ୍ର ଜୀବନ ଅଧ୍ୟାପନା ଦିଗରେ ଉତ୍ସର୍ଗ କରିଦେଇଥିଲେ । ଏହି ମର୍ମରେ ତାଙ୍କ ସାରସ୍ୱତ ଜୀବନୀକୁ ନିମ୍ନୋକ୍ତ ତିନିଗୋଟି ପର୍ଯ୍ୟାୟରେ ବିଭାଜିତ କରି ଆଲୋଚନା କରାଯାଇପାରେ । ଯେପରି :—

(କ) ପ୍ରାରମ୍ଭିକ ଶିକ୍ଷାକାଳ (୧୯୦୧-୧୯୨୪)

(ଖ) କର୍ମମୟ ଜୀବନ ସହିତ ଶିକ୍ଷା ଓ ସୃଜନଶୀଳତା (୧୯୨୪-୧୯୬୮)

(ଗ) ଅବସର ଗ୍ରହଣ ପରବର୍ତ୍ତୀ ଜୀବନ (୧୯୬୮-୧୯୮୮)

## (କ) ପ୍ରାରମ୍ଭିକ ଶିକ୍ଷାକାଳ (୧୯୦୧-୧୯୨୪) .

ପାଞ୍ଚବର୍ଷ ବୟସରେ ଶିଶୁ ଶ୍ରୀଧର ପିତାଙ୍କର ସେହି ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇ ନିଜର ବିଦ୍ୟାରମ୍ଭ କରନ୍ତି । ଅଚିରେ ତାଙ୍କର ମେଧାବିତ୍ୱ ବିଦ୍ୟାଳୟ ସବ୍‌ଇନସ୍‌ପେକ୍ଟର ଆର୍ତ୍ତତ୍ରାଣ ତ୍ରିପାଠୀଙ୍କର ଦୃଷ୍ଟି ଆକର୍ଷଣ କରେ । ସେ ଶିଶୁ ଶ୍ରୀଧରଙ୍କୁ ବୃତ୍ତି ପରୀକ୍ଷାକୁ ପଠାଇବାକୁ ନିର୍ଦ୍ଦେଶ ଦିଅନ୍ତି । ବୃତ୍ତି ପରୀକ୍ଷାର କେନ୍ଦ୍ର ଥାଏ ନିଜ ବିଦ୍ୟାଳୟଠାରୁ ୧୨ ମାଇଲ ଦୂରବର୍ତ୍ତୀ ଗୋପର ମଧ୍ୟ ଭର୍ଣ୍ଣାକୁଲାର ବିଦ୍ୟାଳୟରେ । ପିତା ଶ୍ୟାମାଚରଣଙ୍କର ଆନନ୍ଦର ସୀମା ନଥାଏ । ସେ ପୁତ୍ର ଶ୍ରୀଧରଙ୍କୁ ସାଥୀରେ ନେଇ ଗୋପ ଯାଆନ୍ତି ଓ ସେଠାରେ ଦୁଇଦିନ ଧରି ପରୀକ୍ଷାର ପରିସମାପ୍ତି ପରେ ପୁନଶ୍ଚ ପୁତ୍ରକୁ ସାଥୀରେ ଧରି ନିଜ ଗ୍ରାମକୁ ଫେରିଆସନ୍ତି । ଯଥା ସମୟରେ ବୃତ୍ତି ପରୀକ୍ଷାର ଫଳାଫଳ ପ୍ରକାଶ ପାଏ । ପୁତ୍ର ଶ୍ରୀଧର ଯେପରି ପିତାଙ୍କର ସ୍ୱପ୍ନକୁ ସାକାର କରିବା ପଥରେ ପ୍ରଥମ କରି ପଦାର୍ପଣ କରନ୍ତି । ପିତା ଅତି ଖୁସିରେ ସେହି ସମ୍ବାଦକୁ ପୁତ୍ରକୁ ଜଣାନ୍ତି ଯେ, କାକଟପୁର ଭର୍ଣ୍ଣାକୁଲାର ସ୍କୁଲରେ ପାଠ ପଢ଼ିଲେ ମାସିକ ଦୁଇଟଙ୍କା ବୃତ୍ତି ମିଳିବ । ମାତ୍ର ଦୁଇ ଟଙ୍କାରେ ତ ପାଠପଢ଼ାର ସମସ୍ତ ଖର୍ଚ୍ଚ ତୁଲାଇ ହେବନାହିଁ । ତେଣୁ ମଙ୍ଗଳା ଠାକୁରାଣୀଙ୍କ ସେବକଙ୍କ ଘରେ ରହି ସେ ପାଠ ପଢ଼ିବାର ସମସ୍ତ ବନ୍ଦୋବସ୍ତ ହୁଏ । ବିଭିନ୍ନ ପ୍ରକାରର ଘାତ ପ୍ରତିଘାତ ମଧ୍ୟ ଦେଇ ସେ ସେଦିନ ପାଠପଢ଼ାକୁ ଅବ୍ୟାହତ ରଖନ୍ତି । ସେଦିନର ସ୍ମୃତିଚାରଣ କରି ସେ ନିଜ ଆତ୍ମକାହାଣୀରେ ଉଲ୍ଲେଖ କରିଛନ୍ତି : "ମୋତେ ଅନେକ ଦିନ ବେତର ପ୍ରହାର ଖାଇବାକୁ ହେଉଥିଲା । ଅବଶ୍ୟ ପାଠପଢ଼ା ପାଇଁ ନୁହେଁ; ଶ୍ରେଣୀରେ ଘୁମାଇବା ପାଇଁ । ମୁଁ ପ୍ରତ୍ୟହ ପଖାଳ ଭାତ ତୋରାଣୀ ଖାଇ ସ୍କୁଲକୁ ଯାଉଥିଲି । ପଢ଼ା ଆରମ୍ଭ ହେବାର ଅଳ୍ପ ସମୟ ପରେ ଘୁମ ମାଡ଼େ । ମୁଁ ଢୁଲାଉଥିଲା ବେଳେ ହେଡ୍‌ପଣ୍ଡିତ ମହାଶୟ ବେତ ଧରି ବେଞ୍ଚ ପାଖରେ ଲୁଚି ରହି ହଠାତ୍ ପିଠିରେ

ପାହାର ଦିଅନ୍ତି । ମୁଁ ବ୍ୟାକୁଳ ଭାବରେ ଏଣେତେଣେ ଚାହୁଁଥିବା ବେଳେ x x x x ପିଲାମାନେ ହସନ୍ତି; ମୁଁ କାନ୍ଦି କାନ୍ଦି ରହେ ।"[୨] ସେଦିନର ସେହି ଘୁମନ୍ତ ପିଲାଟି ହେଡ୍‌ପଣ୍ଡିତ ଶ୍ରୀ ଦିବ୍ୟସିଂହ ମହାନ୍ତିଙ୍କ ବେତ ପାହାରରେ ଏଭଳି ଜାଗ୍ରତ ହୋଇଉଠିଥିଲେ ଯେ ମୃତ୍ୟୁ ପର୍ଯ୍ୟନ୍ତ ସେ ଆଉ ଆଖିରେ ପଲକ ପକାଇ ନାହାନ୍ତି । ଚରୈବତି ଚରୈବତି ନ୍ୟାୟରେ ସେ କେବଳ ପଢ଼ି ଚାଲିଛନ୍ତି; ପଢ଼ାଇ ଚାଲିଛନ୍ତି । ମଧ ଭର୍ଣ୍ଣାକୁଲାର ସ୍କୁଲର ହେଡ୍‌ପଣ୍ଡିତ ଦିବ୍ୟସିଂହ ମହାନ୍ତିଙ୍କ ଜ୍ଞାନ ଗାରିମାରେ ସେଦିନ ଶିଶୁ ଶ୍ରୀଧର ଚକିତ ହୋଇଉଠିଥିଲେ । ପଣ୍ଡିତ ମହାଶୟ ସାହିତ୍ୟ ପଢ଼ାଇଲା ବେଳେ ଗୋଟିଏ ଗୋଟିଏ ଶବ୍ଦ ଉପରେ ଅନେକ ବିଶଦ ଆଲୋଚନା କରନ୍ତି । ତାଙ୍କର ଅଧ୍ୟାପନା ଶ୍ରୀଧରଙ୍କ ପରବର୍ତ୍ତୀ ଜୀବନକୁ ଅନେକାଂଶରେ ପୁଷ୍ଟ କରିଥିଲା ।[୩] ପିତା ଶ୍ୟାମାଚରଣ ସେଦିନ ଚିନ୍ତା କରିଥିଲେ, ପୁତ୍ରର ମଧ ଭର୍ଣ୍ଣାକୁଲାର ପରୀକ୍ଷା ପରେ ତାକୁ କୌଣସି ପ୍ରାଇମେରୀ ସ୍କୁଲରେ ଶିକ୍ଷକ କରାଇଦେଲେ ନିଜର ଆର୍ଥିକ ସ୍ଥିତିରେ କିଛି ପରିବର୍ତ୍ତନ ଆସିବ । ମାତ୍ର ପରୀକ୍ଷାର ଫଳାଫଳ ପ୍ରକାଶ ପାଇବା ପରେ ସେ ନିଜର ନିହିତ ସ୍ୱାର୍ଥକୁ ପଛରେ ପକାଇ ପୁତ୍ରକୁ ଅନ୍ତତଃ ମାଟ୍ରିକ ପର୍ଯ୍ୟନ୍ତ ପଢ଼ାଇବା ପାଇଁ ଇଚ୍ଛା କଲେ । ମାସିକ ବୃତ୍ତି ଚାରିଟଙ୍କାରେ ଏଥର ଛାତ୍ର ଶ୍ରୀଧର ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାନ୍ତି । ପୁରୀ ଜିଲ୍ଲା ସ୍କୁଲରେ ହିଁ ତାଙ୍କର ଚରିତ୍ର ସୁଦୃଢ଼ ହୋଇଉଠିଥିଲା । ଆତ୍ମଜୀବନୀରେ ତାଙ୍କ ସ୍ୱୀକାରୋକ୍ତି ଏହିପରି : "ମୋଟ ଉପରେ ପୁରୀ ଜିଲ୍ଲା ସ୍କୁଲରେ ହିଁ ମୋର ଜୀବନର ମୂଳଦୁଆ ପଡ଼ିଥିଲା । ସେ ସମୟରେ ଯେଉଁ ଶିକ୍ଷକମାନେ ମୋର ଚରିତ୍ର ଗଠନ କରିଥିଲେ, ଯେଉଁ ମହାପୁରୁଷମାନେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ମୋର ଜୀବନ ଉପରେ ପ୍ରଭାବ ପକାଇଥିଲେ x x x x ସେମାନଙ୍କର ମଧୁମୟ ସ୍ମୃତି ହୃଦୟରୁ ଲିଭିବାର ନୁହେଁ ।"[୪] ପୁରୀ ଜିଲ୍ଲା ସ୍କୁଲରେ ସେଦିନ ଶିକ୍ଷକ ଥିଲେ ପଣ୍ଡିତ ଜଗନ୍ନାଥ ରଥ, ପଣ୍ଡିତ ସଦାଶିବ ମିଶ୍ର, ପଣ୍ଡିତ ଭୋଳାନାଥ ଗାଙ୍ଗୁଲି ପ୍ରମୁଖ ବ୍ୟକ୍ତି ବିଶେଷ । ପୁନଶ୍ଚ ସେହି ସ୍କୁଲରେ ପାଠ ପଢୁଥିବାବେଳେ ସେ ଯେଉଁ ପ୍ରଧାନଶିକ୍ଷକଙ୍କ ସଂସ୍ପର୍ଶରେ ଆସିଥିଲେ ସେମାନଙ୍କ

---

(୨) ସୁଅ ମୁହଁର ପତର / ପୃ : ୧୨

(୩) "x x x ତାଙ୍କର (ପଣ୍ଡିତ ଦିବ୍ୟସିଂହ ମହାନ୍ତି) ଅଧ୍ୟାପନା ରୀତି ଆଧୁନିକ ଶିକ୍ଷାନୀତି ସମ୍ମତ ହୋଇନପାରେ; କିନ୍ତୁ ତାହାଦ୍ୱାରା ମୋର ବହୁ ଉପକାର ହୋଇଥିଲା ବୋଲି ମୁଁ ଏବେ ବୁଝୁଛି ।"

ସୁଅ ମୁହଁର ପତର / ପୃ : ୧୨

(୪) ସୁଅ ମୁହଁର ପତର / ପୃ : ୩୯

ମଧ୍ୟରୁ ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା, ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ହେଉଛନ୍ତି ଅନ୍ୟତମ । ଏମାନେ କେବଳ ନିଜର ପ୍ରଗାଢ଼ ପ୍ରଜ୍ଞା ଦ୍ୱାରା ଛାତ୍ର ଶ୍ରୀଧରଙ୍କୁ ଆକୃଷ୍ଟ କରିଥିଲେ ତାହା ନୁହେଁ, ଅଧିକନ୍ତୁ ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ମଧ୍ୟ ସେମାନେ ତାଙ୍କୁ ପ୍ରକୃଷ୍ଟ ପଥର ସନ୍ଧାନ ପ୍ରଦାନ କରିଥିଲେ ।

ପୁରୀ ଜିଲ୍ଲା ସ୍କୁଲର ସମୟ ସୀମା ହେଉଛି : ୧୯୧୬ ମସିହାରୁ ୧୯୨୧-୨୨ ମସିହା । ଏହି ସମୟସୀମା ହେଉଛି ଛାତ୍ର ଶ୍ରୀଧରଙ୍କ ଜୀବନର ଏକ ଦୁର୍ମିଳ ସମୟ । କାରଣ ଏହି ସମୟ ସୀମା ମଧ୍ୟରେ କେବଳ ତାଙ୍କ ଚରିତ୍ର ଗଠନ ହୋଇନାହିଁ, ଅଧିକନ୍ତୁ ସମକାଳୀନ ଦେଶ ଓ କାଳ ସହିତ ସେ କିଛି ପରିମାଣରେ ମଧ୍ୟ ସଂଶ୍ଲିଷ୍ଟ ହୋଇପଡ଼ିଛନ୍ତି । ଏହି ସମୟରେ ଅର୍ଥାତ୍ ୧୯୧୮ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧର ଅବସାନ ପରେ ଦେଶରେ ଶାନ୍ତି ପ୍ରତିଷ୍ଠା ପାଇଁ ଦୁଇ ମିନିଟର ନୀରବ ପ୍ରାର୍ଥନା କରାଯାଇଥିଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ମହାତ୍ମାଗାନ୍ଧୀଙ୍କ ଡାକରାରେ ୧୯୨୦ ମସିହା ବେଳକୁ ସମଗ୍ର ଦେଶରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ଘଟେ । ଏହାର ଗୋଟିଏ ବର୍ଷ ପୂର୍ବରୁ ଅର୍ଥାତ୍ ୧୯୧୯ ମସିହାରେ ପୁରୀର ଉତ୍କଳ ସମ୍ମିଳନୀର ବୈଠକ ବସିଥିଲା । ସେଥିରେ ଆମ ଦେଶର ଅନେକ ପ୍ରତିଷ୍ଠିତ ବ୍ୟକ୍ତି ଯୋଗ ଦେଇଥିଲେ । ଯେପରି : ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର, ବିଶ୍ୱନାଥ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ଜଗବନ୍ଧୁ ସିଂହ ପ୍ରମୁଖ ବ୍ୟକ୍ତିଗଣ । ଏହି ସମୟରେ ସେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ସହିତ ପରିଚିତ ହୁଅନ୍ତି । ସତ୍ୟବାଦୀର ବିଶିଷ୍ଟ ଶିକ୍ଷକଙ୍କ ସଂସ୍ପର୍ଶରେ ଆସିବା ପରେ ନିଜ ମଧ୍ୟରେ ଦେଶପ୍ରେମ ଜାଗ୍ରତ ହେବା ସ୍ୱାଭାବିକ । ତେଣୁ ମହାତ୍ମାଗାନ୍ଧୀଙ୍କ ଡାକରାରେ ତାଙ୍କର କିଶୋର ସୁଲଭ ପ୍ରାଣଟି ଅଚିରେ ଦେଶପ୍ରେମର ପ୍ରଜ୍ୱଳିତ ବହ୍ନିରେ ଝାସ ଦେବାକୁ ବ୍ୟାକୁଳ ହୋଇଉଠେ । ତାଙ୍କର ସ୍ୱୀକାରୋକ୍ତି ଏହିପରି : "ସ୍କୁଲ ଛାଡ଼, କଲେଜ ଛାଡ଼, କଚେରୀ ଛାଡ଼, ବିଦେଶୀ ଲୁଗା ପୋଡ଼, ଖଦଡ଼ ପିନ୍ଧ—ସ୍ୱରାଜ ବଳେ ବଳେ ଫେରିଆସିବ । ଏ ଆନ୍ଦୋଳନ ଆମମାନଙ୍କ ପ୍ରାଣକୁ ଆଲୋଡ଼ିତ କଲା ।"[୫] ତେଣୁ ସ୍ୱାଭାବିକ ଭାବରେ ସେ ସେତେବେଳେ ସ୍ଥିର କରିନେଲେ ଯେ, ସ୍କୁଲ ତ୍ୟାଗ କରିବେ ଓ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଦେଶସେବା କରିବେ । ମାତ୍ର ଜୀବନର ଗତିପଥ ଗୋଟିଏ ନୂତନ ମୋଡ଼ ନେବା ପୂର୍ବରୁ ସ୍କୁଲର ପ୍ରଧାନଶିକ୍ଷକ ପଣ୍ଡିତ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ତାଙ୍କ ଆବେଗସ୍ରୋତକୁ ନିୟନ୍ତ୍ରଣ କରି ଟେକି ଧରିଲେ । ସେ ହିଁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଶ୍ରୀଧରଙ୍କ ସଂଶୟକୁ ମୋଚନ କରିବାକୁ ଯାଇ ପ୍ରଶ୍ନ କରିଥିଲେ, "କଅଣ ଦେଇ ତୁମେ

(୫) ସୁଅ ମୁହଁର ପଥର / ପୃ : ୩୩

ଦେଶର ସେବା କରିବ ? ତୁମର ସ୍ୱାର୍ଥ ବୋଲି କଅଣ ଅଛି ଯେ ତାକୁ ତ୍ୟାଗ କରିବ ? ମୋତିଲାଲ ନେହେରୁ, ଚିତ୍ତରଞ୍ଜନ ଦାସ, ମହାତ୍ମାଗାନ୍ଧୀ ପ୍ରଭୃତିଙ୍କର ଜ୍ଞାନ, ଧନ, ବୁଦ୍ଧି, ପ୍ରତିପତ୍ତି ଅଛି । ସେମାନେ ସେହିସବୁ ସ୍ୱାର୍ଥ ତ୍ୟାଗ କରି ଦେଶସେବା କରୁଛନ୍ତି । ତୁମର କ'ଣ ଅଛି ? ତୁମ ପକ୍ଷରେ ଆଗେ ସ୍ୱାର୍ଥ ଦରକାର; ତାହାପରେ ସେହି ସ୍ୱାର୍ଥକୁ ତ୍ୟାଗ କରିବାର ଦେଖିଲେ ମୁଁ ବଡ଼ ଖୁସି ହେବି ।"[୬] ପ୍ରଧାନଶିକ୍ଷକଙ୍କ ଏହି ଶିକ୍ଷା ପୁନଶ୍ଚ କିଶୋର ଶ୍ରୀଧରଙ୍କୁ ପାଠ ପଢ଼ି ଜ୍ଞାନ ଆହରଣ କରି ବିଦ୍ୱାନ ହେବା ଓ ସତ୍‌ମାର୍ଗରେ ଧନ ଉପାର୍ଜ୍ଜନ କରିବା ଦିଗରେ ମନୋନିବେଶ କରାଇବାକୁ ବାଧ୍ୟ କରିଛି । ବାସ୍, ସେହିଦିନ ଠାରୁ ସେ ଆଉ କୌଣସି ଦିନ କୌଣସି ପ୍ରକାରରେ ଅନ୍ୟ ଚିନ୍ତା ମନକୁ ଆଣିନାହାନ୍ତି । ପାଠ ପଢ଼ି ଜ୍ଞାନ ବୃଦ୍ଧି କରିବା ସହିତ ଜ୍ଞାନକୁ ବିତରଣ କରିବାକୁ ଜୀବନର ସଂକଳ୍ପ ବୋଲି ମନେ କରିଛନ୍ତି । ସେତେବେଳେ ସେ ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଯେଉଁସବୁ ପୁସ୍ତକମାନ ପୁରସ୍କାର ସ୍ୱରୂପ ପାଇଛନ୍ତି, ସେସବୁକୁ ସେ ଅତ୍ୟନ୍ତ ଉତ୍କଣ୍ଠାର ସହିତ ଆତ୍ମସ୍ଥ କରିଦେଇଛନ୍ତି । ସେହିସବୁ ପୁସ୍ତକଗୁଡ଼ିକ ମଧ୍ୟରେ ରାଧାନାଥ ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳୀ, ଗଙ୍ଗାଧରଙ୍କ ପ୍ରଣୟ ବଲ୍ଲରୀ, ତପସ୍ୱିନୀ, ଉତ୍କଳ ଲକ୍ଷ୍ମୀ ବା ଚିନ୍ତାମଣି ମହାନ୍ତିଙ୍କ ବିକ୍ରମାଦିତ୍ୟ ପ୍ରଭୃତି ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ । ଅନ୍ୟପକ୍ଷରେ ସେ ବିଦ୍ୟାଳୟର ଗ୍ରନ୍ଥାଗାରରୁ ବିଭିନ୍ନ ଇଂରାଜୀ ପୁସ୍ତକ, ଯେପରି : Lambs' Tales from Shakespeare, Miss Milford ଙ୍କ Our Village, ଲାଲ ବିହାରୀ ଦେଓଙ୍କର Bengal Peasant Life ଓ Folk Tales of Bengal ବା Smile ଙ୍କ Character ପ୍ରଭୃତି ପୁସ୍ତକକୁ ଆଣି ସେଥିରେ ମଧ୍ୟ ନିଜର ମନକୁ ମଗ୍ନ ରଖିଥିଲେ । ସେତେବେଳେ ସତ୍ୟବାଦୀ ସ୍କୁଲର ସୁନାମ ବେଶ୍ ବ୍ୟାପ୍ତ ଥିଲା । ତେଣୁ ଜ୍ଞାନାନ୍ୱେଷୀ ଶ୍ରୀଧର ସତ୍ୟବାଦୀ ପର୍ଯ୍ୟନ୍ତ ମଧ୍ୟ ଦୌଡ଼ି ଯାଇଛନ୍ତି ସମକାଳୀନ ଜ୍ଞାନ ସହିତ ପରିଚିତ ହେବାପାଇଁ । ତତ୍କାଳୀନ ପ୍ରଜ୍ଞା ପୁରୁଷରୂପୀ ଆଚାର୍ଯ୍ୟମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଛନ୍ତି । ସତ୍ୟବାଦୀ ଠାରେ ଅଧ୍ୟୟନ କରୁଥିବା ଛାତ୍ରମାନଙ୍କ ସହିତ ମଧ୍ୟ ସେ ସମ୍ପର୍କ ସ୍ଥାପନ କରି ସେଠାକାର ଅଧ୍ୟାପନା ରୀତି ଓ ଶିକ୍ଷକ-ଛାତ୍ର ସମ୍ପର୍କ ବିଷୟରେ ଅବଗତ ହୋଇଛନ୍ତି । ଏହା ଫଳରେ ଶ୍ରୀଧରଙ୍କ ଦୃଷ୍ଟିକୋଣ ବହୁ ପରିମାଣରେ ସଂପ୍ରସାରିତ ହୋଇଉଠିଛି । ସଂପ୍ରସାରିତ ଦୃଷ୍ଟିଭଙ୍ଗୀ ଓ ଉଦ୍‌ଭାସିତ ପ୍ରଜ୍ଞା ବଳରେ ସେ ୧୯୨୨ ମସିହାରେ ଉଭୟ ମାଟ୍ରିକ୍ୟୁଲେସନ ଓ ସ୍କୁଲ ଲିଭିଙ୍ଗ ସାର୍ଟିଫିକେଟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ପାଟନା ସ୍ଥିତ ବିହାର ଇଂଜିନିୟରିଂ ସ୍କୁଲରେ ନାମ ଲେଖାନ୍ତି । ବୃତ୍ତି ମାତ୍ର ୨୦ ଟଙ୍କା । ତାଙ୍କର ଇଚ୍ଛା ଥାଏ

(୬) ସୁଅ ମୁହଁର ପଥର / ପୃ : ୩୫

ସେଠାରୁ ଦୁଇବର୍ଷ ପରେ ଉତ୍ତୀର୍ଣ୍ଣ ହୋଇ ଗୋଟିଏ ସବ୍‌ଓଭରସିୟର ହେବେ । ମାତ୍ର ତାଙ୍କର ଭାଗ୍ୟ ତାଙ୍କ ଇଚ୍ଛାର ପ୍ରତିକୂଳରେ ଗତି କରେ । ଇଂଜିନିୟରିଂ ସ୍କୁଲରେ ସେତେବେଳେ ୱାଲଫୋର୍ଡ ନାମକ ଜଣେ ଇଂରେଜ ସାହେବ ଅଧ୍ୟକ୍ଷ ଥାଆନ୍ତି । ସେତେବେଳେ ୱାର୍କସପରେ କାମ ଅତ୍ୟନ୍ତ କଠିନ ଥାଏ । ଥରେ ଗୋଟିଏ ଚୌକିର ତିଆରି ହୋଇଥିବା ବିଭିନ୍ନ ଅଂଶକୁ ତାଙ୍କ ସମ୍ମୁଖରେ ଯୋଡ଼ିବାକୁ ଥାଏ । ଛାତ୍ରମାନେ ସେ ଆସିବା ପୂର୍ବରୁ ସେସବୁ ଅଂଶକୁ ଯୋଡ଼ି କିପରି ହେଉଛି ଦେଖୁଥିବା ବେଳେ ସାହେବ ତାହା ଦେଖିଦେଲେ ଓ ଦଣ୍ଡ ସ୍ୱରୂପ ୧୦ ଟଙ୍କା ଜୋରିମାନା ନ୍ୟସ୍ତ କଲେ । ଯେଉଁ ଛାତ୍ର ବୃତ୍ତି ଲାଭ କରି ପାଠ ପଢୁଛି ସେ ପୁଣି ଅର୍ଥ ଜୋରିମାନା ଦେବ କିପରି ? ଏ ପ୍ରକାର ପାଠପଢ଼ା ତାଙ୍କୁ ଅସହ୍ୟ ବୋଧ ହେବାରୁ ସେ ବାଧ ହୋଇ ଇଂଜିନିୟରିଂ ପାଠ ଛାଡ଼ିଲେ ଓ ବି.ଏନ୍. କଲେଜରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇ ପାଠ ପଢ଼ିଲେ । ୧୯୨୪ ମସିହାରେ ସେ ଆଇ.ଏ. ପାଶ୍ କରନ୍ତି । ପିତାଙ୍କର ଖୁସିର ସୀମା ରହେନାହିଁ । ସେ ପୁତ୍ର ଶ୍ରୀଧରଙ୍କୁ ବିବାହ ବନ୍ଧନରେ ଛନ୍ଦି ଦିଅନ୍ତି । ଏଥର ଶ୍ରୀଧର ଦାସଙ୍କ ଜୀବନରେ ଏକ ନୂତନ ଅଧ୍ୟାୟର ପ୍ରାରମ୍ଭ ଘଟେ ।

## (ଖ) କର୍ମମୟ ଜୀବନ ସହିତ ଶିକ୍ଷା ଓ ସୃଜନଶୀଳତା (୧୯୨୪-୧୯୬୮)

ଶ୍ରୀଧର ଦାସଙ୍କ ବିବାହ ପରେ ବାସ୍ତବରେ ତାଙ୍କର ପାରିବାରିକ ଦାୟିତ୍ୱବୋଧ ଅନେକାଂଶରେ ବୃଦ୍ଧି ପାଏ । ତାଙ୍କ ପତ୍ନୀଙ୍କ ନାମ ଇନ୍ଦୁମତୀ ଦେବୀ । ଆର୍ଥିକ ଅନାଟନ ଯୋଗୁଁ ଶ୍ରୀଧର ଆଉ ପିତାଙ୍କ ଉପରେ ବୋଝ ହୋଇ ରୁହନ୍ତି ନାହିଁ । ନିଜର ଗୁରୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଠାରୁ ଅଯାଚିତ ଭାବରେ ଏକ ଅସ୍ଥାୟୀ ଚାକିରିର ଆହ୍ୱାନ ପାଇ ଓ ପରମ ପୂଜ୍ୟ ପିତାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ସେ ପ୍ରଥମ କରି ନିଜର ଚାକିରି ଜୀବନରେ ବୀର ନରସିଂହପୁର ବିଶ୍ୱନାଥ ମି.ଇ. ସ୍କୁଲରେ ୯ ମାସ ପାଇଁ ଖାଲି ଥିବା ପ୍ରଧାନଶିକ୍ଷକ ଚାକିରିରେ ନିଯୁକ୍ତ ପାଆନ୍ତି । ଏହି ବିଦ୍ୟାଳୟଟି ଆଠଗଡ଼ର ରାଜା ବିଶ୍ୱନାଥ ଦେବବର୍ମାଙ୍କ ବଦାନ୍ୟତାରେ ନିର୍ମିତ ହୋଇଥିଲା । କ୍ରମେ ଏହି ଅସ୍ଥାୟୀ ଚାକିରିର ସମୟ କାଳ ସରିଆସେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଯୋଗ ଦିଅନ୍ତି କାକଟପୁର ମାଇନର ସ୍କୁଲର ପ୍ରଧାନଶିକ୍ଷକ ରୂପେ । ଦରମା ମାସିକ ୪୦ ଟଙ୍କା । କ୍ରମୋନ୍ନତ ଆର୍ଥିକ ସ୍ଥିତି ମଧ୍ୟରେ ଅଧ୍ୟାପନା ସହିତ ଅଧ୍ୟୟନର ବ୍ୟାକୁଳତା ତାଙ୍କୁ ସର୍ବଦା ଅସ୍ଥିର କରିପକାଉଥିଲା । ତେଣୁ ସେ ଏଲ୍.ଟି ପଢ଼ିବା ପାଇଁ ଦରଖାସ୍ତ କରନ୍ତି । ଯଦିଓ ଏହି ପାଠ ପଢ଼ିବା ପାଇଁ

ସେତେବେଳେ ନ୍ୟୂନତମ ଯୋଗ୍ୟତା ଥିଲା ଆଇ.ଏ. ପାଶ୍; ତଥାପି ସେତେବେଳେ ସେହି ପାଠ ପଢ଼ିବା ପାଇଁ ବି.ଏ. ବା ଏମ୍.ଏ. ପାଠ ପଢ଼ିଥିବା ପିଲାମାନେ ଦରଖାସ୍ତ କରୁଥିବାରୁ ସେ ସେହି ପାଠ ପଢ଼ିପାରିଲେ ନାହିଁ । ପରବର୍ତ୍ତୀ କାଳରେ ସେହି ପାଠ ମଧ୍ୟ ଉଠିଗଲା । ତାହା ସ୍ଥାନରେ ନୂଆ ପାଠ ରହିଲା ଡି.ଇଡି. ଏବଂ ସେହି ପାଠ ପଢ଼ିବା ପାଇଁ ନିମ୍ନତମ ଯୋଗ୍ୟତା ରହିଲା ବି.ଏ. ପାଶ୍ । ତେଣୁ ସେ ବି.ଏ. ପାଠ ପଢ଼ିବା ପାଇଁ ମନସ୍ଥ କରନ୍ତି । ଇତିମଧ୍ୟରେ ସେ ୧୯୨୭ ମସିହା ଓ ୧୯୨୮ ମସିହାରେ ଶିକ୍ଷକଙ୍କ ସାର୍ଟିଫିକେଟ ପରୀକ୍ଷା (Half Yearly Teacher's Certificate Examination) ଦେଇ ସଫଳତାର ସହିତ ଉତ୍ତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ତା ୨.୫.୧୯୨୮ ଠାରୁ ତା ୧୧.୫.୧୯୨୮ ପର୍ଯ୍ୟନ୍ତ ଏକ ସ୍କାଉଟ୍ ଟ୍ରେନିଂ ନେଇସାରିଥାନ୍ତି । ତତ୍କାଳୀନ ନିୟମାନୁସାରେ ଆଇ.ଏ. ପାଶ୍ ପରେ ଯଦି କେହି ଏକାଦିକ୍ରମେ ତିନିବର୍ଷ ଶିକ୍ଷା ବିଭାଗରେ କାର୍ଯ୍ୟ କରିଥିବେ, ତେବେ ସେ ଘରୋଇ ଭାବେ ବି.ଏ. ପରୀକ୍ଷା ଦେଇପାରିବେ । ତେଣୁ ଶିକ୍ଷକ ଶ୍ରୀଧର ଘରୋଇ ଭାବେ ବି.ଏ. ପରୀକ୍ଷା ଦେବାକୁ ସ୍ଥିର କରନ୍ତି । ଅନ୍ୟପକ୍ଷରେ ବି.ଏ. ପାଠ ପଢ଼ିବା ଓ ପରୀକ୍ଷା ଦେବାପାଇଁ ଦୀର୍ଘ ସମୟ ଛୁଟି ନେବାର ଆବଶ୍ୟକତା ଥିବାରୁ ସେ ବାଧ୍ୟହୋଇ ସପ୍ଲିମେଣ୍ଟାରୀ ପରୀକ୍ଷା ଦେବାକୁ ମଧ୍ୟ ମନସ୍ଥ କରନ୍ତି । କହିବାକୁ ଗଲେ ସମସ୍ତ ପ୍ରକାରର ପ୍ରତିକୂଳ ପରିସ୍ଥିତି ସହିତ ମୁକାବିଲା କରି ବିଦ୍ୟାଧ୍ୟୟନ କରିବାକୁ ସେ ଯେପରି ଦୃଢ଼ ସଂକଳ୍ପବଦ୍ଧ ହୋଇଉଠିଥାନ୍ତି । ଶେଷରେ ୧୯୨୮ ମସିହାରେ ସମସ୍ତ ପ୍ରକାରର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ବି.ଏ. ପରୀକ୍ଷା ଦିଅନ୍ତି ଓ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି । ଏଣିକି ଆଗକୁ ମାଡ଼ି ଚାଲିବାର ବେଳ । ତେଣୁ ଆଉ ମାଇନର ସ୍କୁଲରେ ଚାକିରି କରିବାକୁ ତାଙ୍କୁ ଭଲ ଲାଗେନାହିଁ । ହାଇସ୍କୁଲରେ ଚାକିରି କରିବାର ଅଭିଳାଷ ରଖି ସେ ମାଇନର ସ୍କୁଲ ତ୍ୟାଗ କରନ୍ତି ଓ ଯୋଗ ଦିଅନ୍ତି ଓଲସିଂହ ହାଇସ୍କୁଲରେ-ସହକାରୀ ଶିକ୍ଷକ ଭାବରେ ।

ସେତେବେଳେ ଓଲସିଂହ ହାଇସ୍କୁଲ ନୂଆ ହୋଇ ଆରମ୍ଭ କରାଯାଇଥାଏ ଓ ତାହାର ପୃଷ୍ଠପୋଷକ ଥାଆନ୍ତି ସ୍ଥାନୀୟ ଜମିଦାର ଶ୍ରୀ ଦାଶରଥି ପଟ୍ଟନାୟକ । ଦରମା ମାସିକ ୭୦ ଟଙ୍କା, ଯଦିଓ ସେତେବେଳେ ସେ ଦରମା ବାବଦକୁ ୯୦ ଟଙ୍କା ବୋଲି ଦସ୍ତଖତ କରୁଥିଲେ । ସ୍କୁଲରେ ପାଠପଢ଼ା ଠାରୁ ରାଜନୀତି କିନ୍ତୁ ଅଧିକ ଥିଲା । ତେଣୁ ଜ୍ଞାନପିପାସୁ ଶ୍ରୀଧର ସେହି ରାଜନୀତିମୟ ପରିବେଶରୁ ମୁକ୍ତି ଖୋଜୁ ଖୋଜୁ କଟକ ଟ୍ରେନିଂ କଲେଜରେ ଡି.ଇଡି. ପାଠ ପଢ଼ିବା ପାଇଁ ଦରଖାସ୍ତ କରନ୍ତି ଓ କଳୁଷିତ ବାତାବରଣକୁ ତ୍ୟାଗ କରି କଟକ ଚାଲିଯାଆନ୍ତି । କଟକ ଟ୍ରେନିଂ କଲେଜରେ ନଅମାସର

ଅଧ୍ୟୟନ ପରେ ସେ ପୁନଶ୍ଚ ସେହି ଓଲସିଂହ ହାଇସ୍କୁଲର ପଙ୍କିଳ ପରିବେଶକୁ ଫେରିବାକୁ ବାଧ୍ୟ ହୁଅନ୍ତି । କିଛିଦିନ ପରେ ସେ ବଉଦ ଗଡ଼ଜାତ ଅଞ୍ଚଳରେ ଥିବା କିଙ୍ଗ୍ ଏଡଓ୍ବାର୍ଡ ସପ୍ତମ ସ୍କୁଲ ପାଇଁ ଗୋଟିଏ ଟ୍ରେନିଂ ପ୍ରାପ୍ତ ଗ୍ରାଜୁଏଟ୍ ପ୍ରଧାନଶିକ୍ଷକ ଦରକାର ଥିବାର ବିଜ୍ଞାପନ ଦେଖି ଦରଖାସ୍ତ କରନ୍ତି ଓ ଯଥା ସମୟରେ ଡାକରା ପାଇ ବଉଦକୁ ଯାତ୍ରା କରନ୍ତି । ବଉଦର ଅନୁଭୂତି ବାସ୍ତବରେ ଏକ ଭିନ୍ନ ପ୍ରକାରର ବୋଲି ଅନୁଭୂତ ହୁଏ । ସେଠାରେ ସେ ଯେପରି ଅନେକ ସୁନାମ ଓ ସମ୍ମାନ ପାଆନ୍ତି, ଠିକ୍ ସେହିପରି ଅନେକ କ୍ଷେତ୍ରରେ ମଧ୍ୟ ଅପଦସ୍ଥ ହୁଅନ୍ତି । ଅକ୍ଳାନ୍ତ ପରିଶ୍ରମ କରି ସେ ନିଜର ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିଛନ୍ତି । ପ୍ରାଥମିକ ପର୍ଯ୍ୟାୟରେ ଯଦିଓ ରାଜାଙ୍କୁ ସେ ସ୍କୁଲର ନାମକରଣ ପାଇଁ ତାଙ୍କର ପିତାଙ୍କ ନାମାନୁସାରେ ଯୋଗୀନ୍ଦ୍ରଦେବ ହାଇସ୍କୁଲ ରଖିବା ପାଇଁ ପରାମର୍ଶ ଦେଇଥିଲେ, ରାଜା କିନ୍ତୁ ତାହାକୁ ଗ୍ରହଣ ନକରି ପୂର୍ବ ନାମାନୁଯାୟୀ ନାମକରଣ କରିଥିଲେ King Edward VII High School, ମାତ୍ର ଏବେ ସ୍ୱାଧୀନତା ପରେ ସେହି ସ୍କୁଲର ନାମ ଶ୍ରୀଧର ଦାସଙ୍କ ପରିକଳ୍ପିତ ନାମାନୁସାରେ ହିଁ ନାମିତ ହୋଇଅଛି । ଶ୍ରୀଧର ଦାସ ମଧ୍ୟ ରାଜବାଟି ମଧ୍ୟରେ ରାଜାସାହେବଙ୍କ ପିତା ଯୋଗୀନ୍ଦ୍ରଦେବଙ୍କ ନାମାନୁସାରେ ଏକ ଲାଇବ୍ରେରୀ ନିର୍ମାଣ କରାଇଥିଲେ । ପରବର୍ତ୍ତୀ କାଳରେ ସେ ନିଜର ନିଷ୍ଠାପର କର୍ମ ପ୍ରବଣତା ଓ ରାଜାଙ୍କୁ ଅନେକ କ୍ଷେତ୍ରରେ ଉଚିତ ପରାମର୍ଶ ଦେବା ହେତୁରୁ ସେ ବଉଦ ଷ୍ଟେଟ୍‌ରେ ଶିକ୍ଷାର ବିସ୍ତାର କରିବା ପାଇଁ ପ୍ରଧାନଶିକ୍ଷକରୁ ଏଜୁକେସନ ଅଫିସର ସ୍ତରକୁ ମଧ୍ୟ ଉତ୍ତୀର୍ଣ୍ଣ ହୋଇପାରିଛନ୍ତି । ଦରମା ହୋଇଛି ଟ. ୧୩୦, ଗସ୍ତ ଖର୍ଚ୍ଚ ମାସିକ ଟ. ୨୦ । ତେଣୁ ଶ୍ରୀଧର ସେଠାରେ ନିଜର ଆଶାତୀତ ସଫଳତା ପାଇପାରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟପକ୍ଷରେ ଶ୍ରୀଧର ଦାସ ଗଡ଼ଜାତ ବଉଦ ଅଞ୍ଚଳର ଭାଷାକୁ ନେଇ ଏକ ଭାଷାତାତ୍ତ୍ୱିକ ଆଲୋଚନା ପ୍ରକାଶ କରନ୍ତି ସେହି ସମୟର ପ୍ରତିଷ୍ଠିତ ପତ୍ରିକା ସହକାରରେ ।[୭] ମାତ୍ର ବଉଦର ଲୋକମାନେ ଏଥିପାଇଁ ତାଙ୍କୁ ଭୁଲ ବୁଝନ୍ତି । କଟକିଆ ଲୋକ ସେମାନଙ୍କୁ ଓ ସେମାନଙ୍କ ଭାଷାକୁ ବିଦ୍ରୂପ କରୁଛନ୍ତି ବୋଲି ଭାବି ଗଡ଼ଜାତର ଲୋକମାନେ ତାଙ୍କ ସହିତ ସମ୍ପର୍କ ଛିନ୍ନ କରିଦିଅନ୍ତି । ପୁନଶ୍ଚ ଘଟଣାକ୍ରମେ କଟକିଆ ଲୋକମାନଙ୍କ ପ୍ରତି ଷ୍ଟେଟ୍‌ର ଲୋକେ କ୍ରମଶଃ ଉତ୍‌କ୍ଷିପ୍ତ ହୋଇଉଠୁଥିବାର ସେ ଲକ୍ଷ୍ୟ କରିବା ସହ ତାଙ୍କ ପ୍ରତି ରାଜାଙ୍କର ବିଶେଷ ଅନୁଗ୍ରହକୁ ସେ କ୍ରମେ ସନ୍ଦେହ ଦୃଷ୍ଟିରେ ଦେଖନ୍ତି । ସନ୍ଦେହ କ୍ରମଶଃ ଘନୀଭୂତ ହୁଏ ଓ ତାଙ୍କର ଏମ୍.ଇଡି. ପାଠ ପଢ଼ିବା ଘଟଣାକୁ କେନ୍ଦ୍ର କରି ରାଜାସାହେବ ଓ ରାଜ କର୍ମଚାରୀମାନଙ୍କ ସହିତ ତାଙ୍କର ମନୋମାଳିନ୍ୟ

(୭) ବଉଦର ଭାଷା / ସହକାର / ୧୧ଶ ଭାଗ - ୧୧ଶ ସଂଖ୍ୟା / ପୃ : ୫୨୪-୫୨୬

ଘଟେ । ପୂର୍ବରୁ ଥରେ ଏମ୍.ଏ. ପରୀକ୍ଷା ଦେବାପାଇଁ ଫର୍ମ ପୂରଣ କରି ମଧ୍ୟ ପରୀକ୍ଷା ଦେଇପାରି ନଥିବାରୁ ମନରେ ପ୍ରବଳ ଅସନ୍ତୋଷ ରହିଥାଏ, ଏବେ କିନ୍ତୁ ଏମ୍.ଏଡ୍. ପାଠ ପଢ଼ାରେ ବାଧା ତାଙ୍କ ମନକୁ ପୂର୍ଣ୍ଣମାତ୍ରାରେ ବିକ୍ଷୁବ୍ଧ କରିଦିଏ । ଜ୍ଞାନପିପାସୁ ତପସ୍ୱୀଙ୍କୁ ଜ୍ଞାନ ଆହରଣରେ ବାଧା ସୃଷ୍ଟି କଲେ ଯାହା ହେବାର କଥା, ତାହାହିଁ ହୁଏ । ଏହି ସମୟକୁ ସେ ଓଲସିଂହ ହାଇସ୍କୁଲରେ ପ୍ରଧାନଶିକ୍ଷକ ହେବାର ଏକ ପ୍ରସ୍ତାବିତ ଲୋଭକୁ ଉପେକ୍ଷା ନ କରିପାରି ସେ ବଉଦ ଷ୍ଟେଟ୍‌ର ଏଜୁକେସନ ଅଫିସର ଚାକିରିକୁ ଇସ୍ତଫାପତ୍ର ଦେଇ ତ୍ୟାଗ କରନ୍ତି ଓ ଓଲସିଂହ ହାଇସ୍କୁଲରେ ଯୋଗ ଦିଅନ୍ତି ।

ଓଲସିଂହ ହାଇସ୍କୁଲରେ ତାଙ୍କର ଦରମା ୧୨୦ ଟଙ୍କା । ସେହି ବିଦ୍ୟାଳୟରେ ସେ ପୂର୍ବରୁ ଚାକିରି କରି ସେଠାକାର କଳୁଷିତ ବାତାବରଣ ପାଇଁ ଦିନେ ତାକୁ ତ୍ୟାଗ କରିଥିଲେ । ଏବେ ପୁଣି ସେହି ଜାଲରେ ନିଜେ ଆପେ ଆପେ ଆସି ଛନ୍ଦି ହୋଇପଡ଼ିଲେ । ସେତେବେଳେ ଓଲସିଂହ ହାଇସ୍କୁଲର ଆର୍ଥିକ ଅବସ୍ଥା ଉନ୍ନତ ଥିଲେ ମଧ୍ୟ ଆର୍ଥିକ ପରିଚାଳନାରେ ବହୁତ ତ୍ରୁଟି ରହିଥିବାର ସେ ଲକ୍ଷ୍ୟ କରନ୍ତି । ସେ ଆହୁରି ମଧ୍ୟ ଅନୁଭବ କରନ୍ତି ଯେ ସେହି ସ୍କୁଲରେ ଚାକିରି କରୁଥିବା ଅନେକ ଶିକ୍ଷକ ପୃଷ୍ଠପୋଷକ ଦାଶରଥି ପଟ୍ଟନାୟକଙ୍କ ନିଜ ଲୋକ ଓ ସେମାନେ ସ୍କୁଲ ସମ୍ପତ୍ତିକୁ ନିଜର ବ୍ୟକ୍ତିଗତ ସମ୍ପତ୍ତି ବୋଲି ମନେ କରୁଛନ୍ତି । ଏହାର ପ୍ରତିବାଦରେ ସେ ଚୁପ୍ ହୋଇ ରହିବା ଶ୍ରେୟସ୍କର ବୋଲି ଉପଦେଶ ଶୁଣନ୍ତି । ନିଜର ଆତ୍ମସମ୍ମାନକୁ ଜଗି ସେ ପୁଣି ସେଠାରେ ଇସ୍ତଫା ଦେଇ ଚାକିରିକୁ ତ୍ୟାଗ କରନ୍ତି । ପ୍ରାୟ ଆଠ ଦଶ ଦିନ ପରେ ଶ୍ରୀ ଗୋଦାବରୀଶ ମିଶ୍ରଙ୍କ ପତ୍ର ପାଇ ବାଣପୁର ହାସସ୍କୁଲରେ ସହକାରୀ ପ୍ରଧାନଶିକ୍ଷକ ଭାବରେ ଯୋଗ ଦିଅନ୍ତି । ଏଠାରେ ତାଙ୍କର ଦରମା ୭୦ ଟଙ୍କା । କ୍ରମ ହ୍ରାସମାନ ଚାକିରି ଓ ବେତନକୁ ଅନୁଧ୍ୟାନ କରି ମଣିଷ ଯେ ବାସ୍ତବତା ନିକଟରେ କେଡ଼େ ଦୁର୍ବଳ ଓ ଅସହାୟ ତାହାକୁ ସେ ନିଜ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି, ଏହିପରି : "x x x x ବେତନ ଓ ପଦମର୍ଯ୍ୟାଦାରେ ନିଜକୁ ତଳକୁ ତଳକୁ ଖସାଇ ଆଣିଲି । ବଉଦରେ ଟ ୧୩୦ଙ୍କା ପାଉଥିଲି ଓ ଓଲସିଂହରେ ଟ ୧୨୦ଙ୍କା, ଏବେ ବାଣପୁରରେ ଟ ୭୦ଙ୍କା ପାଇବି । ବଉଦରେ ମୋ ଅଧୀନରେ ଗୋଟିଏ ହାଇସ୍କୁଲ, ଦୁଇଟି ମାଇନର ସ୍କୁଲ ଓ ପ୍ରାୟ ସତୁରୀଟି ଅନ୍ୟାନ୍ୟ ଶ୍ରେଣୀର ସ୍କୁଲ ଓ ଦୁଇଜଣ ସବ୍‌ଇନ୍‌ସପେକ୍ଟର ଥିଲେ । ମୋ ଉପରେ ଥିଲେ ଜଣେ ଦେୱାନ ଓ ଜଣେ ରାଜା । ଓଲସିଂହରେ ମୋ ଉପରେ ରହିଲେ ବାସ୍ତବରେ ଅନେକ ଲୋକ । ଏବେ ବାଣପୁରରେ ମୋ ଉପରେ ଗୋଦାବରୀଶବାବୁ ଓ ଅନ୍ୟ ଜଣେ ପ୍ରଧାନଶିକ୍ଷକ ରହିବେ; ଏମାନଙ୍କ ଛଡ଼ା ଆଉ କେତେଜଣଙ୍କର ପ୍ରଭୁତ୍ୱ ସ୍ୱୀକାର କରିବାକୁ ହେବ କିଏ ଜାଣେ ?

ଅଭାବରେ ସ୍ୱଭାବ ନଷ୍ଟ । ଅଭାବ ପଡ଼ିଲେ ମଣିଷ ଯେକୌଣସି ନୀଚତା ସ୍ୱୀକାର କରିବାକୁ ବାଧ ହୁଏ ।"[୮] ଆତ୍ମଗ୍ଲାନି ଅବଶ୍ୟ ଅଛି । ତେବେ କୌଣସି ପରିସ୍ଥିତିରେ ସେ ଭାଙ୍ଗି ପଡ଼ିନାହାନ୍ତି । ପରିସ୍ଥିତିକୁ ମୁକାବିଲା କରି ସେ କବିଗୁରୁ ରବୀନ୍ଦ୍ରନାଥଙ୍କ 'ଏକଲା ଚଲୋ' ନ୍ୟାୟରେ ଏକା ଏକା ଜୀବନ ସଂଗ୍ରାମ ପଥରେ ଆଗେଇ ଯାଇଛନ୍ତି । ମାତ୍ର ଅଧ୍ୟୟନରୁ କେବେ ନିବୃତ୍ତ ହୋଇନାହାନ୍ତି । ଅବସର କାଳରେ ପାଠ ପଢ଼ାକୁ ଅବ୍ୟାହତ ରଖିଛନ୍ତି । ଘରୋଇ ଭାବରେ ଓଡ଼ିଆରେ ଏମ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ପରୀକ୍ଷା ଦିଅନ୍ତି ଓ ୧୯୪୨ ମସିହାରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି । ମନରେ ଠିକ୍ ଆନନ୍ଦ ଆସିବା ବେଳେ ଭାଗ୍ୟର ବିଡ଼ମ୍ବନା କ୍ରମେ ମନ ପୁଣି ଭାରାକ୍ରାନ୍ତ ହୋଇଉଠେ । ଗୋଦାବରୀଶବାବୁ ମନ୍ତ୍ରୀ ହେବା ପରେ ସ୍ଥାନୀୟ ରାଜନୀତିରେ ଓ ବିଦ୍ୟାଳୟ ପରିଚାଳନାରେ ତାଙ୍କର ନିକଟତମ ସହକର୍ମୀଙ୍କର ପ୍ରଭୁତ୍ୱ ବୃଦ୍ଧି ପାଏ । ପ୍ରଧାନଶିକ୍ଷକ କେବଳ ନାମକୁ ମାତ୍ର ନିଜର ସ୍ଥିତିକୁ ସମ୍ଭାଳି ପଡ଼ିଥାନ୍ତି । ଏହିଭଳି ପରିସ୍ଥିତିରେ ଶ୍ରୀଧର ନିଜକୁ ଅସହାୟ ମନେ କରୁଥିବା ବେଳେ କୌଣସି ଏକ ଶିକ୍ଷକ ତାଙ୍କୁ ଅପମାନ କରିବାରୁ ଓ ତାହା ପ୍ରତି କାହାରି କର୍ତ୍ତୃତ୍ୱ ନଥିବାରୁ ସେ ବାଧହୋଇ ଇସ୍ତଫା ପତ୍ର ମାଧ୍ୟମରେ ସେହି ଚାକିରିକୁ ମଧ୍ୟ ତ୍ୟାଗ କରନ୍ତି । ନିଜର ସ୍ୱାଭିମାନ ହେତୁ ସେ ସର୍ବଦା ଆତ୍ମସମ୍ମାନ ଉପରେ ଗୁରୁତ୍ୱ ଦେଇଛନ୍ତି ଓ ପରିଣାମରେ ଆପଣାର ଅନିଚ୍ଛା ସତ୍ତ୍ୱେ ମଧ୍ୟ ବାରମ୍ବାର ଆର୍ଥିକ ଅନାଟନ ମଧ୍ୟକୁ ଯନ୍ତ୍ରବତ୍ ଠେଲି ହୋଇଯାଇଛନ୍ତି । ଏହି କ୍ଷେତ୍ରରେ ତାଙ୍କର ସ୍ୱୀକାରୋକ୍ତି ଏହିପରି : "ବିଷ୍ଣୁ ଶର୍ମା କହିଛନ୍ତି—ଗୋଟିଏ ପାଦ ଦୃଢ଼ କରି ରଖିସାରିଲା ପରେ ଅନ୍ୟ ପାଦ ଉଠାଇ ଚାଲିବ । କିନ୍ତୁ ମୁଁ ଚିରକାଳ ଏହିପରି ଅନିଶ୍ଚିତ ଭାବରେ ଚାକିରିରେ ପଶିଛି ଓ ଚାକିରି ଛାଡ଼ିଛି ।"[୯] ବାଣପୁର ହାଇସ୍କୁଲ ଛାଡ଼ିବା ପରେ ସେ ବିଭିନ୍ନ ସମୟରେ ବିଭିନ୍ନ ସ୍କୁଲକୁ ଚାକିରି କରିବାକୁ ଯାଇଛନ୍ତି । ଯେପରି : ଖଣ୍ଡମଉଦାର ହାଇସ୍କୁଲ, ବହଡ଼ାଗୋଡ଼ାର ହାଇସ୍କୁଲ, ହରିହରପୁର ଏକାଡେମୀ, କୋରୁଆ ହାଇସ୍କୁଲ, ଶ୍ରୀକୃଷ୍ଣ ଏକାଡେମୀ, ଜଗତ୍‌ସିଂହପୁର ଇତ୍ୟାଦି । ହେଲେ କେଉଁଠି ଯେମିତି ଅଟକି ରହିବାକୁ ଚାହିଁନାହାନ୍ତି । କ୍ଳାନ୍ତିହୀନ ଯାତ୍ରାପଥରେ ସେ ୧୯୪୮ ମସିହାରେ P.S.C. ତରଫରୁ ମନୋନୀତ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ନିଯୁକ୍ତି ପାଆନ୍ତି । ମାତ୍ର ନିଜର ସ୍ୱାଧୀନଚେତା ମନୋବୃତ୍ତିରୁ ସେ ସେହି ସରକାରୀ ଚାକିରିର ପ୍ରଲୋଭନକୁ ଉପେକ୍ଷା କରି ତତ୍କାଳୀନ ଉତ୍କଳ ଖ୍ରୀଷ୍ଟିଆନ କଲେଜ ବା ବର୍ତ୍ତମାନର ଖ୍ରୀଷ୍ଟ ମହାବିଦ୍ୟାଳୟରେ

(୮) ସୁଅ ମୁହଁର ପଥର / ପୃ : ୧୮୭

(୯) ସୁଅ ମୁହଁର ପଥର / ପୃ : ୨୦୬

ଓଡ଼ିଆ ଅଧ୍ୟାପକ ଭାବରେ ନିଯୁକ୍ତ ପାଆନ୍ତି । ଏହି ମହାବିଦ୍ୟାଳୟରେ ତାଙ୍କର ଚାକିରି କାଳ ୧୯୪୮ ମସିହାରୁ ୧୯୬୮ ମସିହା ପର୍ଯ୍ୟନ୍ତ, ପ୍ରାୟ ୨୦ ବର୍ଷ ।

୧୯୪୮ ମସିହାରେ ପ୍ରଥମ କରି ଖ୍ରୀଷ୍ଟ ମହାବିଦ୍ୟାଳୟରେ ସେତେବେଳେ ଅନର୍ସ କ୍ଲାସ୍ ଖୋଲା ଯାଇଥିଲା । ଏହି ମହାବିଦ୍ୟାଳୟ ହିଁ ହୋଇଛି ତାଙ୍କର ସଂଗ୍ରାମଶୀଳ ଯାତ୍ରାପଥରେ ଶେଷ ଆଶ୍ରୟସ୍ଥଳ । ଏହି ମହାବିଦ୍ୟାଳୟରେ ସେ ନିଜେ କଠୋର ପରିଶ୍ରମ କରିଛନ୍ତି, କରିଛନ୍ତି ମଧ କ୍ଲାନ୍ତହୀନ ଅଫିସ କାର୍ଯ୍ୟ ଅକୁଣ୍ଠିତ ଚିତ୍ତରେ । ସମୟ କ୍ରମେ ଓଡ଼ିଆ ବିଭାଗର ମୁଖ୍ୟ ଭାବରେ ଅବସ୍ଥାପିତ ହୋଇଛନ୍ତି । ଶ୍ରଦ୍ଧେୟ ତରୁଣ ସହକର୍ମୀ ପଠାଣୀ ପଟ୍ଟନାୟକଙ୍କ ମାନସ ସନ୍ତାନ 'ଅଭ୍ୟୁଦୟ ସାହିତ୍ୟ ସମାଜ' ଗଠନ ପ୍ରତି ମଧ ନିଜର ଆନ୍ତରିକ ସଦିଚ୍ଛା ଜ୍ଞାପନ କରିଛନ୍ତି । ଅନେକ ଖ୍ୟାତି ସମ୍ପନ୍ନ ଛାତ୍ରଙ୍କୁ ମଧ ସୃଷ୍ଟି କରିଛନ୍ତି । ପରିଶେଷରେ ୧୯୬୮ ମସିହାରେ ସେ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଅବସର ଗ୍ରହଣ କରିଛନ୍ତି । ଅବସର କାଳରେ ତାଙ୍କର ବକ୍ତବ୍ୟ ଏହିପରି : "x x x x ଚାକିରି ଆରମ୍ଭ କରିଥିଲି ୧୯୨୪ ମସିହାରେ ଗୋଟିଏ ମାଇନର ସ୍କୁଲର ପ୍ରଧାନଶିକ୍ଷକ ଭାବରେ, ଅବସର ନେଲି ୧୯୬୮ ମସିହାରେ–୪୪ ବର୍ଷର ଶିକ୍ଷକତା କଳାପରେ । ସେତେବେଳକୁ ମୋର ବେତନ ଥିଲା ଟ୬୩୦ଙ୍କା ।"(୧୦)

## (ଗ) ଅବସର ଗ୍ରହଣ ପରବର୍ତ୍ତୀ ଜୀବନ (୧୯୬୮-୧୯୮୮)

ଅଧ୍ୟାପକ ଶ୍ରୀଧର ଦାସ ଆନୁଷ୍ଠାନିକ ଭାବରେ ଶିକ୍ଷକତା ବୃତ୍ତିରୁ ଯଦିଓ ୧୯୬୮ ମସିହାରେ ଅବସର ଗ୍ରହଣ କରନ୍ତି, ତଥାପି ନୀତିଗତ ଭାବରେ ତାଙ୍କର ଶିକ୍ଷକତା ଅବ୍ୟାହତ ରୁହେ ୧୯୮୮ ମସିହା ପର୍ଯ୍ୟନ୍ତ, ନିଜର ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ । ଏହି ସମୟରେ ତାଙ୍କର ସାନିଧ ପାଇଁ ବହୁ ଛାତ୍ର ଓ ଅଧ୍ୟାପକ ଜ୍ଞାନ ଆହରଣ ପାଇଁ ତାଙ୍କ ନିକଟକୁ ଧାଇଁ ଆସିଛନ୍ତି । ସମସ୍ତଙ୍କୁ ସେ ସ୍ନେହ ଦାନ କରିଛନ୍ତି, ଆଗକୁ ମାଡ଼ି ଚାଲିବାକୁ ପ୍ରବର୍ତ୍ତାଇଛନ୍ତି । କର୍ମବୀର ଶ୍ରୀଧର ନିଜର ସ୍ନେହବତ୍ସଳ ଛାତ୍ର ବା ସହୃଦ୍‌ମାନଙ୍କ ଠାରେ କେବଳ ନିଜକୁ ଆବଦ୍ଧ କରି ରଖିନାହାନ୍ତି, ବରଂ ନିଜର ଅବସରକାଳୀନ ସମୟକୁ ବିଶେଷ ଭାବରେ ପଢ଼ାପଢ଼ିରେ ଓ ଲେଖାଲେଖିରେ ବିନିଯୋଗ କରି ନିଜର ଜ୍ଞାନକୁ ପ୍ରସାରିତ କରିଛନ୍ତି । ପାଠ ପଢ଼ିବା ପାଇଁ ସେ କେବେ କୌଣସି ଏକ ନିର୍ଦ୍ଦିଷ୍ଟ ପାଠକୁ ଚୟନ କରିନାହାନ୍ତି । ଯେତେବେଳେ ଯାହା ହାତ ପାଆନ୍ତାରେ ମିଳିଛି, ଯାହା ତାଙ୍କୁ ଉପାଦେୟ ବୋଲି ମନେ ହୋଇଛି; ତାହାକୁ ସେ ବିନା ଦ୍ୱିଧାରେ ପାଠ କରି ଶେଷ

(୧୦) ସୁଅ ମୁହଁର ପତର / ପୃ : ୨୬୬

କରିଦେଇଛନ୍ତି । ଅନ୍ୟପକ୍ଷରେ ନିଜର ସମୃଦ୍ଧ ଜ୍ଞାନକୁ ସେ ମଧ୍ୟ କେବଳ ନିଜ ମଧ୍ୟରେ ସୀମିତ ରଖିନାହାନ୍ତି, ଅଧିକନ୍ତୁ ସେ ସେହି ଜ୍ଞାନକୁ ରସାନ୍ୱେଷୀ ପାଠକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ନିଜର ଶତତ ପ୍ରୟାସ ଜାରି ରଖିଛନ୍ତି । ତେଣୁ ଅବସରକାଳୀନ ସମସ୍ତ ସମୟ ହୋଇଛି ଅଧ୍ୟୟନର ସମୟ ଓ ଗ୍ରନ୍ଥ ସଂରଚନାର ସମୟ । ମୌଳିକ କୃତି ଅପେକ୍ଷା ତାଙ୍କର ଅନୁକୃତିରେ ରହିଛି ମାତ୍ରାଧିକ ଉତ୍ସାହ । ଏହି କାରଣରୁ ଓଡ଼ିଆ ବାଣୀ ଭଣ୍ଡାର ଅନୁବାଦ ପାଇଁ ତାଙ୍କ ଠାରେ ନିଶ୍ଚିତ ଭାବରେ ଋଣୀ ରହିବ ।

ପଣ୍ଡିତ ଶ୍ରୀଧର ଦାସ ଜୀବନର ଉତ୍ତର କାଳରେ କ୍ଷୀଣ ଦୃଷ୍ଟିଶକ୍ତିରେ ପଢ଼ାପଢ଼ି କରିବାକୁ ନିଜର ଅକ୍ଷମତାକୁ ଉପଲବ୍ଧି କରି କଷ୍ଟ ଅନୁଭବ କରିଛନ୍ତି । ମାତ୍ର ତାଙ୍କର ମନୋବଳ ପ୍ରକୃତି ନିକଟରେ ପରାଭବ ସ୍ୱୀକାର କରିନାହିଁ । ସେ ନିଜର ପୁତ୍ର-କନ୍ୟା ବା କେତେବେଳେ କେହି ଆତ୍ମୀୟ ବା ସହୃଦମାନଙ୍କ ଦ୍ୱାରା ନିଜର ଭାବନାକୁ ଲିପିବଦ୍ଧ କରାଇପାରିଛନ୍ତି । ମାତ୍ର ୧୯୮୮ ମସିହା ଅପ୍ରେଲ ମାସ ୨୪ ତାରିଖ ଦିନ ଏହି ଦୁର୍ଜ୍ଜୟ ରଥୀଙ୍କୁ ନିୟତି ନିକଟରେ ପରାଜୟ ସ୍ୱୀକାର କରିବାକୁ ପଡ଼ିଛି । ସବୁଦିନ ପାଇଁ ସେ ଚିର ନିଦ୍ରାରେ ଶୋଇଯାଆନ୍ତି । ତାଙ୍କର ଚଳଚଞ୍ଚଳ ସାରସ୍ୱତ ଜୀବନରେ ଚିରଦିନ ପାଇଁ ପୂର୍ଣ୍ଣଚ୍ଛେଦ ପଡ଼ିଯାଏ । ତାଙ୍କ ମରଶରୀର କଟକର ସତୀଚଉରାର ପୂଣ୍ୟ ମାଟିରେ ସତୀର୍ଥ ହୋଇଗଲା ପରେ ମଧ୍ୟ ତାଙ୍କର କୃତି ମଧ୍ୟରେ ସେ ଏବେ ବି ଚିରସ୍ମରଣୀୟ ହୋଇ ରହିଛନ୍ତି, ଏଥିରେ ସନ୍ଦେହ ନାହିଁ ।

***

## ସୃଷ୍ଟି ସମ୍ଭାର

ଅଧ୍ୟାପକ ଶ୍ରୀଧର ଦାସଙ୍କ ସାରସ୍ୱତ ସୃଷ୍ଟି ହେଉଛି ଅତ୍ୟନ୍ତ ବିଚିତ୍ରବର୍ଣ୍ଣା । ବ୍ୟାକରଣ ଠାରୁ ଆରମ୍ଭ କରି ଅଭିଧାନ ପର୍ଯ୍ୟନ୍ତ, ପାଠ୍ୟ ପୁସ୍ତକ ଠାରୁ ଆରମ୍ଭ କରି ବିଭିନ୍ନ ସାହିତ୍ୟିକ କୃତିର ସମ୍ପାଦନା ପର୍ଯ୍ୟନ୍ତ, ଟ୍ରାନ୍ସଲେସନ ପାଠ ଠାରୁ ଆରମ୍ଭ କରି ବିଶ୍ୱ ସାହିତ୍ୟର ବିଭିନ୍ନ କ୍ଲାସିକ୍ ଗ୍ରନ୍ଥମାନଙ୍କର ଅନୁବାଦ ପର୍ଯ୍ୟନ୍ତ ଓ ଜୀବନୀ ରଚନା ଠାରୁ ଆରମ୍ଭ କରି ଆତ୍ମଜୀବନୀ ପର୍ଯ୍ୟନ୍ତ ସବୁ ଦିଗରେ ନିଜର ଲେଖନୀ ଚାଳନା କରି ସେ ଓଡ଼ିଆ ବାଣୀ ଭଣ୍ଡାରକୁ ପୁଷ୍ଟ କରିବା ସଙ୍ଗେ ସଙ୍ଗେ ଲେଖକ ସମାଜ ପାଇଁ ଏକ କିମ୍ବଦନ୍ତୀ ପୁରୁଷ ଭାବରେ ପ୍ରେରଣାର ଉତ୍ସ ହୋଇ ରହିଯାଇଛନ୍ତି । ଅଧ୍ୟାପକ ଦାସଙ୍କର କୃତିକୁ ଅନୁଧ୍ୟାନ କଲେ ତାଙ୍କର ବିଦ୍ୱତ୍ତାର ଏକ ସ୍ପଷ୍ଟ ଚିତ୍ର ଚକ୍ଷୁ ସମ୍ମୁଖରେ ଉଦ୍ଭାସିତ ହୋଇଉଠେ । ତେଣୁ ଏହି ପରିପ୍ରେକ୍ଷୀରେ ତାଙ୍କର ସାହିତ୍ୟିକ କୃତି ଉପରେ ଏକ ବିହଙ୍ଗାବଲୋକନ କରାଯାଇପାରେ ।

### ବ୍ୟାକରଣ :

ଅଧ୍ୟାପକ ଶ୍ରୀଧର ଦାସ ମୋଟ ଉପରେ ୧୧ ଖଣ୍ଡ ବ୍ୟାକରଣ ପୁସ୍ତକ ରଚନା କରିଛନ୍ତି । ତେବେ ତନ୍ମଧ୍ୟରୁ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହିତ ତାଙ୍କର ସାରସ୍ୱତ ଯୁଗଳବନ୍ଦୀ "ସର୍ବସାର ବ୍ୟାକରଣ" ତା'ର ଅନନ୍ୟତା ପାଇଁ ସାରା ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଛି ଓ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ଜଣେ ଉଚ୍ଚକୋଟୀର ବୈୟାକରଣ ଭାବରେ ସ୍ୱୀକୃତି ମଧ୍ୟ ପ୍ରଦାନ କରିଛି । ବସ୍ତୁତଃ କହିବାକୁ ଗଲେ ଶ୍ରୀଧର ଦାସ ଓଡ଼ିଆ ବ୍ୟାକରଣ ରଚନା କ୍ଷେତ୍ରରେ ଆଦୌ ପ୍ରଥମ ବୈୟାକରଣ ନୁହନ୍ତି; ମାତ୍ର ଅନ୍ୟତମ ଶ୍ରେଷ୍ଠ ବୈୟାକରଣ । ଓଡ଼ିଆ ଭାଷାର ବ୍ୟାକରଣ ଚର୍ଚ୍ଚାର ପରମ୍ପରାକୁ ଲକ୍ଷ୍ୟ କଲେ ଜଣାଯାଇଥାଏ

ଯେ, ୧୮୩୧ ମସିହାରେ ରେଭେରେଣ୍ଡ ଆମସ୍ ସଟନ (Amos Sutton) ନାମକ ଜଣେ ମିଶନାରୀ ପାଦ୍ରୀ ଓଡ଼ିଆ ଭାଷାରେ ପ୍ରଥମ କରି ବ୍ୟାକରଣ ରଚନା କରିଥିଲେ । ତାହା ହେଉଛି : "An Introductory Grammar of Oriya Language." ପରବର୍ତ୍ତୀ କାଳରେ ଲେଖାଯାଇଛି ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କର Ooryah Grammar (୧୮୪୩) ବା ଲେସି ସାହେବଙ୍କ ଦ୍ୱାରା ଓଡ଼ିୟା ବ୍ୟାକରଣ ସାର (Oriya Grammar/ ୧୮୫୫), ଲେଖାଯାଇଛି ମଧ ପଣ୍ଡିତ ରଘୁନାଥ ମିଶ୍ରଙ୍କର ପ୍ରବେଶିକା ବ୍ୟାକରଣ (୧୮୫୮), ବା ଫକୀରମୋହନ ସେନାପତିଙ୍କର ସରଳ ବ୍ୟାକରଣ (୧୮୬୭), ଲିଙ୍ଗରାଜ ପଣ୍ଡିତଙ୍କର A Practical Grammar of the Odhra Language (୧୮୬୯), ବିଚ୍ଛନ୍ଦ ପଟ୍ଟନାୟକଙ୍କ ଉତ୍କଳ ବ୍ୟାକରଣ ସଂକ୍ଷେପ (Elements of Ootcul Grammar)/୧୮୬୯), ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କ ବ୍ୟାକରଣ କୌମୁଦୀ (୧୮୭୦) ପ୍ରଭୃତି ଅନେକ ବ୍ୟାକରଣ ପୁସ୍ତକ । ପରବର୍ତ୍ତୀ ବିଂଶ ଶତାବ୍ଦୀରେ ମଧ ଲେଖାଯାଇଛି ଅନେକ ଓଡ଼ିଆ ବ୍ୟାକରଣ ପୁସ୍ତକ । ତେବେ ବ୍ୟାକରଣ ପୁସ୍ତକ ରଚନାର ମୌଳିକ ଆବଶ୍ୟକତା କିନ୍ତୁ ଅପରିବର୍ତ୍ତିତ ରହିଛି । ସେଦିନ ଲେସି ସାହେବଙ୍କ ବ୍ୟାକରଣ ରଚନା କାଳରେ ଉଦ୍ଦେଶ୍ୟ ଥିଲା : "ଏ କ୍ଷୁଦ୍ର ଭାଷା ବ୍ୟାକରଣ ସାର ଏତଦ୍ଦେଶୀୟ ପାଠାଶାଳା ଇତ୍ୟାଦି ବାଳକଙ୍କ ଶିକ୍ଷା ନିମନ୍ତେ ରଚିତ ହୋଇଅଛି ଏବଂ ଭରସା ଏହି କି ତାହା ଅଳ୍ପାୟାସରେ ବୋଧ ହୋଇପାରିବ । କାରଣ କି ସେଥିରେ ଭାଷା ଅତିଶୟ ସହଜ । ବ୍ୟାକରଣ ବିଧି ଜ୍ଞାତ ହେବାର ସମସ୍ତଙ୍କର ଅତ୍ୟାବଶ୍ୟକ ହେତୁ କି ଯଦ୍ୟପି ସ୍ୱୀୟ ଭାଷା ଶୁଦ୍ଧ ରୂପେ କହିବାକୁ ଆଉ ଲେଖିବାକୁ କାହାରି ଆକାଂକ୍ଷା ଥାଏ, ତେବେ ବ୍ୟାକରଣ ନ ଜାଣିଲେ ତାହାର ସେଇ ଇଷ୍ଟ କଦାପି ସଫଳ ହୋଇ ନ ପାରିବ । ପୁନର୍ବାର ଲୌକିକ ବିଚାରରେ ଲେଖା ପଢ଼ି ବିଦ୍ୟାର ମୂଲ୍ୟ ପ୍ରତିଦିନ ଉନ୍ନତ ହେଉଅଛି ଏବଂ ଆସନ୍ତା କାଳରେ ଅଧିକ ହେବ, ଅତଏବ୍ ସେହି ବିଦ୍ୟା ଉଦ୍ଦେଶ୍ୟରେ ସହକାରୀ ସ୍ୱରୂପେ ଏ କ୍ଷୁଦ୍ର ବ୍ୟାକରଣ ଆକାଂକ୍ଷିମାନଙ୍କ ଠାରେ ସମର୍ପଣ ହେଉଅଛି ।"[୧୧] ଏବେ "ସର୍ବସାର ବ୍ୟାକରଣ"ର ରଚନା କାଳରେ ଉଦ୍ଦେଶ୍ୟ ରହିଲା, "ବ୍ୟାକରଣ ଭାଷାର ଏକ ଅତ୍ୟାବଶ୍ୟକ ଅଙ୍ଗ ଏବଂ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କରେ ବ୍ୟାକରଣଗତ ପ୍ରଶ୍ନମାନଙ୍କର ବିଶିଷ୍ଟ ସ୍ଥାନ ଅଛି; ମାତ୍ର ଏହିସବୁ ଶ୍ରେଣୀରେ ଅଧ୍ୟାପନା ସମୟରେ

(୧୧) ଲେସି ସାହେବଙ୍କ ଦ୍ୱାରା ରଚିତ "ଓଡ଼ିୟା ବ୍ୟାକରଣ ସାର"ର ବିଜ୍ଞାପନ ।
ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରା : ଅଧ୍ୟାପକ ଗଗନେନ୍ଦ୍ରନାଥ ଦାଶ
(ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା-୪) / ପୃ : ଫଟୋଚିତ୍ର ପରିଚୟ-୧୧

ଆମ୍ଭେମାନେ ଉପଯୁକ୍ତ ଓଡ଼ିଆ ବ୍ୟାକରଣ ପୁସ୍ତକର ଅଭାବ ବିଶେଷ ଭାବରେ କରିଥାଉଁ । ସେହି ଅଭାବ ଦୂର କରିବା ଉଦ୍ଦେଶ୍ୟରେ ଏହି ପୁସ୍ତକଟି ଲିଖିତ ହୋଇଅଛି ।"[୧୨] ବ୍ୟତିକ୍ରମ ଦୁର୍ଲକ୍ଷ୍ୟ । ଛାତ୍ର-ଛାତ୍ରୀମାନଙ୍କର ଭାଷାଗତ ଜ୍ଞାନକୁ ପୁଷ୍ଟ କରିବା ପାଇଁ ଓ ନିଜ ଭାଷାକୁ ଶୁଦ୍ଧ ଭାବରେ ଲେଖିବା ପାଇଁ ବ୍ୟାକରଣ ଜ୍ଞାନର ଏକାନ୍ତ ଆବଶ୍ୟକତା ନିଶ୍ଚିତ ଭାବେ ରହିଛି । ତେଣୁ ଏହା ଏକ ନିର୍ଦ୍ଦିଷ୍ଟ ପାରମ୍ପରିକ ବିଧି ଠାରୁ କେବେ ଦୂରେଇଯାଇ ପୂର୍ଣ୍ଣ ଭାବରେ ସ୍ୱତନ୍ତ୍ର ହୋଇଉଠିବ ନାହିଁ । ତେବେ ପ୍ରକାଶ ଶୈଳୀ ଓ ବିଶ୍ଳେଷଣ ଧାରା ଯେତେ ସ୍ପଷ୍ଟ ହୋଇଉଠିବ, ସେତେ ପରିମାଣରେ ବ୍ୟାକରଣ ପୁସ୍ତକଟି ନିତ୍ୟ ନୂତନ ଆଭାରେ ଉଦ୍‌ଭାସିତ ହୋଇଉଠିବ । ସର୍ବସାର ବ୍ୟାକରଣ ସେହି ସୂତ୍ରରେ ମାତ୍ର ନିତ୍ୟନୂତନ ଆଭାରେ ଉଦ୍‌ଭାସିତ ହୋଇଉଠିଛି । ପ୍ରଫେସର ଖଗେଶ୍ୱର ମହାପାତ୍ର ସର୍ବସାର ବ୍ୟାକରଣର ସ୍ୱତନ୍ତ୍ରତା କଥା କହିବାକୁ ଯାଇ କୁହନ୍ତି, "x x x ପଣ୍ଡିତ ଶ୍ରୀଧର ଦାସଙ୍କ ବ୍ୟାକରଣର ଢାଞ୍ଚା ସଂସ୍କୃତ, ମାତ୍ର ଏହା ଆର୍ତ୍ତତ୍ରାଣ ଶତପଥୀ କୃତ 'ଅପଭ୍ରଂଶ ବୋଧିନୀ' (୧୮୯୧) କିମ୍ବା ଫକୀରମୋହନଙ୍କ ଅବଧାନଙ୍କ ଶୁଦ୍ଧ ସାଧୁଭାଷା (ଆତ୍ମଚରିତ) ପ୍ରକରଣ ଠାରୁ ସ୍ୱତନ୍ତ୍ର ଆଦର୍ଶର ଅନୁବର୍ତ୍ତୀ । ସେହି ଆଦର୍ଶ ହେଉଛି, ସଂସ୍କୃତ ନିୟମ ଠାରୁ ଓଡ଼ିଆ ଭାଷାର ସ୍ୱାଭାବିକ ନୀତିନିୟମର ବ୍ୟତିକ୍ରମ ପ୍ରଦର୍ଶନୀ ।"[୧୩] ସମ୍ଭବତଃ ଏହି କାରଣରୁ ପ୍ରଫେସର ଗଗନେନ୍ଦ୍ରନାଥ ଦାଶ ମଧ୍ୟ ଯଥାର୍ଥରେ କୁହନ୍ତି, "x x x It is a traditional grammar book per excellence, but has a refreshingly modern approach."[୧୪]

କ'ଣ ରହିଛି ତେବେ ଅଧ୍ୟାପକ ଶ୍ରୀଧର ଦାସଙ୍କ ସର୍ବସାର ବ୍ୟାକରଣରେ ? ସର୍ବସାର ବ୍ୟାକରଣରେ ସର୍ବମୋଟ ୩୫ଟି ଅନୁଚ୍ଛେଦ ରହିଛି । ଯଥା : ୧-ବର୍ଣ୍ଣ, ୨-ଶବ୍ଦ, ୩-ବିଶେଷ୍ୟ, ୪-ସର୍ବନାମ, ୫-ବିଶେଷଣ, ୬-ବିଶେଷ୍ୟ, ସର୍ବନାମ ଓ ବିଶେଷଣର ଲିଙ୍ଗ, ୭-ବଚନ, ୮-ପୁରୁଷ, ୯-କାରକ, ୧୦-ବିଭକ୍ତି, ୧୧-ଅବ୍ୟୟ, ୧୨-ଉପସର୍ଗ, ୧୩-କ୍ରିୟା, ୧୪-ଏକ ଶବ୍ଦର ବିଭିନ୍ନ ପଦ ରୂପେ ବ୍ୟବହାର, ୧୫-ପଦାନ୍ୱୟ, ୧୬-ଣତ୍ୱବିଧି, ୧୭-ଷତ୍ୱବିଧି, ୧୮-ବାକ୍ୟାନ୍ୱୟ, ୧୯-ସନ୍ଧି, ୨୦-ସମାସ, ୨୧-କୃଦନ୍ତ, ୨୨-ତଦ୍ଧିତ, ୨୩-ପଦ ପରିବର୍ତ୍ତନ, ୨୪-ବାକ୍ୟର ଲକ୍ଷଣ, ୨୫-ଖଣ୍ଡ ବାକ୍ୟ ଓ ବାକ୍ୟାଂଶ, ୨୬-ବାକ୍ୟର ପ୍ରକାରଭେଦ, ୨୭-ଖଣ୍ଡାନ୍ୱୟ

(୧୨) ସର୍ବସାର ବ୍ୟାକରଣ : ପଣ୍ଡିତ ନାରାୟଣ ମହାପାତ୍ର ଓ ଶ୍ରୀଧର ଦାସ / ପୃ : ମୁଖବନ୍ଧ

(୧୩) ଭାଷା ଶିକ୍ଷକ ପଣ୍ଡିତ ଶ୍ରୀଧର ଦାସ : ପ୍ରଫେସର ଖଗେଶ୍ୱର ମହାପାତ୍ର
ଆଦର୍ଶ ମଣିଷ ଶ୍ରୀଧର ଦାସ : ସଂ-ବିଭୂତି ପଟ୍ଟନାୟକ / ପୃ : ୧୧

(୧୪) A Leaf in the Stream : (Trd.) Mary Mohanty / P : Foreward

ବା ସଂକ୍ଷିପ୍ତ ବାକ୍ୟ ବିଶ୍ଳେଷଣ, ୨୮-ଉଦ୍ଦେଶ୍ୟ ଓ ବିଧେୟ, ୨୯-ପ୍ରତ୍ୟକ୍ଷୋକ୍ତି ଓ ପରୋକ୍ଷୋକ୍ତି, ୩୦-କ୍ରିୟାର ବାଚ୍ୟ, ୩୧-ଶବ୍ଦାର୍ଥ, ୩୨-ସଂକ୍ଷେପଣ, ୩୩-ପ୍ରାୟ ସମୋଚ୍ଚାରିତ ଭିନ୍ନାର୍ଥକ ଶବ୍ଦ, ୩୪-ଛନ୍ଦ ବା ବୃତ୍ତ ଓ ୩୫-ଅଳଙ୍କାର । ପ୍ରତ୍ୟେକ ଅନୁଚ୍ଛେଦରେ ପରିଭାଷା ତ ନିଶ୍ଚିତ ଭାବରେ ରହିଛି, ତେବେ ସେ ନିଜ ଅନୁଭବରେ ସାଂପ୍ରତିକ ଭାଷା ସ୍ଥିତିକୁ ମଧ୍ୟ ସ୍ୱୀୟ ବ୍ୟାକରଣରେ ସ୍ଥାନ ଦେଇଛନ୍ତି । ଯେପରି : ପୂର୍ବରୁ ପ୍ରକାଶିତ ଗଦାଧର ତର୍କ ବାଗୀଶଙ୍କ ଓଡ଼ିଆ ବ୍ୟାକରଣରେ 'ଌ' (ହ୍ରସ୍ୱ ଓ ଦୀର୍ଘ ଭାବେ) ଦୁଇଗୋଟି ବର୍ଣ୍ଣ ଥିବାବେଳେ ଶ୍ରୀଧର ଦାସ କେବଳ ଗୋଟିଏ 'ଌ'କୁ ସ୍ୱୀକାର କରିଛନ୍ତି ଏବଂ ଅତ୍ୟନ୍ତ ସ୍ପଷ୍ଟ ଭାବରେ ମଧ୍ୟ ଉଲ୍ଲେଖ କରିଛନ୍ତି ଯେ, "ଓଡ଼ିଆ ଭାଷାରେ 'ଌ' ସ୍ୱତନ୍ତ୍ର ଭାବରେ ବ୍ୟବହୃତ ହୁଏନାହିଁ । ମାତ୍ରା ଆକାରରେ ଏହାର ବ୍ୟବହାର ମଧ୍ୟ ବିରଳ । ତେଣୁ ଏହାକୁ ଓଡ଼ିଆ ବର୍ଣ୍ଣମାଳା ମଧ୍ୟରୁ ଅନ୍ତର କରିଦେଲେ କିଛି କ୍ଷତି ନାହିଁ ।"(୧୫) ବଡ଼ ସୌଭାଗ୍ୟର କଥା ଏହି ଯେ, ଅଧ୍ୟାପକ ଶ୍ରୀଧର ଦାସଙ୍କର ମତ ଆଜି ଅନେକଙ୍କ ଦ୍ୱାରା ଗୃହୀତ ହୋଇସାରିଛି । ଓଡ଼ିଆ ବର୍ଣ୍ଣମାଳା କ୍ରମରେ ଆଉ 'ଌ'ର ସ୍ଥାନ ନାହିଁ ।(୧୬) ସେହିପରି ବର୍ଗ୍ୟ ଓ ଅବର୍ଗ୍ୟ 'ବ'ର ବ୍ୟବହାରଗତ ପାର୍ଥକ୍ୟକୁ ସେ ଉଲ୍ଲେଖ କରିବା ସହ ଆଧୁନିକ ରୀତିରେ ଅବର୍ଗ୍ୟ 'ବ' ସ୍ଥାନରେ 'ୱ'ର ବ୍ୟବହାରକୁ ସେ ଗ୍ରହଣ କରିନେଇଛନ୍ତି ।(୧୭) ସାଂପ୍ରତିକ କାଳରେ ପିଲାମାନେ ବିଦ୍ୟାଳୟରେ ଯେଉଁ ବର୍ଣ୍ଣମାଳାକୁ ଶିକ୍ଷା କରୁଛନ୍ତି ସେଥିରେ ଅବର୍ଗ୍ୟ 'ବ'ର ସ୍ଥାନ ଆଉ ନାହିଁ, ଅଧିକନ୍ତୁ ସେ ସ୍ଥାନକୁ 'ୱ' ଅଧିକାର କରିସାରିଛି । ଯେପରି : 'ତଲବାର' ସ୍ଥାନରେ ଲେଖାଯାଉଛି, 'ତଲୱାର' ଇତ୍ୟାଦି । ଏହି ମର୍ମରେ ଦେଖିବାକୁ ଗଲେ ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରାରେ ଶ୍ରୀ ଦାସଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ନିଶ୍ଚୟ ।

ଏହି ବ୍ୟାକରଣ ପୁସ୍ତକ ରଚନାର ଇତିହାସଟି କିନ୍ତୁ ବଡ଼ କୌତୁକପ୍ରଦ । ସେଦିନ ବ୍ରହ୍ମପୁର ଷ୍ଟୁଡେଣ୍ଟସ୍ ଷ୍ଟୋରର ମ୍ୟାନେଜରଙ୍କ ଅନୁରୋଧ କ୍ରମେ ଶ୍ରୀଧର ଦାସ ପ୍ରାଥମିକ ଶ୍ରେଣୀ ପାଇଁ ଗୋଟିଏ ବ୍ୟାକରଣ ପୁସ୍ତକ ରଚନା କରିବାକୁ ସିଦ୍ଧାନ୍ତ ଗ୍ରହଣ କରନ୍ତି । ସମୟ ଆପାତତଃ ୧୯୩୫-୩୬ ମସିହା । ଏହି ସମୟକୁ ସେ ବାଣପୁର ହାଇସ୍କୁଲର ଶିକ୍ଷକ । ସ୍କୁଲ କାର୍ଯ୍ୟ ଛଡ଼ା ନିଜର ଗୃହ କାର୍ଯ୍ୟର ଭାର ତାଙ୍କ ସାରସ୍ୱତ ସମୟକୁ ସାମାନ୍ୟ

(୧୫) ସର୍ବସାର ବ୍ୟାକରଣ / ପୃ : ୯

(୧୬) ମାଧ୍ୟମିକ ଓଡ଼ିଆ ବ୍ୟାକରଣ / ପୃ : ୫
ମାଧ୍ୟମିକ ଶିକ୍ଷାବୋର୍ଡ, ଓଡ଼ିଶା (୧୯୭୪)

(୧୭) ସର୍ବସାର ବ୍ୟାକରଣ / ପୃ : ୮

ସଂକୁଚିତ କରିଦେଉଥାଏ । ତଥାପି ଏହି ସୁଯୋଗକୁ ସେ ହାତଛଡ଼ା ନକରି ସେହି ସ୍କୁଲରେ ଶିକ୍ଷକତା କରୁଥିବା ସଂସ୍କୃତ ଶିକ୍ଷକ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସାହାଯ୍ୟ କାମନା କରନ୍ତି । ଯଥା ସମୟରେ ଉଭୟଙ୍କ ଦ୍ୱାରା ଲିଖିତ ବ୍ୟାକରଣ ପୁସ୍ତକର ମୂଳ ପାଣ୍ଡୁଲିପିଟିକୁ ପ୍ରଫେସର ରାୟ ବାହାଦୂର ଆର୍ତ୍ତବଲ୍ଲଭ ମହାନ୍ତି ସଂଶୋଧନ କରନ୍ତି ଓ ତାହା ଠିକ୍ ସମୟରେ ମଧ୍ୟ ଆତ୍ମପ୍ରକାଶ କରେ । ପୁସ୍ତକଟି ପାଠକ ମହଲରେ, ଶିକ୍ଷକ ଓ ଛାତ୍ରମାନଙ୍କ ଦ୍ୱାରା ଆଦୃତ ହୋଇଉଠିବାରୁ ଲେଖକଦ୍ୱୟ ବହୁ ପରିମାଣରେ ଉତ୍ସାହିତ ହୋଇଉଠନ୍ତି । ପରବର୍ତ୍ତୀ କାଳରେ ଷଷ୍ଠ ଓ ସପ୍ତମ ଶ୍ରେଣୀ ପାଇଁ ମଧ୍ୟ ବ୍ୟାକରଣ ପୁସ୍ତକ ରଚନା କରାଯାଏ ଏବଂ ତାହା ତତ୍କାଳୀନ ବିହାର-ଓଡ଼ିଶା ଶିକ୍ଷା ବିଭାଗର ଡାଇରେକ୍ଟରଙ୍କ ଦ୍ୱାରା ମଞ୍ଜୁର ପ୍ରାପ୍ତ ପୁସ୍ତକ ଭାବରେ ପରିଗଣିତ ହୁଏ । ଫଳରେ ଲେଖକଦ୍ୱୟ କର୍ମକ୍ଷେତ୍ରରେ ପ୍ରବଳ ଈର୍ଷାର ସମ୍ମୁଖୀନ ହୁଅନ୍ତି; ମାତ୍ର ସେମାନଙ୍କ ସୀମାହୀନ ଉତ୍ସାହ ଓ ପ୍ରକାଶକଙ୍କ ଆନ୍ତରିକ ଆଗ୍ରହର ସମନ୍ୱିତ ଭାବ କର୍ମକ୍ଷେତ୍ରରେ ଉପୁଜୁଥିବା ସମସ୍ତ ଈର୍ଷାର ପ୍ରାଚୀରକୁ ଅତିକ୍ରମ କରି ପରିଶେଷରେ ହାଇସ୍କୁଲର ଛାତ୍ରମାନଙ୍କ ପାଇଁ ଖଣ୍ଡିଏ ବ୍ୟାକରଣ ପୁସ୍ତକର ସଂରଚନା ପାଇଁ ଯୋଜନା ପ୍ରସ୍ତୁତ କରାଯାଏ । ପୁସ୍ତକର ଶ୍ରୀକୁ ଯଥାସମ୍ଭବ ସମୃଦ୍ଧ କରିବା ପାଇଁ ଲେଖକଦ୍ୱୟ ବର୍ତ୍ତମାନ ସଂସ୍କୃତ ବ୍ୟାକରଣ ବ୍ୟତିରେକ ସେ ସମୟରେ ପ୍ରଚଳିତ ବଙ୍ଗଳା ବ୍ୟାକରଣ ଧାରାକୁ ଆଦର୍ଶ ଭାବରେ ଗ୍ରହଣ କରିନିଅନ୍ତି ।[୧୮] ସମ୍ଭବତଃ ସେହି କାରଣରୁ ପୁସ୍ତକଟିର ନାମକରଣ କାଳରେ ମଧ୍ୟ ନିମାଇଁ ବଲ୍ଲଭ ବିଦ୍ୟାସାଗରଙ୍କର ପ୍ରସିଦ୍ଧ ବଙ୍ଗଳା ବ୍ୟାକରଣ ପୁସ୍ତକ 'ସର୍ବସାର ବ୍ୟାକରଣ'[୧୯] ନାମର ଆକର୍ଷଣକୁ ଉପେକ୍ଷା କରିନପାରି ସ୍ୱୀୟ ପୁସ୍ତକର ନାମ ରଖିଛନ୍ତି 'ସର୍ବସାର ବ୍ୟାକରଣ' । ଏହି 'ସର୍ବସାର ବ୍ୟାକରଣ'ର ମୂଳ ପାଣ୍ଡୁଲିପିକୁ ସଂଶୋଧନ କରିବାର ଦାୟିତ୍ୱ ନିଅନ୍ତି କିନ୍ତୁ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ପ୍ରଣେତା ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ ।

ପାଣ୍ଡୁଲିପିର ସଂଶୋଧନ କ୍ଷେତ୍ରରେ ମଧ୍ୟ ଗୋଟିଏ ରୋମାଞ୍ଚକର ସର୍ତ୍ତ ରୁହେ । ସେତେବେଳେ ସେ ଭାଷାକୋଷର ପ୍ରକାଶନ ପାଇଁ ଅର୍ଥ ସଂଗ୍ରହ କରୁଥିବାରୁ ସେ ପାଣ୍ଡୁଲିପିକୁ ସଂଶୋଧନ କରିବା ବାବଦରେ ଯେତିକି ସମୟ ବିନିମୟ କରିବେ ସେହି ସମୟ ପାଇଁ ଘଣ୍ଟା ପ୍ରତି ଟ. ୨୫.୦୦ ଲେଖାଏଁ ନେବେ । ପ୍ରକାଶକଙ୍କ ପକ୍ଷରୁ

---

(୧୮) "Matriculation ଶ୍ରେଣୀ ପାଇଁ ଖଣ୍ଡିଏ ବହି ଲେଖିବାରେ ନିଯୁକ୍ତ ହେଲୁ । ପ୍ରକାଶକ ଆମକୁ ଉତ୍ସାହିତ କଲେ । ଏଥିରେ ଆମର ଆଦର୍ଶ ଥିଲା ସେ ସମୟରେ ପ୍ରଚଳିତ ବଙ୍ଗଳା ବ୍ୟାକରଣ ।"
ସୁଅ ମୁହଁର ପଥର / ପୃ : ୨୮୦

(୧୯) ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରା : ଅଧ୍ୟାପକ ଡକ୍ଟର ଗଗନେନ୍ଦ୍ରନାଥ ଦାଶ / ପୃ : ୮୧

କଟକ ସ୍ଥିତ ମ୍ୟାନେଜର ଶ୍ରୀ ଶ୍ରୀଧର ମହାପାତ୍ର ସେ ସଂକ୍ରାନ୍ତରେ ନିଜର ସ୍ୱୀକୃତି ପ୍ରଦାନ କରିବାରୁ ମୂଳ ପାଣ୍ଡୁଲିପିକୁ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ପ୍ରଦାନ କରାଯାଏ । ପରବର୍ତ୍ତୀ କାଳରେ ପୁସ୍ତକଟି ଯେ କେବଳ ପ୍ରକାଶ ଲାଭ କରେ ତାହା ନୁହେଁ, ଅଧିକନ୍ତୁ ପୁସ୍ତକଟି ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ମଞ୍ଜୁର ପ୍ରାପ୍ତ ହୋଇ ହାଇସ୍କୁଲ ଓ କଲେଜ ସ୍ତରରେ ମଧ୍ୟ ପାଠ୍ୟ-ପୁସ୍ତକ ଭାବରେ ଗୃହୀତ ହୋଇଉଠେ । କେବଳ ସେତିକି ନୁହେଁ, ପୁସ୍ତକଟି ଲେଖକଦ୍ୱୟଙ୍କ ପାଇଁ ସେଦିନ ଅଜସ୍ର ସମ୍ମାନ ଓ ଅଶେଷ ଖ୍ୟାତି ବହନ କରିଆଣେ । ଆଜି ମଧ୍ୟ ସେ ସମ୍ମାନ ଓ ଖ୍ୟାତି ଅକ୍ଷୁଣ୍ଣ ରହିଛି । ଓଡ଼ିଆ ଭାଷା ସାହିତ୍ୟର ଛାତ୍ର-ଛାତ୍ରୀ ମାତ୍ରେ ହିଁ ଅଧ୍ୟାପକ ଶ୍ରୀଧର ଦାସଙ୍କ 'ସର୍ବସାର ବ୍ୟାକରଣ'କୁ ଅଧ୍ୟୟନ କରନ୍ତି ଓ ଅଧ୍ୟାପକ/ଅଧ୍ୟାପିକା ମାତ୍ରେ ହିଁ ସେହି ଅନତିକ୍ରମ୍ୟ ପୁସ୍ତକକୁ ନିଜ ଅଧ୍ୟୟନର ଆଧାର ଭାବରେ ଗ୍ରହଣ କରନ୍ତି । ସାରସ୍ୱତ କୃତି ମାଧ୍ୟମରେ ଅଧ୍ୟାପକ ଶ୍ରୀଧର ଦାସ ଯେ ମୃତ୍ୟୁଶୀଳ ଜଗତରେ ଅମୃତତ୍ୱ ଲାଭ କରିଛନ୍ତି, ଏହାଠାରୁ ବଡ଼ ପ୍ରମାଣ ଆଉ କ'ଣ ଥାଇପାରେ ?

## ଅଭିଧାନ :

ଶ୍ରୀଧର ଦାସଙ୍କ ଦ୍ୱାରା ଲିଖିତ ଅଭିଧାନର ସଂଖ୍ୟା ହେଉଛି ମାତ୍ର ତିନିଖଣ୍ଡ । ବସ୍ତୁତଃ ଦେଖିବାକୁ ଗଲେ ସେହି ତିନୋଟି ଗ୍ରନ୍ଥ ସ୍ୱତନ୍ତ୍ର ଭାବରେ ତିନିଗୋଟି ଭାବ ବୈଶିଷ୍ଟ୍ୟକୁ ଧାରଣ କରିଥାନ୍ତି । 'ନବ ଅଭିଧାନ'ରେ ଓଡ଼ିଆ ଶବ୍ଦର ଅର୍ଥ ତର୍ଜମା ଥିବାବେଳେ 'Student's English Oriya Dictionary'ରେ ଇଂରାଜୀ ଶବ୍ଦର ଓଡ଼ିଆ ତର୍ଜମା କରାଯାଇଛି । ଏବଂ 'ବିବିଧ କୋଷ'ରେ ପ୍ରତୁଳ ଓଡ଼ିଆ ଶବ୍ଦ ଭଣ୍ଡାରର ଏକ ପ୍ରାଞ୍ଜଳ ଚିତ୍ରର ଉପସ୍ଥାପନା କରାଯାଇଛି । ଏହିଥିରୁ ମନେହୁଏ ସତେ ଯେପରି ସେ ଆମ ଓଡ଼ିଶାର ଅଗଣିତ ଛାତ୍ର-ଛାତ୍ରୀମାନଙ୍କର ଓଡ଼ିଆ ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରାଇ ଦିଗନ୍ତବିସ୍ତାରୀ ଓଡ଼ିଆ ସାହିତ୍ୟ ସହିତ ପରିଚିତ କରାଇବା ସହିତ ତର୍ଜମା ମାଧ୍ୟମ ଦେଇ ବିଶ୍ୱ ସାହିତ୍ୟ ସହିତ ମଧ୍ୟ ପରିଚିତ କରାଇବାର ଦୁର୍ବାର କାମନା ପୋଷଣ କରିଥିଲେ । ଓଡ଼ିଆ କ୍ଲିଷ୍ଟ ଶବ୍ଦର ସରଳ ଅର୍ଥ ସହିତ ତା'ର ଇଂରାଜୀ ପାରିଭାଷିକ ଶବ୍ଦ ଓ ଅନ୍ୟ ପକ୍ଷରେ ଇଂରାଜୀ କ୍ଲିଷ୍ଟ ଶବ୍ଦର ସରଳ ଓଡ଼ିଆ ପାରିଭାଷିକ ଅର୍ଥ ବାସ୍ତବରେ ଗୋଟିଏ ଜ୍ଞାନପିପାସୁ ଛାତ୍ରଟିଏ ପାଇଁ ଯେ ଏକାନ୍ତ ଆବଶ୍ୟକ, ଏକଥା ସେଦିନ ବୁଝି ପାରିଥିଲେ ଅଧ୍ୟାପକ ଶ୍ରୀଧର ଦାସ । ସମ୍ଭବତଃ ସେହି କାରଣରୁ ସେ ଛାତ୍ର-ଛାତ୍ରୀମାନଙ୍କର ଅନୁବାଦ କ୍ରିୟାରେ ସିଦ୍ଧିଲାଭର କାମନା କରି ସେ ମଧ୍ୟ ଲେଖିଥିଲେ ଏକ ଟ୍ରାନ୍ସଲେସନ ପୁସ୍ତକ ।

ସତେ ଯେପରି ତାଙ୍କର ଇଚ୍ଛା ଥିଲା ଏହି ଅନୁବାଦ ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ବିଶ୍ୱ ସାହିତ୍ୟରେ ପରିଚିତ କରାଇବା ସଙ୍ଗେ ସଙ୍ଗେ ବିଶ୍ୱ ସାହିତ୍ୟର ମହାନ୍ ସୃଷ୍ଟିକୁ ଓଡ଼ିଆ ସାହିତ୍ୟରେ ସାମିଲ କରାଇବା । ସେ ନିଜେ ମଧ୍ୟ ବ୍ୟକ୍ତିଗତ ଭାବରେ ଏ ଦିଗରେ କିଛି କମ୍ ପ୍ରଯତ୍ନ କରିନାହାନ୍ତି । ତେବେ ଅଭିଧାନର କଥା ବିଚାର କଲାବେଳେ ପ୍ରଥମ ସଂସ୍କରଣରେ ପ୍ରଦତ୍ତ ତାଙ୍କର ନିଜସ୍ୱ ଅଭିବ୍ୟକ୍ତିଟି ଏକାନ୍ତ ପ୍ରଣିଧାନଯୋଗ୍ୟ । ସେ ସେଥିରେ କହିଛନ୍ତି, "x x x ସୁତରାଂ ଏ ଅଭିଧାନ ଖଣ୍ଡିକ ଓଡ଼ିଆ ଛାତ୍ର-ଛାତ୍ରୀମାନଙ୍କୁ ଭାଷା ଓ ସାହିତ୍ୟ ସାଧନା ପଥରେ ଯଥୋପଯୁକ୍ତ ସହାୟକ ହେବ ଏବଂ ଓଡ଼ିଆରୁ ଇଂରାଜୀ ଅନୁବାଦ କାର୍ଯ୍ୟରେ ମଧ୍ୟ ସାହାଯ୍ୟ କରିପାରିବ ବୋଲି ଆଶାକରୁ । ଓଡ଼ିଆ ଶିକ୍ଷାର୍ଥୀ ବୈଦେଶିକମାନେ ମଧ୍ୟ ଖଣ୍ଡିଏ ଉପଯୁକ୍ତ ଅଭିଧାନ ଆବଶ୍ୟକ କରିଥାନ୍ତି । ପ୍ରଦତ୍ତ ଇଂରାଜୀ ଅର୍ଥଗୁଡ଼ିକ ସେମାନଙ୍କର ଆବଶ୍ୟକତା ପୂରଣ କରିପାରିବ ।"[୨୦] ବାସ୍ତବରେ ଶବ୍ଦ ଭଣ୍ଡାର ସମୃଦ୍ଧ ନହେଲେ ଅନୁବାଦ ପ୍ରକ୍ରିୟା ଆଦୌ ସମ୍ଭବ ନୁହେଁ ।

ଓଡ଼ିଆ ସାହିତ୍ୟରେ ଅଧ୍ୟାପକ ଦାସ ଆଦୌ ପ୍ରଥମ ଅଭିଧାନକର୍ତ୍ତା ନୁହନ୍ତି, ମାତ୍ର କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଆଖିଆଗରେ ରଖି ଅଭିଧାନ ପ୍ରଣୟନ କରିବା ଦିଗରେ ସେ ବୋଧହୁଏ ହେଉଛନ୍ତି ଜଣେ ଶ୍ରେଷ୍ଠ ଶବ୍ଦ ସଂକଳକ । ଅଭିଧାନ କେବେ ଜଣକର ସୃଜନଶୀଳ ମୌଳିକ କର୍ମଟିଏ ମାତ୍ର ନୁହେଁ, ଅଧିକନ୍ତୁ ଅତ୍ୟନ୍ତ ଆୟାସସାଧ୍ୟ କର୍ମଟିଏ । ଯାବତୀୟ ଶବ୍ଦ ସଂଗ୍ରହ କରିବା, ତାକୁ ଅକ୍ଷର କ୍ରମାନ୍ୱୟରେ ସଜାଇ ରଖିବା ଓ ତା'ର ଅର୍ଥ ପ୍ରକାଶ କରିବାରେ ଅଭିଧାନ ପ୍ରଣେତାଙ୍କର ନିଷ୍ଠାପରତା, ଧୈର୍ଯ୍ୟ ଓ ପାଣ୍ଡିତ୍ୟର ପରିଚୟ ଉଜ୍ଜ୍ୱଳ ରହିଥାଏ । ଏହି ସୂତ୍ରରେ ଅଧ୍ୟାପକ ଶ୍ରୀ ଦାସଙ୍କର ବ୍ୟକ୍ତିତ୍ୱକୁ ବେଶ୍ ଆକଳନ କରାଯାଇପାରେ । ଏହା ପୂର୍ବରୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କର 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'ର କାର୍ଯ୍ୟ ବଳବତ୍ତର ରହିଥିବା ବେଳେ ଶ୍ରୀ ଦାସ ଏହି ଭାଷାକୋଷ ପାଇଁ ଗଡ଼ଜାତ ଅଞ୍ଚଳର ପ୍ରାୟ ପାଞ୍ଚଶହ ଅପ୍ରଚଳିତ ମୋଗଲବନ୍ଦୀ ଶବ୍ଦ ସଂଗ୍ରହ କରି ଶ୍ରୀ ପ୍ରହରାଜଙ୍କୁ ଦେଇଥିଲେ ।[୨୧] ତେଣୁ ସମ୍ଭବତଃ ଏହି ପ୍ରାଥମିକ ଶବ୍ଦ ସଂଗ୍ରହର କଠିନ କାର୍ଯ୍ୟରୁ ସେ ପରବର୍ତ୍ତୀ କାଳରେ ଗୋଟିଏ ଅଭିଧାନ ସଂକଳନ କରିବା ପାଇଁ ମନସ୍ଥ କରିଥିବେ ଓ ସେହି କାରଣରୁ ଛାତ୍ର-ଛାତ୍ରୀଙ୍କ ପାଇଁ ଏକାନ୍ତ ଉପାଦେୟ ଶବ୍ଦ ଭାବରେ ପ୍ରାୟ ୨୫,୦୦୦ ଶବ୍ଦକୁ ନେଇ ରଚନା କରିଥିବେ ଏହି 'ନବ ଅଭିଧାନ' । ଏହି 'ନବ ଅଭିଧାନ' ଗ୍ରନ୍ଥଟି ପ୍ରାଥମିକ ପର୍ଯ୍ୟାୟରେ ୨୦,୦୦୦ (କୋଡ଼ିଏ ହଜାର) ଶବ୍ଦକୁ

(୨୦) ନବ ଅଭିଧାନ : ପ୍ରଥମ ସଂସ୍କରଣର ସୂଚନା / ୨ୟ ସଂସ୍କରଣ : ୧୯୬୭

(୨୧) ସୁଅ ମୁହଁର ପଥର / ପୃ : ୧୫୩

ନେଇ ଆତ୍ମପ୍ରକାଶ କରିଥିଲା । ମାତ୍ର ଏହାର ଦ୍ୱିତୀୟ ସଂସ୍କରଣ ବେଳକୁ ଏଥିରେ ଥିବା ୨୦,୦୦୦ ମୂଳ ଶବ୍ଦ ସହିତ ଆହୁରି ୫,୦୦୦ (ପାଞ୍ଚ ହଜାର) ଶବ୍ଦ ମିଶିଯିବାରୁ ତାହା ୨୫,୦୦୦ (ପଚିଶ ହଜାର) ଶବ୍ଦ ବିଶିଷ୍ଟ ଅଧ୍ୟୟନରତ ଛାତ୍ର-ଛାତ୍ରୀମାନଙ୍କ ପାଇଁ ଏକ ବୃହତ ଅଭିଧାନରେ ପରିଣତ ହୋଇଉଠିଲା ।

'ବିବିଧ କୋଷ'ଟି ଅଧାପକ ଶ୍ରୀଧର ଦାସ ଓ ପଣ୍ଡିତ ନାରାୟଣ ମହାପାତ୍ରଙ୍କର ଏକ ସଂକଳନାତ୍ମକ ଯୁଗଳବନ୍ଦୀ । ଏଥିରେ ରହିଛି : (୧) ଗଣବୋଧିନୀ, (୨) ନ୍ୟାୟମାଳା, (୩) ଉପସର୍ଗମାଳା ଓ ଉପସର୍ଗମାନଙ୍କର ବିଭିନ୍ନାର୍ଥ ଉଦାହରଣ, (୪) ଧାତ୍ୱାର୍ଥମାଳା, (୫) ଏକାକ୍ଷର କୋଷ ଓ (୬) ପ୍ରତିଶବ୍ଦମାଳା । ଏହି ଗ୍ରନ୍ଥର ପ୍ରଣୟନ ବାସ୍ତବରେ ଥିଲା ଏକ ଆୟାସସାଧ ବ୍ୟାପାର । କାରଣ ଅଭିଧାନରେ ଶବ୍ଦର କେବଳ ଆଭିଧାନିକ ଅର୍ଥ ପ୍ରକାଶ କରାଯାଉଥିବା ବେଳେ ଏହି କୋଷରେ ଶବ୍ଦର ଆଭିଧାନିକ ଅର୍ଥ ସହିତ ବ୍ୟଞ୍ଜନାତ୍ମକ ଓ ଲକ୍ଷଣାତ୍ମକ ଅର୍ଥ, ସମାର୍ଥକ ଶବ୍ଦ ଇତ୍ୟାଦିର ଏକ ବିଚିତ୍ର ସମାହାର କରାଯାଇଛି । "ଗଣବୋଧିନୀ"ରେ ରହିଛି, ଦୁଇ ବା ତତୋଽଧିକ ଶବ୍ଦରେ ସଂଯୁକ୍ତ ହୋଇଥିବା ଏପରି ଏକ ଶବ୍ଦ ଯାହାର ଅର୍ଥ ଅତ୍ୟନ୍ତ ବ୍ୟାପକ । ଏହିପରି ଶବ୍ଦ ସମୂହକୁ ପୁନଶ୍ଚ ଅକ୍ଷରର କ୍ରମାନୁସାରେ ସଜ୍ଜିତ କରାଯାଇଅଛି । ଉଦାହରଣ ପାଇଁ ଏହାର ପ୍ରଥମ ଶବ୍ଦକୁ ଗ୍ରହଣ କରାଯାଇପାରେ । ଗଣବୋଧିନୀର ପ୍ରଥମ ଶବ୍ଦ ହେଉଛି : "ଅଷ୍ଟକିଳା / ଅଷ୍ଟ କୁଳାଚଳ" । ଏହାର ଅର୍ଥ ଏହିପରି ଭାବରେ ପ୍ରକାଶ କରାଯାଇଛି : 'ହିନ୍ଦୁ ପୁରାଣ ମତରେ ପୃଥିବୀକୁ ଆଠ ଦିଗରେ ସମ୍ଭାଳି ରଖିଥିବା ଆଠଗୋଟି ପର୍ବତ । ଯଥା– ମହେନ୍ଦ୍ର, ମଳୟ, ସହ୍ୟ, ଶକ୍ତିମାନ, ଋକ୍ଷ, ବିନ୍ଧ୍ୟ, ପାରିପାତ୍ର ଓ ହିମାଳୟ ।' ସେହିପରି "ନ୍ୟାୟମାଳା"ରେ ପ୍ରସିଦ୍ଧି ଲାଭ କରିଥିବା ଆପ୍ତବାକ୍ୟ ବା ରୂଢ଼ିର ବାସ୍ତବ ଅର୍ଥ ସହିତ ସାମ୍ପ୍ରତିକ ବ୍ୟବହାର ପାଇଁ ତାହାର ଲକ୍ଷଣାର୍ଥର ପ୍ରକାଶ କରାଯାଇଛି । ଯେପରି 'ଅଜଗରାକୁ ବାଇଗଣ ଫୋପାଡ଼ିବା (ଫିଙ୍ଗିବା)' ରୂପୀ ଆପ୍ତବାକ୍ୟର ଅବିକଳ ଅର୍ଥ ପ୍ରକାଶ କରାଯିବା ସହିତ ଲକ୍ଷଣାର୍ଥକୁ ପ୍ରକାଶ କରାଯାଇଛି । "ଉପସର୍ଗମାଳା"ରେ ପ୍ରତ୍ୟେକ ଉପସର୍ଗ କେଉଁ କେଉଁ କ୍ଷେତ୍ରରେ ବ୍ୟବହାର କରାଯାଇପାରିବ ତାହା ସ୍ପଷ୍ଟ କରାଯିବା ସହିତ ସେଥିପାଇଁ ଅନେକ ଉଦାହରଣମାନ ମଧ୍ୟ ପ୍ରସ୍ତୁତ କରାଯାଇଛି । ଯେପରି : 'ପ୍ର' ଉପସର୍ଗ ପାଇଁ ୨୦ (କୋଡ଼ିଏ)ଟି କ୍ଷେତ୍ରରେ ତା'ର ପ୍ରୟୋଗ ହୋଇପାରିବାର ସୂଚନା ପ୍ରଦାନ କରାଯାଇଛି । ଯେପରି–ଯାତ୍ରା, ଉତ୍କର୍ଷ, ଆଧିକ୍ୟ, ଐଶ୍ୱର୍ଯ୍ୟ ପ୍ରଭୃତି । ପୁନଶ୍ଚ ତାହାର ଉଦାହରଣ ଭାବରେ ଦର୍ଶାଇ ଦିଆଯାଇଛି ଯେ, ଯାତ୍ରା–ପ୍ରୟାଣ, ପ୍ରସ୍ଥାନ, ପ୍ରଯାନ ଇତ୍ୟାଦି । "ଧାତ୍ୱାର୍ଥମାଳା"ରେ ଶବ୍ଦର ମୂଳ ଧାତୁ, ବ୍ୟବହୃତ ଧାତୁ, ତାହାର ଅର୍ଥ ଓ ପରିଶେଷରେ

ନିଷ୍ପନ୍ନ ଅର୍ଥକୁ ପ୍ରକାଶ କରାଯାଇଛି । ଯେପରି : ମୂଳଧାତୁ–ଅଂଶ, ବ୍ୟବହୃତ ଧାତୁ–ଅଂଶ, ଅର୍ଥ–ବଣ୍ଟନ, ନିଷ୍ପନ୍ନ ଅର୍ଥ–ଅଂଶ, ଅଂଶୁ ଇତ୍ୟାଦି । "ଏକାକ୍ଷର କୋଷ"ରେ ଗୋଟିଏ ଗୋଟିଏ ଅକ୍ଷର ବା ବର୍ଣ୍ଣର ଅର୍ଥ ପ୍ରକାଶ କରାଯାଇଛି । ଯେପରି 'ଅ'ର ଅର୍ଥ ଭାବରେ କୁହାଯାଇଛି, ଏହା ଓଡ଼ିଆ ବର୍ଣ୍ଣମାଳାର ପ୍ରଥମ ଅକ୍ଷର, ଏବଂ ବିଶେଷ ଅର୍ଥ ଭାବରେ କୁହାଯାଇଛି ତାହା 'ପରଂବ୍ରହ୍ମ', 'ବିଷ୍ଣୁ' । "ପ୍ରତିଶବ୍ଦ ମାଳା"ରେ ଗୋଟିଏ ଶବ୍ଦର ଅନେକ ପ୍ରତିଶବ୍ଦ ଦିଆଯାଇଛି । ଏହି ଗ୍ରନ୍ଥ ପାଇଁ ଅବଶ୍ୟ ଅନେକ ପ୍ରସିଦ୍ଧ ପୁସ୍ତକମାନର ସାହାଯ୍ୟ ଗ୍ରହଣ କରାଯାଇଛି । ସେଗୁଡ଼ିକ ହେଉଛନ୍ତି : ଗୋପାଳଚନ୍ଦ୍ର ପ୍ରହରାଜଙ୍କର 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ', ସାର୍ ରାଜା ରାଧାକାନ୍ତ ଦେବଙ୍କର 'ଶବ୍ଦ କଳ୍ପଦ୍ରୁମ', 'ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କର 'ତରୁଣ ଶବ୍ଦକୋଷ', ଅମର ସିଂହଙ୍କର 'ଅମର କୋଷ' ଓ ଆପ୍ଟେଙ୍କର 'ସଂସ୍କୃତ-ଇଂରାଜୀ ଅଭିଧାନ' (Sanskrit - English Dictionary) । ଲେଖକ ଦ୍ୱୟ ମଧ୍ୟ ଏହିସବୁ ଗ୍ରନ୍ଥର ପ୍ରଣେତାଙ୍କ ନିକଟରେ ନିଜର ଋଣ ସ୍ୱୀକାର କରିଛନ୍ତି, 'ବିବିଧ କୋଷ'ର ମୁଖବନ୍ଧରେ । ବାସ୍ତବରେ ଏହି କୋଷଟି କେବଳ ଆମ ସମୟ ପାଇଁ ନୁହେଁ, ଅଧିକନ୍ତୁ ଆଗାମୀ ସମୟ ପାଇଁ ମଧ୍ୟ ଅତ୍ୟନ୍ତ ଉପାଦେୟ ପୁସ୍ତକ ଭାବରେ ନିଜର ସ୍ୱତନ୍ତ୍ର ସ୍ଥିତିକୁ ସୁଦୃଢ଼ କରି ତୋଳିଧରିବ ।

## ଟ୍ରାନ୍ସଲେସନ :

ଅଧ୍ୟାପକ ଶ୍ରୀଧର ଦାସ କେବଳ ଅଭିଧାନ ଓ କୋଷର ଅଭାବକୁ ପୂରଣ କରିବା ପାଇଁ ଯେ, ଅଭିଧାନ ଓ କୋଷ ସଂକଳନ କରିଛନ୍ତି, ତାହା ନୁହେଁ । ଅଧିକନ୍ତୁ ସେ ଛାତ୍ର-ଛାତ୍ରୀମାନଙ୍କ ଠାରେ ଅନୁବାଦ କଳାର ଉତ୍ସକୁ ରୋପଣ କରିବାକୁ ଚାହିଁଛନ୍ତି । ସେହି କାରଣରୁ ସେ ଲେଖିବାକୁ ଚାହିଁଛନ୍ତି ଗୋଟିଏ ସରଳ ଅନୁବାଦ ପୁସ୍ତକ ଓ ଲେଖିଛନ୍ତି ମଧ୍ୟ : 'M.E. Translation and Composition.' ଏହି ପୁସ୍ତକଟି ବିଶେଷ ଭାବରେ କୋମଳମତି ଛାତ୍ର-ଛାତ୍ରୀମାନଙ୍କୁ ସେମାନଙ୍କର ଓଡ଼ିଆ ଭାବନାକୁ କିପରି ଇଂରାଜୀ ଭାଷାରେ ଅନୁବାଦ କରିବାକୁ ହୋଇଥାଏ, ସେହି କଳା ସହିତ ବିଶେଷ ଭାବରେ ପରିଚିତ କରାଇବା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାରେ କିଛି ନିଜସ୍ୱ ଅଭିବ୍ୟକ୍ତିକୁ ପରିପ୍ରକାଶ କରିବାର ସେହି ନିର୍ଦ୍ଦିଷ୍ଟ କଳାକୌଶଳକୁ ଶିକ୍ଷା ଦେଇଥାଏ । ଅନୁବାଦ ମାଧ୍ୟମରେ ଯେ ନିଜକୁ ବିଶ୍ୱରେ ଓ ବିଶ୍ୱକୁ ନିଜ ମଧ୍ୟରେ ଏକାକାର କରିହୁଏ, ତାହାକୁ ବୁଝି ବୁଝାଇବାର ଅଦମ୍ୟ ଅଭିଳାଷ ପୋଷଣ କରିଛନ୍ତି ସେଦିନ ଅଧ୍ୟାପକ ଶ୍ରୀଧର ଦାସ ଓ ସେହି ଦିଗରେ ସେ ସଫଳ ମଧ୍ୟ ହୋଇପାରିଛନ୍ତି ।

## ପାଠ୍ୟ-ପୁସ୍ତକ ଓ ଅନ୍ୟାନ୍ୟ ପାଠ୍ୟ-ପୁସ୍ତକ :

ଶ୍ରୀଧର ଦାସ ମୂଳତଃ ନିଜେ ଜଣେ ଶିକ୍ଷକ ହୋଇଥିବାରୁ ସେ ବିଶେଷ ଭାବରେ ପାଠ୍ୟ-ପୁସ୍ତକ ଉପରେ ଗୁରୁତ୍ୱାରୋପ କରିଛନ୍ତି । ସେତେବେଳେ ସରକାରୀ ସ୍ତରରେ ଲେଖକମାନଙ୍କ ଠାରୁ ପାଠ୍ୟ-ପୁସ୍ତକ ପାଇଁ ଲେଖା ଆହ୍ୱାନ କରାଯାଉଥିଲା । ସେହି କାରଣରୁ ସେ ନିଜେ ସେ ଦିଗରେ ନିଜର ଆଗ୍ରହ ପ୍ରକାଶ କରିଛନ୍ତି ଏବଂ ଯଥା ସମୟରେ ତାହାକୁ ସମ୍ପନ୍ନ କରିବାକୁ ହେଉଥିବାରୁ ସେ ଅନେକ ସ୍ଥଳରେ ନିଜର ପ୍ରିୟ ବନ୍ଧୁମାନଙ୍କର ସାହାଯ୍ୟ ମଧ୍ୟ କାମନା କରିଛନ୍ତି । ଏହି ମର୍ମରେ ସେ ୨୪ (ଚବିଶ) ଖଣ୍ଡ ପାଠ୍ୟ-ପୁସ୍ତକ ଲେଖିବାକୁ କ୍ଷମ ହୋଇଛନ୍ତି; ତନ୍ମଧ୍ୟରୁ ୧୧ (ଏଗାର) ଖଣ୍ଡ ପୁସ୍ତକକୁ ସେ ପାଠ୍ୟ-ପୁସ୍ତକ ଭାବରେ ଓ ଅବଶିଷ୍ଟ ୧୩ (ତେର) ଖଣ୍ଡ ପୁସ୍ତକ ଅନ୍ୟାନ୍ୟ ପାଠ୍ୟ-ପୁସ୍ତକ ଭାବରେ ନାମିତ କରିଛନ୍ତି । ତେବେ ସେହିସବୁ ପୁସ୍ତକଗୁଡ଼ିକ ମଧ୍ୟରୁ ପ୍ରାୟ ୩ (ତିନି) ଖଣ୍ଡ ପୁସ୍ତକ ପାଠ୍ୟ-ପୁସ୍ତକ ଭାବରେ ସ୍ୱୀକୃତି ଲାଭ କରିପାରିନଥିଲା ବୋଲି ସେ ସ୍ପଷ୍ଟ ଭାବରେ ନିଜ ଆତ୍ମଜୀବନୀରେ ଉଲ୍ଲେଖ ରହିଥିବା ଗ୍ରନ୍ଥସୂଚୀରେ ପ୍ରକାଶ କରିଛନ୍ତି ।[୨୨] ତେବେ ସ୍ୱୀକୃତି ପ୍ରାପ୍ତ ପାଠ୍ୟ-ପୁସ୍ତକଗୁଡ଼ିକ ମଧ୍ୟରୁ ଦୁଇଖଣ୍ଡ ଇତିହାସ ଓ ଭୂଗୋଳ ବିଷୟକ ପୁସ୍ତକ ରହିଛି । ସେଗୁଡ଼ିକ ହେଲା : ନବ ଇତିହାସ (୧ମ ଓ ୨ୟ ଭାଗ), ନବ ଭୂଗୋଳ (୧ମ ଓ ୨ୟ ଭାଗ) । ତେବେ ଅନ୍ୟାନ୍ୟ ପୁସ୍ତକଗୁଡ଼ିକ ମଧ୍ୟରେ ରହିଛି : ମନୋହର ପାଠ (୧ମ ଓ ୨ୟ ଭାଗ), କଥାମାଳା, କଥା ସୁମନ (୧ମ ଓ ୨ୟ ଭାଗ), ଆମ ଦେଶର ଇତିହାସ ଗପ, ମଞ୍ଜୁଷା, ଜୀବନୀ ବର୍ତ୍ତିକା, ପଞ୍ଚପ୍ରଦୀପ, ଅଳଙ୍କାର ମଞ୍ଜରୀ, ସାହିତ୍ୟ ମୁକୁର (୧ମ ଓ ୨ୟ ଭାଗ), ପାଠ କଳିକା (୧ମ ଓ ୨ୟ ଭାଗ), ପାଠ କୁସୁମ ଓ ନୂତନ ସାହିତ୍ୟ ସଂଗ୍ରହ ପ୍ରଭୃତି ପୁସ୍ତକମାନ । ଏହି ପୁସ୍ତକଗୁଡ଼ିକରେ ଯେଉଁସବୁ କଥାକୁ ଚୟନ କରାଯାଇଥିଲା, ସେଗୁଡ଼ିକ ମୁଖ୍ୟତଃ ଥିଲା କୌଣସି ନା କୌଣସି ନୀତିଶିକ୍ଷା ଉପରେ ପର୍ଯ୍ୟବସିତ ହୋଇଥିବା କାହାଣୀମାନ, ଯାହାକୁ ପାଠ କଲେ କୋମଳମତି ଛାତ୍ର-ଛାତ୍ରୀମାନଙ୍କ ଚରିତ୍ର ନିଶ୍ଚିତ ଭାବରେ ଉନ୍ନତ ହୋଇଉଠିବ । ଶ୍ରୀଧର ଦାସ ମୂଳତଃ ଜଣେ ଶିକ୍ଷକ । ତେଣୁ ଛାତ୍ର-ଛାତ୍ରୀଙ୍କ ଚରିତ୍ରକୁ ଆଦର୍ଶାଭିମୁଖୀ କରି ଗଢ଼ି ତୋଳିବା ପାଇଁ ସେ ଯେପରି ଶତତ ବ୍ରତୀ ଥିଲେ । ପରବର୍ତ୍ତୀ କାଳରେ ମଧ୍ୟ ଯେତେବେଳେ ନିଜର ଛାତ୍ରମାନେ ଅଧ୍ୟାପକଟିଏ ହୋଇଉଠିଥିବାର ସେ ଜାଣିଛନ୍ତି, ସେତେବେଳେ ସେ ସେମାନଙ୍କୁ ସବୁବେଳେ ନିଜର ଆଦର୍ଶରେ ସ୍ଥିର ରହିବାକୁ ପରାମର୍ଶ ଦେବା ସହିତ ନିଜର ଅଧ୍ୟାପନା ମାଧ୍ୟମରେ ଛାତ୍ର-ଛାତ୍ରୀମାନଙ୍କ ଚରିତ୍ର ଗଠନ ପ୍ରତି ସଜାଗ ରହିବାକୁ

(୨୨) ସୁଅ ମୁହଁର ପତର / ପୃ : ୩୦୪-୩୦୫

ଚେତାଇ ଦେଇଛନ୍ତି । ଏହି ମର୍ମରେ ଦେଖିବାକୁ ଗଲେ ତାଙ୍କ ଦ୍ୱାରା ରଚିତ ପାଠ୍ୟ-ପୁସ୍ତକଗୁଡ଼ିକ ନିଶ୍ଚିତ ଭାବରେ ଏକ ନିର୍ଦ୍ଦିଷ୍ଟ ମର୍ଯ୍ୟାଦାର ଅପେକ୍ଷା ରଖନ୍ତି ।

## ଅନୁବାଦ :

ଅଧ୍ୟାପକ ଶ୍ରୀଧର ଦାସଙ୍କର ସାରସ୍ୱତ ସୃଷ୍ଟି ସମ୍ଭାର ମଧ୍ୟରେ ସବୁଠାରୁ ବଳିଷ୍ଠ ବିଭାଗଟି ହେଉଛି 'ଅନୁବାଦ' ବିଭାଗ । ଅନୁବାଦ କ୍ଷେତ୍ରରେ ତାଙ୍କର ସୃଷ୍ଟି ସଂଖ୍ୟା ଏତେ ପ୍ରଚୁର ଯେ, ତାହାକୁ ଲକ୍ଷ୍ୟ କରିବା ମାତ୍ରେ ସ୍ୱତଃ ଅଧ୍ୟାପକ ଦାସଙ୍କର ଅନୁବାଦ ଦିଗଟି ପ୍ରତି ଥିବା ନିଷ୍ଠା ଓ ଆନ୍ତରିକତା ଆପେ ଆପେ ବାରି ହୋଇଯାଏ । ସେ ସର୍ବମୋଟ ୭୬ (ଛଅସ୍ତରୀ) ଖଣ୍ଡ ଅନୁବାଦ ପୁସ୍ତକ ପ୍ରସ୍ତୁତ କରିଛନ୍ତି । ତନ୍ମଧ୍ୟରୁ ପ୍ରାୟ ୨୨ (ବାଇଶ) ଖଣ୍ଡ ପୁସ୍ତକର ମୂଳ ଉତ୍ସ ହେଉଛି ସଂସ୍କୃତ ବା ଆମ ପ୍ରାଚ୍ୟ ଜଗତ ଭାଷା, ମାତ୍ର ଅବଶିଷ୍ଟ ୫୪ (ଚଉବନ) ଖଣ୍ଡର ମୂଳ ଉତ୍ସ ହେଉଛି ଇଂରାଜୀ । ତେବେ ମନେ ରଖିବାକୁ ହୁଏ ଯେ, ଅନୁବାଦ ପ୍ରକ୍ରିୟା କେବେ ସହଜସାଧ୍ୟ ବ୍ୟାପାର ନୁହେଁ । ସମ୍ଭବତଃ ସେହି କାରଣରୁ ସ୍ୱାଧୀନ ଭାରତର ପ୍ରଥମ ବଡ଼ଲାଟ୍ ଚକ୍ରବର୍ତ୍ତୀ ରାଜାଜୀ ରାଜ ଗୋପାଳଚାରୀ କୁହନ୍ତି, "କ୍ଲାସିକ ରଚନାବଳୀକୁ ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ କରି ତାହାର କଳାତ୍ମକ ସୌନ୍ଦର୍ଯ୍ୟ ଅକ୍ଷୁର୍ଣ୍ଣ ରଖିବା ଆଦୌ ସହଜ ବ୍ୟାପାର ନୁହେଁ । ଯଦି ଭାଷା ଦିଓଟି ସ୍ୱଧର୍ମରେ ନିକଟବର୍ତ୍ତୀ ହୋଇଥାନ୍ତି, ତାହାହେଲେ ସେମାନଙ୍କ କଥା ଭିନେ ।"(୨୩) ମାତ୍ର ଅଧ୍ୟାପକ ଶ୍ରୀଧର ଦାସ ଅନୁବାଦ କ୍ଷେତ୍ରରେ ଥିବା ଏହି ସଂକଟକୁ ଅକ୍ଳେଶରେ ଅତିକ୍ରମ କରିଯାଇଛନ୍ତି । କାରଣ ସେ ମୂଳ ସଂସ୍କୃତ ବା ଇଂରାଜୀକୁ ଅବିକଳ ଓଡ଼ିଆ ଭାଷାରେ ରୂପାନ୍ତର କରିବା ପରିବର୍ତ୍ତେ ତାହାର ଭାବାନୁବାଦ ଉପରେ ଯଥେଷ୍ଟ ଗୁରୁତ୍ୱାରୋପ କରିଛନ୍ତି । କାରଣ ସେ ପ୍ରଥମରୁ ହିଁ ସ୍ଥିର କରିନେଇଛନ୍ତି ଯେ, ତାଙ୍କର ଇପ୍‌ସିତ ପାଠକମାନେ ହେଉଛନ୍ତି ଏହି ଦେଶର ଅଗଣିତ ଛାତ୍ର-ଛାତ୍ରୀ । ତେଣୁ ସେ ଅନୁବାଦ ମାଧ୍ୟମରେ କେବଳ ମୂଳ ପାଠ ସହିତ ଆମ ଭାଷାର ପାଠକମାନଙ୍କୁ ପରିଚିତ କରିବାକୁ ଚାହିଁଛନ୍ତି । କାରଣ ସେ ଭଲଭାବରେ ଜାଣିଛନ୍ତି ଯେ ଅନୁବାଦ ବିନା ବିଶ୍ୱ ସାହିତ୍ୟ ସହିତ ପରିଚିତ ହେବା ଆଦୌ ସମ୍ଭବ ନୁହେଁ । ସୁସମାଲୋଚକ ଡକ୍ଟର କ୍ଷେତ୍ରବାସୀ ନାୟକ ଏହି ସମ୍ପର୍କରେ ମତବ୍ୟକ୍ତ କରି କୁହନ୍ତି, "ଏହି ଅନୁବାଦ ହେଉଛି ଭାବ ବିନିମୟର ଏକ ଉନ୍ନତ ମାଧ୍ୟମ । ଏହାଦ୍ୱାରା ଗୋଟିଏ ତୀର୍ଥ ଘାଟରେ ସକଳ ଜ୍ଞାନାମୃତ ସେବନର

(୨୩) Dr. C. Rajgopalchary / The art of Translation : A Symposium / P.5

ସୁଯୋଗ ମିଳିଥାଏ । ବିଶ୍ୱର ସାରସ୍ୱତ ବିସ୍ମୟ ଓ ଚେତନାରାଜି ଏହାରି ଜରିଆରେ ଦେଶାନ୍ତରକୁ ଖେଳିଯାଏ । ଆପଣା ଅକ୍ଷରରେ ବିଶ୍ୱ ସାହିତ୍ୟକୁ ଚିହ୍ନିବାର କଳ୍ପନା ଏଇଠି ସାର୍ଥକ ହୁଏ । କାରଣ ଅନୁବାଦ ବିନା ବିଶ୍ୱ ସାହିତ୍ୟର ଅନ୍ଦିକନ୍ଦି ସହିତ ପରିଚିତ ହେବା ଏବଂ ବିଶ୍ୱ ବିଦ୍ୟା ଆୟତନକୁ ପ୍ରବେଶ କରିବା ସମ୍ଭବ ନୁହେଁ ।"[୨୪] ଏହି କାରଣରୁ ଆମେ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ସର୍ବାନ୍ତକରଣରେ ଜଣେ ଶ୍ରେଷ୍ଠ ଅନୁବାଦକ ବୋଲି କହିପାରିବା । କାରଣ ସେ ବିଶ୍ୱ ସାହିତ୍ୟର ଅନ୍ଦିକନ୍ଦି ସହିତ କେବଳ ସେ ନିଜେ ପରିଚିତ ହୋଇନାହାନ୍ତି, ଅଧିକନ୍ତୁ ଜିଜ୍ଞାସୁ ପାଠକମାନଙ୍କ ପାଇଁ ବିଶ୍ୱ ବିଦ୍ୟା ଆୟତନକୁ ପ୍ରବେଶ କରିବାର ଜଟିଳ ପଥକୁ ସୁଗମ କରି ତୋଳିଛନ୍ତି । ଓଡ଼ିଆ ପାଠକେ ଆଜି ଶ୍ରୀଧର ଦାସଙ୍କ ପ୍ରାସାଦରୁ ଅନେକ ପାଶ୍ଚାତ୍ୟ କ୍ଲାସିକ ସାହିତ୍ୟ ସହିତ ପରିଚିତ ହେବାର ସୌଭାଗ୍ୟ ଲାଭ କରିଛନ୍ତି । ଅନେକ ଛାତ୍ର-ଛାତ୍ରୀ ଆଜି ତାଙ୍କରି ଅନୂଦିତ ପୁସ୍ତକ ମାଧ୍ୟମ ଦେଇ ବିଶ୍ୱ ସାହିତ୍ୟ ସହିତ ଏକାତ୍ମ ହେବା ସଙ୍ଗେ ସଙ୍ଗେ ମୂଳ ମୌଳିକ ସୃଷ୍ଟିକୁ ପାଠ କରିବା ପାଇଁ ଅଜସ୍ର ପ୍ରେରଣା ମଧ୍ୟ ଲାଭ କରିଛନ୍ତି ।

ଅଧ୍ୟାପକ ଶ୍ରୀଧର ଦାସଙ୍କର ଅନୁବାଦଗୁଡ଼ିକ ମଧ୍ୟରେ ୬ (ଛଅ) ଖଣ୍ଡ ପୁସ୍ତକ ଯୁକ୍ତରାଷ୍ଟ୍ର ଆମେରିକାର ଲୋକସମ୍ପର୍କ ସେବା ଆନୁକୂଲ୍ୟରେ ପ୍ରକାଶିତ ହୋଇଅଛି । ସେଗୁଡ଼ିକ ମଧ୍ୟରେ 'ପୃଥିବୀ ପାଇଁ ଜଳ', 'ଶାନ୍ତି ପଥରେ ବୀର ସୈନିକ', 'ଜର୍ଜ ଏବଂ ଏଷ୍ଟିଙ୍ଗ ହାଉସ୍', 'ମାର୍କିନ୍ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସଂପ୍ରଦାୟ', 'ଭିଏତ୍‌ନାମ ଯୁଦ୍ଧ କାହିଁକି ?' ଓ 'ଭିଏତ୍ କଙ୍ଗ' ପ୍ରଭୃତି ଅନ୍ୟତମ । ସେହିପରି ୩ (ତିନି) ଖଣ୍ଡ ପୁସ୍ତକ 'ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀ' ଆନୁକୂଲ୍ୟରୁ ପ୍ରକାଶିତ ହୋଇଛି । ସେଗୁଡ଼ିକ ହେଉଛି : 'ବୃକ୍ଷ ଜଗତ', 'ଆଲିବାବା' ଓ 'ଦିବ୍ୟ ଚକ୍ଷୁ' । 'ଇଣ୍ଡିଆନ କାଉନସିଲ୍ ଅଫ୍ ହିଷ୍ଟୋରିକାଲ୍ ରିସର୍ଚ୍ଚ' ଆନୁକୂଲ୍ୟରୁ ପ୍ରକାଶିତ ହୋଇଛି 'ଭାରତର ଅର୍ଥନୈତିକ ଇତିହାସ' । ଏହି ପୁସ୍ତକମାନଙ୍କୁ ଛାଡ଼ିଦେଲେ ଆଉ ସମସ୍ତ ପୁସ୍ତକ ହେଉଛି ବିଶ୍ୱ ସାହିତ୍ୟର ଅନନ୍ୟ କ୍ଲାସିକ ଗ୍ରନ୍ଥମାନଙ୍କର ଓଡ଼ିଆ ଅନୁବାଦ । 'ମୃଚ୍ଛକଟିକ ଓ ମୁଦ୍ରା ରାକ୍ଷସ', 'ହିତ କଥା', 'ରାମାୟଣ କାହାଣୀ', 'ମହାଭାରତ କାହାଣୀ', 'ଜାତକ କାହାଣୀ', 'ମିତ୍ରଲାଭ', 'ସହୃଦ ଭେଦ', 'ମିତ୍ରଭେଦ', 'ମିତ୍ରପ୍ରାପ୍ତି', 'କାକଲୁକୀୟ', 'ଲବ୍ଧ ପ୍ରଣାଶ', 'ମାଳବିକା ଅଗ୍ନିମିତ୍ର ଓ ଉର୍ବଶୀ', 'ବେତାଳ ପଞ୍ଚବିଂଶତି', 'ପଞ୍ଚତନ୍ତ୍ର', 'ହିତୋପଦେଶ' ଓ 'ଶକୁନ୍ତଳା' ପ୍ରଭୃତି ଅନୁବାଦ ପୁସ୍ତକଗୁଡ଼ିକ ଆମ ପ୍ରାଚ୍ୟ ଜଗତର ଅନନ୍ୟ କୃତି । ମୂଳ ସଂସ୍କୃତ ଗ୍ରନ୍ଥର ସଂକ୍ଷିପ୍ତ ଓଡ଼ିଆ ରୂପାନ୍ତରୀକରଣ ଭାବରେ ଏହି

---

(୨୪) ଡକ୍ଟର କ୍ଷେତ୍ରବାସୀ ନାୟକ / ଆଲୋଚନା ପତ୍ର / ପୃ : ୧୧୬

ପୁସ୍ତକଗୁଡ଼ିକର ମୂଲ୍ୟବୋଧ ଯଥେଷ୍ଟ । ଅନ୍ୟପକ୍ଷରେ କହିବାକୁ ଗଲେ ଲିଓ ଟଲଷ୍ଟୟ, ଗର୍କି, ଚେକଭ୍, ମୋପାସାଁ ଓ ଇଶପ୍ ପ୍ରଭୃତି ବିଶିଷ୍ଟ ପ୍ରଥିତଯଶା କଥାକାରଙ୍କ କଥା ସାହିତ୍ୟକୁ ଓଡ଼ିଆରେ ଅନୁବାଦ କରିବା ସହିତ 'ଟମ କକାଙ୍କ କେବିନ୍', 'ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ ଭ୍ରମଣ' (ଜୁଲସ ଭର୍ଣ୍ଣେଙ୍କର Around the World in Eighty Days), 'ଅଶୀ ଦିନରେ ପୃଥିବୀ ଭ୍ରମଣ' ପ୍ରଭୃତି ଅନେକ କ୍ଲାସିକ ସାହିତ୍ୟକୁ ଓଡ଼ିଆ ଭାଷାରେ ଅନୁବାଦ କରି ଓଡ଼ିଆ ପାଠକଙ୍କୁ ପାଶ୍ଚାତ୍ୟ ସାହିତ୍ୟ ସହିତ ପରିଚିତ କରାଇବାରେ ସେ ଯେଉଁ ଅନନ୍ୟ ଭୂମିକା ସଂପାଦନ କରିଛନ୍ତି, ତାହା ନିଶ୍ଚିତ ଭାବରେ ତାଙ୍କୁ ଓଡ଼ିଆ ସାହିତ୍ୟର ଇତିହାସରେ ଅବିସ୍ମରଣୀୟ କରି ରଖିବ ।

## ସାହିତ୍ୟ କୃତିର ସଂପାଦନା :

ଅଧ୍ୟାପକ ଶ୍ରୀଧର ଦାସ ପାଠ୍ୟ-ପୁସ୍ତକ ସଂରଚନା କରିବା ସହିତ ଅନେକ ସାହିତ୍ୟ କୃତିକୁ ସଂପାଦନା ମଧ୍ୟ କରିଛନ୍ତି । ସେ ନିଜ ବୃତ୍ତିରେ ଜଣେ ଅଧ୍ୟାପକ । ତେଣୁ ପ୍ରତିଟି ମୁହୂର୍ତ୍ତରେ ସେ ଗଭୀର ଅଧ୍ୟୟନ ଓ ଅଧ୍ୟୟନଜନିତ ଜ୍ଞାନକୁ ନେଇ ଅଧ୍ୟାପନା କରିବାକୁ ନିଜ ଜୀବନର ପୂଣ୍ୟକର୍ମ ବୋଲି ସ୍ଥିର କରିନେଇଛନ୍ତି । ସେହି କାରଣରୁ ସେ ପ୍ରତ୍ୟେକଟି ପାଠ୍ୟ ବିଷୟର ସଂପାଦନା କରିବା ସହିତ ସେହି ପୁସ୍ତକର ଏକ ଦୀର୍ଘ ଆଲୋଚନା ପ୍ରସ୍ତୁତ କରିଛନ୍ତି । ସମ୍ଭବତଃ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଆ ସମାଲୋଚନା ସାହିତ୍ୟର ଭୂୟୋବିକାଶ ସାଧିତ ହୋଇଥିବାର ଲକ୍ଷ୍ୟ କରାଯାଏ । ୧୯୪୬ ମସିହାରେ ରେଭେନ୍ସା ମହାବିଦ୍ୟାଳୟ ଓ ୧୯୪୭-୪୮ ମସିହା ବେଳକୁ ଶାନ୍ତିନିକେତନରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ସ୍ନାତକୋତ୍ତର ବିଭାଗ ଖୋଲେ ଓ ସେହି ମର୍ମରେ ଓଡ଼ିଆ ଭାଷା-ସାହିତ୍ୟ ଅଧ୍ୟୟନ ନିମିତ୍ତ ସମାଲୋଚନା ସାହିତ୍ୟ ଲେଖିବାର ଆବଶ୍ୟକତା ଅନୁଭବ କରାଯାଏ । ପ୍ରାଚୀ ସମିତିର ଗଠନ ସହିତ ଏହିଭଳି ଗ୍ରନ୍ଥ ସଂପାଦନାର କାର୍ଯ୍ୟ ପ୍ରଥମତଃ ରାୟବାହାଦୂର ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଆରମ୍ଭ କରନ୍ତି ଏବଂ ଏହି କ୍ରମରେ ଆଧୁନିକ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏକ ନୂତନ ଦିଗ ଉନ୍ମୋଚିତ ହୁଏ । ଫଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଲାବଣ୍ୟବତୀ ଇତ୍ୟାଦିର ସଂପାଦନ କାର୍ଯ୍ୟ ବଳବତ୍ତର ରୁହେ । ଏହି ପରମ୍ପରାର ଉତ୍ତର ଦାୟାଦ ଭାବରେ ଅଧ୍ୟାପକ ଶ୍ରୀଧର ଦାସ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ନୂତନ କରି ଆରମ୍ଭ ହୋଇଥିବା ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରିଛନ୍ତି । ଏହି କ୍ରମରେ ଆମେ ପାଇଛୁ, 'ରୁକ୍ମିଣୀ ବିଭା', 'ଚିଲିକା', 'ଦରବାର', 'ମଥୁରା ମଙ୍ଗଳ', 'ରସ କଲ୍ଲୋଳ', 'ବିଦଗ୍ଧ ଚିନ୍ତାମଣି' ଓ 'ଚନ୍ଦ୍ରଭାଗା'

ପ୍ରଭୃତି ବିଭିନ୍ନ ପ୍ରାଚୀନ କାବ୍ୟର ସୁସଂପାଦନା । ଏହି ପୁସ୍ତକଗୁଡ଼ିକରେ ମୂଳତଃ ବିଶ୍ୱବିଦ୍ୟାଳୟ ଦ୍ୱାରା ନିର୍ଦ୍ଧାରିତ ମୂଳ କାବ୍ୟର ପାଠ୍ୟାଂଶ ସହିତ କବିଙ୍କର ଜୀବନୀ, ସେହି କାବ୍ୟର ବିଶେଷତ୍ୱ, କାବ୍ୟରେ ପ୍ରୟୋଗ ହୋଇଥିବା ଛନ୍ଦ ଓ ଅଳଙ୍କାର ଏବଂ କବିଙ୍କ କୃତିତ୍ୱ ଇତ୍ୟାଦିର ବିଶେଷ ବର୍ଣ୍ଣନା ରହିଛି । ଏହି ପାଠ୍ୟ-ପୁସ୍ତକଗୁଡ଼ିକ କେବଳ ଛାତ୍ର-ଛାତ୍ରୀଙ୍କ ଉଦ୍ଦେଶ୍ୟରେ ଲେଖା ଯାଇଥିବାରୁ ତାହା ଅତ୍ୟନ୍ତ ସରଳ ଓ ସାବଲୀଳ ହୋଇପାରିଛି ।

## ଜୀବନୀ :

ଶ୍ରୀଧର ଦାସ ଓଡ଼ିଆ ସାହିତ୍ୟର ଅନେକ ଯଶସ୍ୱୀ ଲେଖକଙ୍କର ଜୀବନୀ ରଚନା କରିଛନ୍ତି । ଶିଶୁ ଓ କିଶୋରମାନଙ୍କୁ ଓଡ଼ିଆ ସାହିତ୍ୟିକଙ୍କ ସହିତ ପରିଚିତ କରାଇବାର ଅଦମ୍ୟ ଲାଳସାରୁ ସମ୍ଭବତଃ ଏତାଦୃଶ କର୍ମରେ ସେ ନିଜର ମନୋନିବେଶ କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ମର୍ମରେ ଓଡ଼ିଆ ସାହିତ୍ୟର ବାଣୀ ଭଣ୍ଡାର ପାଇଛି; ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, କବିସୂର୍ଯ୍ୟ ବଳଦେବ ରଥ ଓ ସାଧୁସୁନ୍ଦର ଦାସ ପ୍ରମୁଖ ସାହିତ୍ୟିକଙ୍କ ଜୀବନୀ । ଏହି ପୁସ୍ତକଗୁଡ଼ିକ ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର ତରଫରୁ 'ଅମର ଚରିତ' ଶୀର୍ଷକ ସିରିଜ୍‌ରେ ପ୍ରକାଶିତ ହୋଇଥିଲା । ଏହା ବ୍ୟତୀତ 'ୟୁନାଇଟେଡ୍ ବୁକ୍ ହାଉସ୍, କଟକ-୨' ତରଫରୁ ମଧ୍ୟ ପ୍ରକାଶ ପାଇଥିଲା ତାଙ୍କର ଅନ୍ୟ ଏକ ପୁସ୍ତକ 'ପଞ୍ଚ ପ୍ରଦୀପ' । ଏହି ପୁସ୍ତକରେ ମଧ୍ୟ କେତେକ ସାହିତ୍ୟିକଙ୍କ ଜୀବନୀ ପ୍ରକାଶ ପାଇଥିଲା । ସେଗୁଡ଼ିକ ହେଉଛି : 'କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ସ୍ୱଭାବକବି ଗଙ୍ଗାଧର, ସାହିତ୍ୟ ସାଧକ ବିଶ୍ୱନାଥ ଓ ପଲ୍ଲୀକବି ନନ୍ଦକିଶୋର' ପ୍ରଭୃତି ସାହିତ୍ୟିକଙ୍କ ଜୀବନୀ । ଗ୍ରନ୍ଥ ମନ୍ଦିର ତରଫରୁ ମଧ୍ୟ ପ୍ରକାଶ ଲାଭ କରିଥିଲା ଖଣ୍ଡିଏ ପୁସ୍ତକ, "ଜୀବନୀ ବର୍ତ୍ତିକା" । ଏହି ପୁସ୍ତକଟିକୁ ଲେଖିବାରେ ସାହାଯ୍ୟ କରିଛନ୍ତି ତାଙ୍କର ପ୍ରିୟ ସହକର୍ମୀ ପଠାଣି ପଟ୍ଟନାୟକ । ଏହି ପୁସ୍ତକରେ ରହିଛି : ରୁଷିଆର ଋଷି ଟଲଷ୍ଟୟ, ସ୍ୱାଧୀନ ଇଟାଲୀର ଅଗ୍ରଦୂତ ଗାରିବଲ୍‌ଡି, ସାମ୍ୟବାଦର ଅଗ୍ରଦୂତ ଲେନିନ୍, ବିଶ୍ୱବନ୍ଧୁ ଡାକ୍ତର ଜେନର ସାମୁଏଲ୍ ହାନିମାନ, ବିଶ୍ୱକବି ରବୀନ୍ଦ୍ର ନାଥ, ଛାପାକଳ ଓ ଗୁଟେନବର୍ଗ ଓ ଆଦର୍ଶ ଶିକ୍ଷକ ଆର୍ଣ୍ଣଓଲଡ୍ ପ୍ରଭୃତି ବିଶ୍ୱର ପ୍ରସିଦ୍ଧି ଲାଭ କରିଥିବା ମହାମାନବମାନଙ୍କର ଜୀବନୀ । ଏକଦା ଆର୍ଣ୍ଣଓଲଡ୍‌ଙ୍କର କାହାଣୀ ଶୁଣି ତାଙ୍କ ଆଦର୍ଶରେ ଅଭିଭୂତ ହୋଇଉଠିଥିବା ଶ୍ରୀଧର ଏବେ ତାଙ୍କର ଜୀବନୀ ଲେଖିବା ବେଳକୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନରେ ଲେଖିଛନ୍ତି, "ଆର୍ଣ୍ଣଓଲଡ୍ ଧନରେ ବା କ୍ଷମତାରେ ବଡ଼ ନଥିଲେ । ସେ ଶତ ଶତ ଛାତ୍ରଙ୍କୁ ଉପଯୁକ୍ତ

ଶିକ୍ଷା ଦେଇ ମନୁଷ୍ୟ କରିପାରିଥିଲେ । ଏବେ ସୁଦ୍ଧା ଆଦର୍ଶ ଶିକ୍ଷକ ଭାବରେ ତାଙ୍କର ନାମ ପୃଥିବୀରେ ଖ୍ୟାତ ।"(୨୫)

ଏହି ସମସ୍ତ ଜୀବନୀକୁ ପାଠ କଲେ ସ୍ୱତଃ ସ୍ୱୀକାର କରାଯାଇପାରେ ଯେ, ସେ ସମାଜର ନବ ତରୁଣମାନଙ୍କୁ ସୁମାର୍ଗରେ ପରିଚାଳିତ କରିବା ସଙ୍ଗେ ସଙ୍ଗେ ଦେଶ ବିଦେଶର ମହାମାନବମାନଙ୍କ ସହିତ ପରିଚିତ କରାଇବା ପାଇଁ ଏତାଦୃଶ ଏକ ମହାନ୍ ପଦକ୍ଷେପ ଗ୍ରହଣ କରିବା ସହିତ ଓଡ଼ିଆ ସାହିତ୍ୟର ବାଣୀ ଭଣ୍ଡାରରେ ଥିବା ଜୀବନୀ ସାହିତ୍ୟର ବିଭାଗଟିକୁ ଆହୁରି ସମୃଦ୍ଧ କରିବାରେ ସାହାଯ୍ୟ କରିଥିଲେ ।

## ଆତ୍ମଜୀବନୀ :

ଅଧ୍ୟାପକ ଶ୍ରୀଧର ଦାସ ଯେଉଁ ଆତ୍ମଜୀବନୀଟି ଲେଖିଛନ୍ତି, ତାହା ହେଉଛି : "ସୁଅ ମୁହଁର ପତର" । ଏହି ପୁସ୍ତକଟିକୁ ସେ ଅତି ପରିଣତ ବୟସରେ ବନ୍ଧୁମାନଙ୍କ ଆଗ୍ରହ ଓ ଉତ୍ସାହ କ୍ରମରେ ଲେଖିଛନ୍ତି । ପୁରୁଣା ସ୍ମୃତିକୁ ରୋମନ୍ଥନ କରିଛନ୍ତି । ଅନେକ ସୁଖ ଓ ଦୁଃଖର ଅତୀତ ଧୀରେ ଧୀରେ ଆଖି ଆଗରେ ଜୀବନ୍ତ ହୋଇଉଠିଛି । ଯେତେବେଳେ ଯେମିତି ସ୍ମୃତିର ସୁଅଟି ମାଡ଼ିଆସିଛି, ସେତେବେଳେ ତାଙ୍କର ଆବେଗ ସେହିଥିରେ ପତରଟିଏ ପରି ଭାସି ଯାଇଛି ମାତ୍ର । ତେଣୁ ଯେତେବେଳେ ସ୍ମୃତି ସମୟ ଓ ତାରିଖକୁ ଆଶ୍ରୟ କରି ପ୍ରବାହିତ ହୋଇଛି, ସେତେବେଳେ ତାହା ପୂର୍ଣ୍ଣମାତ୍ରାରେ ଐତିହାସିକ ଘଟଣା ପରି ମନେ ହୋଇଛି । ଆଉ ଯେତେବେଳେ ସ୍ମୃତି ଅତି ସାଦାସିଧା ହୋଇ ଝରିଆସିଛି, ସେତେବେଳେ ତାହା କାହାଣୀ ପରି ମନେ ହୋଇଛି । ତେବେ ଜୀବନ ଠାରୁ ଦୂରରେ ରହି ନିଜ ଜୀବନକୁ ଦେଖୁଥିବା ସେହି ମଣିଷର ଆତ୍ମଜୀବନୀ ଯେ କେତେ ପ୍ରେରଣାର ଉତ୍ସ, ତାହାକୁ ନ ପଢ଼ିଲେ ଓ ପଢ଼ିବା ବେଳେ ସେଥିରେ ଆତ୍ମସ୍ଥ ନହେଲେ ଠିକ୍ ଭାବରେ ବୁଝିହେବ ନାହିଁ । ସେ ସବୁବେଳେ ନିଜର ଆତ୍ମସମ୍ମାନକୁ ବଡ଼ ବୋଲି ଭାବିଛନ୍ତି । ସେହି କାରଣରୁ ସେ ଅନେକ ସମୟରେ ଆଗ ପଛ କିଛି ନ ବିଚାରି ଯେଉଁଠି ଆତ୍ମସମ୍ମାନରେ ସାମାନ୍ୟ ଆଞ୍ଚ ଲାଗିଲା ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି ବା ତାଙ୍କ ମନରେ ସେପରି ଆଶଙ୍କା ଜାଗ୍ରତ ହୋଇଛି, ସେତେବେଳେ ସେ ସେହି ସ୍ଥାନକୁ ତ୍ୟାଗ କରିଛନ୍ତି । ତାଙ୍କ ଠାରେ ଜୀବନର ସତ୍ୟ ହିଁ ସବୁଠାରୁ ବଡ଼ ସତ୍ୟ

(୨୫) ଜୀବନୀ ବର୍ତ୍ତିକା : ଶ୍ରୀଧର ଦାସ ଓ ପଠାଣି ପଟ୍ଟନାୟକ / ପ୍ରକାଶକ : ଗ୍ରନ୍ଥମନ୍ଦିର, କଟକ-୨
ନୂତନ ସଂସ୍କରଣ - ଡିସେମ୍ବର, ୧୯୭୧ / ପୃ : ୭୦

ବୋଲି ପ୍ରମାଣିତ ହୋଇଛି । ସେହି କାରଣରୁ ପ୍ରଫେସର ଗଗନେନ୍ଦ୍ରନାଥ ଦାଶ କହି ରଖିଛନ୍ତି, "The most interesting thing about this autobiography is that it records the struggle of a god-fearing, law abiding, patriotic and basically a good but ordinary human being who refused to part with his self respect. He continued to cherish certain principles and values even when the future became uncertain and dire poverty stared him in the face. He has taken risks, too many and too often, even when the stakes was high. But these are not risks taken by a gambler, but one which only a man of principle is sometimes obliged to take."[୨୬]

ବାସ୍ତବରେ ତାଙ୍କ ଆତ୍ମଜୀବନୀ ଏକ ବଳିଷ୍ଠ ଅଭିଜ୍ଞତା ଓ ଜୀବନ ସଂଗ୍ରାମର ନିଛକ ଚିତ୍ରଟିଏ ପ୍ରଦାନ କରିଥାଏ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

## ଅପ୍ରକାଶିତ ସୃଷ୍ଟି :

ନିରଳସ ଭାବରେ ସାହିତ୍ୟ ସାଧନା କରୁଥିବା ଅଧ୍ୟାପକ ଶ୍ରୀଧର ଦାସଙ୍କର ସମସ୍ତ କୃତି ଯେ ମୁଦ୍ରିତ ରୂପ ନେଇସାରିଥିଲା, ତାହା ନୁହେଁ । ଅନେକ କୃତି କେବଳ ପାଣ୍ଡୁଲିପି ସ୍ତରରେ ରହି ଯାଇଥିଲା । ତାଙ୍କ ମୃତ୍ୟୁ ପରେ ଅନେକ ଦରଦୀ ପ୍ରକାଶକ ଅତ୍ୟନ୍ତ ସମ୍ବେଦନଶୀଳ ହୋଇ ସେସବୁ ପାଣ୍ଡୁଲିପିକୁ ମୁଦ୍ରିତ କରିବାର ଲାଳସା ପୋଷଣ କରି ତାଙ୍କର ଆତ୍ମୀୟଙ୍କ ଠାରୁ ତାହା ନେଇଯାଇଥିଲେ । ମାତ୍ର ବଡ଼ ଦୁଃଖର କଥା ଯେ, ପାଣ୍ଡୁଲିପି ଗ୍ରହଣ କରିଥିବା ସମୟର ଆବେଗ ଆଉ ପରବର୍ତ୍ତୀ କାଳରେ ଦୀର୍ଘସ୍ଥାୟୀ ହୋଇ ରହିପାରିଲା ନାହିଁ । ପାଣ୍ଡୁଲିପି ସେହି ପାଣ୍ଡୁଲିପି ସ୍ତରରେ ରହି କ୍ରମେ ନିଖୋଜ ହୋଇଗଲା । ବ୍ୟକ୍ତିଗତ ଭାବରେ ଏହି ପୁସ୍ତକର ଲେଖକ ନିଜେ ଯାଇ ସେହି ପ୍ରକାଶକମାନଙ୍କୁ ଭେଟିଛି ଓ ସେ ସମ୍ପର୍କରେ ଅନୁସନ୍ଧାନ କରିଛି; ମାତ୍ର ପରିଣତିରେ ହତୋତ୍ସାହ ହୋଇ ଫେରିଛି । ତେବେ ଅଧ୍ୟାପକ ଦାସଙ୍କ ପଢ଼ାଘରେ ଥିବା ତାଙ୍କ ବ୍ୟକ୍ତିଗତ ଗ୍ରନ୍ଥାଗାରରୁ ମାତ୍ର ଦୁଇଗୋଟି ପାଣ୍ଡୁଲିପି ଉଦ୍ଧାର କରାଯାଇଛି । ଗୋଟିଏ ହେଉଛି କଠୋପନିଷଦ୍‌ର କିୟଦ୍ ଅଂଶ ଓ ଅନ୍ୟଟି କବି ରାଧାମୋହନ ଗଡ଼ନାୟକଙ୍କର 'ଶାମ୍ବୁକାର ସ୍ୱପ୍ନ'ର ସବିଶେଷ ଆଲୋଚନା ।

---

(୨୬) A Leaf in the Stream (An Autobiography) : Tr. by Mary Mohanty / Foreward : by Prof. Gaganendranath Dash / P.2

ଖୁବ୍ ସମ୍ଭବତଃ କଠୋପନିଷଦ୍‌ର ସେହି କିୟଦ୍ ଅଂଶଟି 'ଶାମୁକାର ସ୍ୱପ୍ନ'ର ପରବର୍ତ୍ତୀକାଳୀନ ରଚନା । କାରଣ ଶାମୁକାର ସ୍ୱପ୍ନଟି ପୂର୍ଣ୍ଣାଙ୍ଗ ହୋଇସାରିଥିଲା ବେଳେ କଠୋପନିଷଦ୍‌ଟି ସମାପ୍ତ ହୋଇପାରିନାହିଁ ।

'ଶାମୁକାର ସ୍ୱପ୍ନ'ଟିର ରଚନା କାଳ ହେଉଛି ୧୯୭୫ ମସିହା (ତା ୧୫.୬.୧୯୭୫ ରିଖ ବେଳକୁ ଏହା ଲେଖା ସରିଛି) । ସମ୍ଭବତଃ ଉତ୍କଳ ବିଶ୍ୱବିଦ୍ୟାଳୟର ପତ୍ର ବିନିମୟ ପାଠ୍ୟକ୍ରମରେ ଅତିରିକ୍ତ ପାଠ୍ୟ ଭାବେ ସ୍ଥାନିତ ଥିବା ଏହି ଶାମୁକାର ସ୍ୱପ୍ନଟିର ସବିଶେଷ ଆଲୋଚନାଟି ସେ ପ୍ରସ୍ତୁତ କରିଥିଲେ ସେହି ବିଶ୍ୱବିଦ୍ୟାଳୟ ପାଇଁ । କାରଣ ସେହି ଆଲୋଚନାଟିର ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟର ପତ୍ରବିନିମୟ ପାଠ୍ୟକ୍ରମ ବିଭାଗୀୟ ନିର୍ଦ୍ଦେଶକଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖାଯାଇଛି । ଯେଉଁଥିରୁ ସୂଚନା ମିଳୁଛି ଯେ, ସେ ବିଶ୍ୱବିଦ୍ୟାଳୟର ଚିଠି ସଂଖ୍ୟା–୪୨୦୫୩/ତା ୧୯.୦୫.୧୯୭୫ ରିଖ ଅନୁଯାୟୀ ଏହି 'ଶାମୁକାର ସ୍ୱପ୍ନ' କବିତାର ଆଲୋଚନାଟିକୁ ନିର୍ଦ୍ଦେଶକଙ୍କ ନିକଟକୁ ପଠାଇଛନ୍ତି । ଚିଠିର ତଳେ ତାଙ୍କର ସ୍ୱାକ୍ଷର ରହିଛି ଓ ତାରିଖ ନିର୍ଦ୍ଦେଶ ରହିଛି, ତା ୧୫.୦୬.୧୯୭୫ ରିଖ ବୋଲି ।[୨୭]

ଏହି 'ଶାମୁକାର ସ୍ୱପ୍ନ' ଆଲୋଚନାଟିର ପ୍ରଥମେ ରହିଛି କବି ରାଧାମୋହନ ଗଡ଼ନାୟକଙ୍କ ପରିଚୟ, ଶାମୁକାର ସ୍ୱପ୍ନରେ ସ୍ଥାନିତ ଥିବା ତେରଗୋଟି କବିତାର ନାମୋଲ୍ଲେଖ ସହିତ ନାମକରଣର ସାର୍ଥକତା, ପ୍ରତ୍ୟେକଟି କବିତାର ସାରକଥା ସହିତ କିଛି କଠିନ ଶବ୍ଦର ଅର୍ଥ ଓ ପରେ ପରେ କିଛି ଆଦର୍ଶ ପ୍ରଶ୍ନ । ଏହି ଧାରାରେ ଆଲୋଚନାଟିକୁ ପ୍ରସ୍ତୁତ କରିବାର ଅଭିପ୍ରାୟକୁ ବ୍ୟକ୍ତ କରିବାକୁ ଯାଇ ସେ କହିଛନ୍ତି, "x x Since the book (Samukara Swapna) is intended for non-detailed study, I have not included any objective type questions. The lesson have been prepared from the examination point of view of Intermediate Candidates."[୨୮] ବାସ୍ତବରେ ଆଲୋଚନାଟିକୁ ପାଠକଲେ ଏହା ଯେ କେତେ ସରଳ ଭାବରେ ବିଦ୍ୟାର୍ଥୀଙ୍କ ଉଦ୍ଦେଶ୍ୟରେ ଲେଖାଯାଇଛି, ତାହା ଉପଲବ୍ଧି କରିହୁଏ ।

କବି ରାଧାମୋହନ ଗଡ଼ନାୟକ ସ୍ୱୀୟ କବିତା 'ଶାମୁକାର ସ୍ୱପ୍ନ'କୁ କାହିଁକି ଏପରି ନାମକରଣ କରିଛନ୍ତି, ସେ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଶ୍ରୀ ଦାସ

(୨୭) ଚିଠିର ପ୍ରତିଲିପି ପରିଶିଷ୍ଟର ଙ (୨) ଅଂଶରେ ରହିଅଛି ।

(୨୮) ଦ୍ରଷ୍ଟବ୍ୟ : ପରିଶିଷ୍ଟରୁ (୧)ରେ ଥିବା ଚିଠି ।

କହିଛନ୍ତି, "x x ଶାମୁକା ଏକ ନଗଣ୍ୟ ପଦାର୍ଥ; ଏହାର ମୂଲ୍ୟ ପ୍ରାୟ କିଛି ନାହିଁ । କିନ୍ତୁ ଏହି ଶାମୁକାର ଗର୍ଭରେ ବହୁମୂଲ୍ୟ ମୁକ୍ତା ମଧ୍ୟ ଥାଏ । ତେଣୁ ଶାମୁକା ଅବହେଳାର ବସ୍ତୁ ନୁହେଁ । ସମାଜରେ ଶାମୁକା ଭଳି ମୂଲ୍ୟହୀନ ଲକ୍ଷ ଲକ୍ଷ ମନୁଷ୍ୟ ଅଛନ୍ତି । ସେହି ମନୁଷ୍ୟମାନେ ସମାଜରେ ଦୀନ, ହୀନ, ନିଚକୁଳର ହୋଇପାରନ୍ତି; ସେମାନଙ୍କର ବଂଶ ଗୌରବ ବା ଜାତି ଗୌରବ ନଥାଇପାରେ । କିନ୍ତୁ ସେଇମାନଙ୍କ ମଧ୍ୟରେ କେତେଜଣ ନିଜର ମହତ୍ କାର୍ଯ୍ୟ ଦ୍ୱାରା ଗୌରବର ଶିଖରକୁ ଉଠି ଅଛନ୍ତି । ସେମାନଙ୍କର ଜୀବନ ଯୁଗ ଯୁଗ ଧରି ସମାଜକୁ ପ୍ରେରଣା ଦେବାର କଥା । ଏହି ପୁସ୍ତକରେ ବର୍ଣ୍ଣିତ ଚଣ୍ଡାଲୁଣୀ, ବାଲ୍ମିକୀ, ଶ୍ରମଣା, ଗୁହକ, ଏକଲବ୍ୟ, ଭୀମଭୋଇ, ଯସ୍‌ମା, ରାମୀ ପ୍ରଭୃତି ଆମ ସମାଜର ତଥାକଥିତ ନିଚ ଶ୍ରେଣୀର ହେଲେହେଁ ସେମାନଙ୍କ ମହତ୍ତ୍ୱର ସୌରଭ ସମଗ୍ର ମାନବ ସମାଜକୁ ସୁରଭିତ କରୁଅଛି । ତେଣୁ କବି ପୁସ୍ତକଟିକୁ 'ଶାମୁକାର ସ୍ୱପ୍ନ' ଆଖ୍ୟା ଦେଇଅଛନ୍ତି ।"[୨୯] ଆଲୋଚକ ଅଧ୍ୟାପକ ଶ୍ରୀ ଦାସଙ୍କର ଏହି କ୍ଷେତ୍ରରେ ଉପସ୍ଥାପିତ ଯୁକ୍ତିଟି ଏକାନ୍ତ ଭାବରେ ସମୟୋଚିତ ଓ ପ୍ରସଂଶୋଚିତ ମଧ୍ୟ ।

ସମ୍ପୂର୍ଣ୍ଣ ଆଲୋଚନାଟିର ଭାଷା, ଶୈଳୀ ଓ ଉପସ୍ଥାପନାର କଳା ଏକାନ୍ତ ଭାବରେ ସରଳ ଓ ସାବଲୀଳ; ବିଶେଷକରି ଛାତ୍ରୋପଯୋଗୀ ହୋଇପାରିଛି ବୋଲି ପ୍ରତୀତ ହୋଉଛି ।

ଅପ୍ରକାଶିତ ପାଣ୍ଡୁଲିପି ଭାବରେ ମିଳିଥିବା ଅନ୍ୟ ଆଲେଖ୍ୟଟି ହେଉଛି, କଠୋପନିଷଦ୍‌ର ସରଳ ଓଡ଼ିଆ ଭାଷାନ୍ତର । ଏହା ଏକ ଅସମ୍ପୂର୍ଣ୍ଣ କାବ୍ୟାନୁବାଦ । ହୁଏତ ଏହା ସମ୍ପୂର୍ଣ୍ଣ ହୋଇଥିବ; ମାତ୍ର ବର୍ତ୍ତମାନ କେତେକାଂଶ ମିଳୁନଥିବ । ତେବେ ମୂଳ ପାଣ୍ଡୁଲିପିଟି ଦ୍ୱିତୀୟ ବଲ୍ଲୀ ସମ୍ପୃକ୍ତ ପାଖରୁ ଆରମ୍ଭ ହୋଇ ତୃତୀୟ ବଲ୍ଲୀର ପ୍ରଥମ ଅଧ୍ୟାୟକୁ କ୍ରମଶଃ ଗତିକରିଛି ପୃଷ୍ଠା ୬୩ରେ । ଏଣୁ ଏହିଥିରୁ ଜଣାପଡ଼େ ଯେ, ପୃଷ୍ଠା ୧ ରୁ ପୃଷ୍ଠା ୬୨ ମଧ୍ୟରେ ନିଶ୍ଚିତ ଭାବରେ ଦ୍ୱିତୀୟ ବଲ୍ଲୀ ପର୍ଯ୍ୟନ୍ତ ଲେଖା ଯାଇଥିବ । ତାହା ହୁଏତ ପ୍ରକାଶ ପାଇଁ କୌଣସି ପ୍ରକାଶକ ନେଇଥାଇପାରନ୍ତି ବା କେଉଁଠି ରହିଯାଇଥିବ । ତେବେ ପାଣ୍ଡୁଲିପିଟିର ପୃ. ୯୩ରେ କଠୋପନିଷଦ୍‌ର ତୃତୀୟ ବଲ୍ଲୀ-ଦ୍ୱିତୀୟ ଅଧ୍ୟାୟ ଶେଷ ହୋଇଛି । ଏହାପରେ ଆଉ ଲେଖାଯାଇଛି କି ନାହିଁ; ତାହାର ସୂଚନା ବର୍ତ୍ତମାନ ମିଳୁନାହିଁ ।

ଏହି କଠୋପନିଷଦ୍‌ର ଅନୁବାଦକୁ ପାଠ କଲେ, ତାହା କେତେ ସରଳ, ବୋଧଗମ୍ୟ ଓ ସ୍ୱଚ୍ଛ, ତାହା ଅନୁମାନ କରାଯାଇପାରେ । ନବାକ୍ଷରୀ ବୃତ୍ତରେ ରଚିତ ହୋଇଥିବା ଏହି ଅନୁବାଦର କିଛି ଅଂଶ ଏଠାରେ ଦୃଷ୍ଟାନ୍ତ ଭାବରେ ଉପସ୍ଥାପନ କରାଗଲା ।

(୨୯) 'ଶାମୁକାର ସ୍ୱପ୍ନ' ଆଲୋଚନାର ପାଣ୍ଡୁଲିପି / ପୃ : ୧

ମୃତ୍ୟୁ ପ୍ରୋକ୍ତାଂ ନଚିକେତୋଽଥ ଲବ୍ଧ୍ୱା ।
ବିଦ୍ୟାମେଣଂ ଯୋଗବିଧିଂଚ କୃତସ୍ନମ୍ ।
ବ୍ରହ୍ମପ୍ରାପ୍ତୋ ବିରଜୋଽଭୂଦ୍ ବିମୃତ୍ୟୁ
ରନ୍ୟୋଽପ୍ୟେବଂ ଯୋ ବିଦଧ୍ୟାତ୍ମମେବ ।।୧୮।।
ଇତି କଠୋପନିଷଦ୍ ଦ୍ୱିତୀୟାଧ୍ୟାୟେ ତୃତୀୟ ବଲ୍ଲୀ ।

x x x x x x

ବ୍ରହ୍ମ ବିଦ୍ୟାର କଥା ଏହି । ନଚିକେତାଙ୍କୁ ଯମ କହି ।।
ତା' ସଙ୍ଗେ ପୁଣି ଯୋଗବିଧି । କହିଲେ ସମସ୍ତ ସମାଦି ।।
ସେ ଜ୍ଞାନ ଲଭି ନଚିକେତା । ନାଶିଲେ ଭବ ଶୋକ, ଚିନ୍ତା ।।
ଧର୍ମାଧର୍ମରୁ ହେଲେ ମୁକ୍ତ । କାମନା-ଅବିଦ୍ୟା-ରହିତ ।।
ବ୍ରହ୍ମପ୍ରାପତି ତାଙ୍କୁ ହେଲା । ସଂସାର ଦୁଃଖ ନ ରହିଲା ।।
ଅନ୍ୟେ ଯେ ଆତ୍ମାକୁ ଜାଣନ୍ତି । ତେମନ୍ତ ଫଳକୁ ଲଭନ୍ତି ।।

*(ମୂଳ ପାଣ୍ଡୁଲିପି / ପୃଷ୍ଠା. ୯୩)*

ଓଡ଼ିଆ ଭାବାନୁବାଦକୁ ଯଦି କେହି କେବଳ ପାଠ କରନ୍ତି, ତେବେ ଏହା ଠିକ୍ ଭାଗବତ ପରି ମନକୁ ଛୁଇଁବ । ଭକ୍ତ ତଥା ବୃଦ୍ଧ-ବୃଦ୍ଧାଙ୍କୁ ନିଶ୍ଚିତ ଭାବରେ ଆନନ୍ଦ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ ।

ଅପ୍ରକାଶିତ କୃତି ମଧ୍ୟରେ ଆଉ ଗୋଟିଏ ଗବେଷଣାତ୍ମକ ଅସଂପୂର୍ଣ୍ଣ ଆଲେଖ୍ୟଟି ହେଉଛି : ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ତଥା ରାଜଗୁରୁ କବି ଗୋଦାବର ମିଶ୍ରଙ୍କ କୃତି ସମ୍ବନ୍ଧୀୟ ଆଲେଖ୍ୟ । କବି ଗୋଦାବର ମିଶ୍ରଙ୍କ କୃତିକୁ ଆକଳନ କରିବା ପାଇଁ ସେ ମୂଳତଃ "ମାଦଳା ପାଞ୍ଜି", ପଣ୍ଡିତ ରାମନାଥ ଶାସ୍ତ୍ରୀଙ୍କ ଦ୍ୱାରା ଲିଖିତ "ଗୋଦାବର ମିଶ୍ରଙ୍କ ଜୀବନ ଚରିତ" ଓ ପଣ୍ଡିତ ପି.କେ. ଗୋଡେଙ୍କ ଦ୍ୱାରା ରଚିତ "Godavara Misra, The Rajaguru and Mantri of Gajapati Prataprudra Deva of Orissa and his works between AD. 1497-1539"କୁ ଆଶ୍ରୟ କରିଛନ୍ତି । ଏହି ମର୍ମରେ ସେ ମୂଳ ପାଣ୍ଡୁଲିପିର ଆରମ୍ଭରେ ଏକ ନୋଟ୍ ପ୍ରସ୍ତୁତ କରିଛନ୍ତି ଓ ସେଥିରେ ସେ ଉଲ୍ଲେଖ କରିଛନ୍ତି, "x x ପଣ୍ଡିତ କବି ପୁଙ୍ଗବ ଗୋଦାବର ମିଶ୍ର ନିମ୍ନଲିଖିତ ନଅଖଣ୍ଡ ଗ୍ରନ୍ଥର ପ୍ରଣେତା ବୋଲି ଜଣାଯାଏ । ଏଗୁଡ଼ିକ ବ୍ୟତୀତ ଅନ୍ୟ ଗ୍ରନ୍ଥ

ମଧ୍ୟ ଥାଇପାରେ । (୧) ଯୋଗ ଚିନ୍ତାମଣିଃ, (୨) ଜୟ ଚିନ୍ତାମଣିଃ, (୩) ମନ୍ତ୍ର ଚିନ୍ତାମଣିଃ, (୪) ତନ୍ତ୍ର ଚିନ୍ତାମଣିଃ, (୫) ଆଚାର ଚିନ୍ତାମଣିଃ, (୬) ନୀତି କଳ୍ପଲତା, (୭) ଅଦ୍ୱୈତ ଦର୍ପଣଃ, (୮) ହରିହର ଚତୁରଙ୍ଗମ୍ ଓ (୯) ଦୁର୍ଗୋତ୍ସବ ପୂଜାକ୍ରମ ସଂସ୍କୃତ ପଦ୍ଧତିଃ ।" (ମୂଳ ପାଣ୍ଡୁଲିପି / ପୃ. ୧) ଏହି ପାଣ୍ଡୁଲିପିଟି ମାତ୍ର ୧୨ ପୃଷ୍ଠା ଲେଖାଯାଇଛି । ଆହୁରି ଆଗକୁ ଗତି କରିପାରିଥାନ୍ତା । ତେବେ କୌଣସି କାରଣରୁ ଏହା ଆଉ ଅଧିକ ଆଗକୁ ଗତି କରିନାହିଁ । ସମ୍ଭବତଃ ଶ୍ରୀଧର ଦାସ ଏହାକୁ ଯଦି ନିଜ ଜୀବନର ଶେଷ ଅବସ୍ଥାରେ କରୁଥିବେ; ତେବେ ଅସୁସ୍ଥତା ବଶତଃ ଏହାକୁ ସମ୍ପୂର୍ଣ୍ଣ କରିପାରିନଥିବେ । କାର୍ଯ୍ୟ ଆରମ୍ଭ ହୋଇ ଗତି କରୁ କରୁ ଏହା ଅଟକି ରହିଯାଇଥିବ ।

ତେବେ ଏହିସବୁ ଅପ୍ରକାଶିତ କୃତିଗୁଡ଼ିକୁ ପାଠକଲେ, ସେ ଯେ ଚିରଚଞ୍ଚଳ ଥିଲେ ଓ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସାହିତ୍ୟ ସାଧନାରେ ବ୍ରତୀ ଥିଲେ, ତାହା ବୁଝିବାକୁ ହୋଇଥାଏ । ପ୍ରଫେସର ପଠାଣି ପଟ୍ଟନାୟକଙ୍କ ଭାଷାରେ, "x x ସେ ଥିଲେ ଜଣେ ନିରବଚ୍ଛିନ୍ନ ସାଧକ । ସବୁବେଳେ ସେ କିଛି ପାଠ କରୁଥିଲେ ଓ ଲେଖୁଥିଲେ । ତାଙ୍କ କଲମର କେବେ ବିଶ୍ରାମ ନଥାଏ ।"[୩୦] ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାରେ ନିମଗ୍ନ ରହିଛନ୍ତି । ତାଙ୍କ ଅପ୍ରକାଶିତ କୃତି ପ୍ରକାଶିତ ହୋଇପାରିଲେ, ତାଙ୍କ ବ୍ୟକ୍ତିତ୍ୱର ଆହୁରି ଅନେକ ଦିଗ ସ୍ପଷ୍ଟ ଓ ଉନ୍ମୁକ୍ତ ହୋଇଉଠନ୍ତା ଏଥିରେ ସନ୍ଦେହ ନାହିଁ ।

***

(୩୦) ଅଧ୍ୟାପକ ଶ୍ରୀଧର ଦାସଙ୍କ ସମ୍ପର୍କରେ ପ୍ରଫେସର ପଠାଣି ପଟ୍ଟନାୟକଙ୍କ ନିଜସ୍ୱ ମତ / ଏକ ସାକ୍ଷାତକାର ।

# ଗଦ୍ୟଶୈଳୀ

ଅଧ୍ୟାପକ ଶ୍ରୀଧର ଦାସଙ୍କର ଗଦ୍ୟଶୈଳୀକୁ ଆଲୋଚନା କଲାବେଳେ ଆମକୁ ସ୍ମରଣ ରଖିବାକୁ ହେବ ଯେ, ସେ ଆଦୌ ନିରୋଳା ଗଦ୍ୟ ଲେଖକ ନୁହନ୍ତି । ମୁଖ୍ୟତଃ ସେ ହେଉଛନ୍ତି ଜଣେ ଅନୁବାଦକ । ତାଙ୍କର ନିରୋଳା ଗଦ୍ୟ ଯେ ନାହିଁ, ତାହା ନୁହେଁ । ଏକଦା 'ସହକାର' ପୃଷ୍ଠାରେ ସେ ଲେଖିଥିଲେ 'ନିତ୍‌ସେ ଓ ସ୍ତ୍ରଜନ ବିଦ୍ୟା'[୩୧] ବା 'ବଉଦର ଭାଷା'[୩୨] ପ୍ରଭୃତି ବିଭିନ୍ନ ମୌଳିକ ପ୍ରବନ୍ଧ । ବା 'ପରଦା ସେପଟେ କିଏ ସେ'[୩୩] ପରି କେତେକ ଶିଶୁ ଗଳ୍ପ ଇତ୍ୟାଦି । ତେବେ ଏଗୁଡ଼ିକର ସଂଖ୍ୟା ଏତେ କମ୍ ଯେ, ଏହାକୁ କେବଳ ଆଧାର କରି ତାଙ୍କର ଗଦ୍ୟଶୈଳୀକୁ ଆକଳନ କରିବା ଏକାନ୍ତ ଦୁରୁହ ବ୍ୟାପାର । ତେବେ ଏହା ସାଙ୍ଗରେ ଆମେ ଯଦି ତାଙ୍କର ସଂପାଦିତ ଗ୍ରନ୍ଥ, ଯେପରି କବିବର ରାଧାନାଥଙ୍କର 'ଚିଲିକା', 'ଦରବାର', 'ଚନ୍ଦ୍ରଭାଗା' ବା ଶିଶୁ ଶଙ୍କର ଦାସଙ୍କର 'ଉଷାଭିଳାଷ' ବା କବି ଦୀନକୃଷ୍ଣ ଦାସଙ୍କର 'ରସ କଲ୍ଲୋଳ' ବା ଅଭିମନ୍ୟୁ ସାମନ୍ତ ସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣି' ବା କବି ଭକ୍ତଚରଣ ଦାସଙ୍କର 'ମଥୁରା ମଙ୍ଗଳ' ପ୍ରଭୃତିର ମୁଖବନ୍ଧ ଓ ସମୀକ୍ଷାଂଶକୁ ଗ୍ରହଣ କରିବା ଓ ବିଶେଷ ଭାବରେ ଅନୁବାଦ ପୁସ୍ତକଗୁଡ଼ିକୁ ଗ୍ରହଣ କରିବା, ତେବେ ତାଙ୍କର ସ୍ୱକୀୟ ଗଦ୍ୟଶୈଳୀ ସମ୍ପର୍କରେ ଏକ ସ୍ପଷ୍ଟ ଚିତ୍ର ଧାରଣା ଆଣିପାରିବା ।

ଶ୍ରୀଧର ଦାସଙ୍କର ସାରସ୍ୱତ ସୃଷ୍ଟି ସମ୍ଭାରକୁ ଲକ୍ଷ୍ୟ କଲେ ଜଣାଯାଏ ଯେ, ସେ ତାଙ୍କର ଆଦ୍ୟ ସୃଷ୍ଟିର ସ୍ୱାକ୍ଷର ନିଜର ଅଷ୍ଟମ ଶ୍ରେଣୀର ଅଧ୍ୟୟନ କାଳରୁ ହିଁ ଦେଇ

---

(୩୧) ସହକାର - ୩ୟ ଭାଗ / ୧୧ ସଂଖ୍ୟା

(୩୨) ସହକାର - ୧୧ଶ ଓ ୧୨ଶ ସଂଖ୍ୟା (ଫାଲ୍‌ଗୁନ-ଚୈତ୍ର) ୧୩୩୮

(୩୩) ମନପବନ (ଶିଶୁ ପତ୍ରିକା)

ସାରିଥିଲେ । ସେ ଯେତେବେଳେ ପୁରୀ ଜିଲ୍ଲା ସ୍କୁଲରେ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିଲେ, ସେତିକିବେଳେ ସେ ଭାରତ ସେବକ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କର ନିକଟବର୍ତ୍ତୀ ହୋଇପାରିଥିଲେ । ଶ୍ରୀଧରଙ୍କର ମେଧାବିତ୍ୱରେ ସେ ମଧ୍ୟ ଅନେକ ପରିମାଣରେ ଖୁସି ହେଉଥିଲେ । କେବଳ ଲକ୍ଷ୍ମୀନାରାୟଣବାବୁ ଶ୍ରୀଧରଙ୍କ ପ୍ରତିଭାରେ ଯେ, ପ୍ରୀତ ହେଉଥିଲେ ତାହା ନୁହେଁ, ଶିଶୁର ପ୍ରତିଭାକୁ ମଧ୍ୟ ଉପଯୁକ୍ତ ମାର୍ଗରେ ବିନିଯୋଗ କରିଥିଲେ । ସେତେବେଳେ ସମସାମୟିକ ପତ୍ରିକାମାନଙ୍କରେ ଦୁର୍ଭିକ୍ଷ ସମ୍ପର୍କରେ ଯେଉଁ ଖବରମାନ ପ୍ରକାଶ ପାଉଥିଲା, ତାହାକୁ ଶ୍ରୀଧର ଦାସ ଅନୁବାଦ କରୁଥିଲେ ଓ ଲକ୍ଷ୍ମୀନାରାୟଣବାବୁ ସେସବୁକୁ 'ହିତବାଦ' ଓ 'ସର୍ଚ୍ଚ ଲାଇଟ୍' ପ୍ରଭୃତି ପତ୍ରିକାମାନଙ୍କୁ ପଠାଇ ପ୍ରକାଶନର ବ୍ୟବସ୍ଥା କରୁଥିଲେ । ଶ୍ରୀଧର ଓଡ଼ିଆ ସମ୍ବାଦକୁ ଇଂରାଜୀ ଭାଷାରେ ଭାଷାନ୍ତର କରୁଥିଲେ, ଲକ୍ଷ୍ମୀନାରାୟଣ ସାହୁ ତାହାକୁ ସଂଶୋଧନ କରିବା ପୂର୍ବକ ଯେତେବେଳେ ଭିନ୍ନଭାଷୀ ପତ୍ରିକାରେ ପ୍ରକାଶ କରି ଶ୍ରୀଧରଙ୍କୁ ପଢ଼ିବାକୁ ଦେଉଥିଲେ,[୩୪] ଶ୍ରୀଧର ନିଶ୍ଚିତ ଭାବରେ ନିଜର କୃତିକୁ ମୁଦ୍ରିତ ରୂପରେ ଦେଖି ଉଲ୍ଲସିତ ହୋଇଉଠିଥିବେ ଓ ଆହୁରି ଲେଖନୀ ଚାଳନା କରିବା ପାଇଁ ମନ ମଧ୍ୟରେ ଦୁର୍ବାର କାମନା ପୋଷଣ କରିଥିବେ । ତେଣୁ ତାଙ୍କ ଆଦ୍ୟ ସାରସ୍ୱତ ସାଧନାର ମୂଳ ପ୍ରେରଣାର ଉତ୍ସ ଭାବରେ ଯଦି ଆମେ ଭାରତ ସେବକ (Servant of India Societyର ବିଶିଷ୍ଟ ସଭ୍ୟ) ଲକ୍ଷ୍ମୀନାରାୟଣ ସାହୁଙ୍କୁ ଗ୍ରହଣ କରିବା ତେବେ ତାହା ଆଦୌ ଭୁଲ ହେବନାହିଁ ।

ପରେ ପରେ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ 'ସହକାର' ନାମକ ଏକ ସମବାୟ ପତ୍ରିକା ପ୍ରକାଶ କରନ୍ତି । ସେତେବେଳେ ସେ ଜିଲ୍ଲା ସ୍କୁଲ ବୋର୍ଡିଂ ନିକଟବର୍ତ୍ତୀ ଏକ ବାଲି ପଡ଼ିଆରେ ତାଳପତ୍ର ଟାଟିର ଏକ କୋଠରୀ କରି ରହୁଥିଲେ । ତାଙ୍କ ସଂପାଦନାରେ ପ୍ରକାଶିତ ଏହି 'ସହକାର' ପତ୍ରିକାର ପ୍ରଥମ ବର୍ଷର ପ୍ରଥମ ସଂଖ୍ୟାରେ 'ଶ୍ରୀଧର ଦାସ' 'ସମବାୟ ବିଷୟକ ଏକ ସମ୍ବାଦ'କୁ ଅନୁବାଦ କରି ପ୍ରକାଶ କରିଥିଲେ । ପୁରୀର ଜଗନ୍ନାଥ ପ୍ରେସ୍‌ରେ ଏହି ପତ୍ରିକାଟି ଛପା ଯାଇଥିଲା ।[୩୫]

ଅବଶ୍ୟ ଶ୍ରୀଧର ଦାସ ହାଇସ୍କୁଲରେ ପାଠ ପଢୁଥିବା ବେଳେ କିଛି କବିତା ଲେଖିବା ପାଇଁ ପ୍ରୟାସ କରିଥିଲେ । ସେଗୁଡ଼ିକ ସମୟକ୍ରମେ ମୁଦ୍ରିତ ହୋଇଥିଲା ମଧ୍ୟ । ଶ୍ରୀଧର

---

(୩୪) ସୁଅ ମୁହଁର ପତର / ପୃ : ୧୧୫

(୩୫) ତତ୍ରୈବ / ପୃ : ୧୧୫

ଦାସଙ୍କର ସେ ସମ୍ପର୍କରେ ନିଜସ୍ୱ ବକ୍ତବ୍ୟଟିକୁ ଏଠାରେ ସ୍ମରଣ କରାଯାଇପାରେ । ସେ ନିଜର ଅତୀତକୁ ସ୍ମୃତିଚାରଣ କରି କୁହନ୍ତି, "ହାଇସ୍କୁଲରେ ପଢ଼ିବା ବେଳୁଁ ଜଣେ କବି ହେବାର ଆଶା ଥିଲା । ସରସ୍ୱତୀ ପୂଜା ସମୟରେ କେତେକ ଥର ଗୋଟିଏ ଲେଖାଏଁ କବିତା ରଚନା କରିଥିଲି । ସେଗୁଡ଼ିକ ଛପା ଯାଇଥିଲା । ଏପରିକି ଥରେ ସଂସ୍କୃତରେ ଗୋଟିଏ କବିତା ଲେଖି ତାହାକୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଦ୍ୱାରା ସଂଶୋଧନ କରାଇଥିଲି ଓ ତାହା ଛପା ଯାଇଥିଲା । 'ସହକାର'ରେ ଏବଂ ଅନ୍ୟ ମାସିକ ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା । Scott ଙ୍କର Lady of the Lake କାବ୍ୟକୁ ଓଡ଼ିଆରେ ଅନୁବାଦ କରି ସହକାରର ତତ୍କାଳୀନ ସମ୍ପାଦକ ଶ୍ରୀ ବାଳକୃଷ୍ଣ କରଙ୍କୁ ଦେଇଥିଲି । ସେ ଦୁଇଟି ସର୍ଗ ତାଙ୍କ ପତ୍ରିକାରେ ପ୍ରକାଶ କରିଥିଲେ । x x x x ବୌଦ୍ଧରେ ଥିବା ସମୟରେ ଅବସ୍ଥା ଚକ୍ରରେ ବାଧହୋଇ କେତେକ କବିତା ଲେଖିଥିଲି ।[୩୬] ସେଥିମଧ୍ୟରୁ 'ରେଣୁ' ନାମକ ଏକ କବିତା ମଧ୍ୟ 'ସହକାର'ର ୧୯୨୯ ମସିହା ୫ମ ସଂଖ୍ୟାରେ ପ୍ରକାଶିତ ।[୩୭] ତେବେ ଶେଷ ପର୍ଯ୍ୟନ୍ତ ସେ ନିଜକୁ ନିଜେ ମୂଲ୍ୟାୟନ କରିପାରିଛନ୍ତି । ଭବିଷ୍ୟତରେ ଯେ ତାଙ୍କ ହାତରେ ଆଉ ଭଲ କବିତା ଜନ୍ମ ନେଇପାରିବନି, ତାହା ସେ ଜାଣିପାରି କବିତାଠାରୁ ଦୂରେଇ ଆସିଛନ୍ତି । ଆଦରି ନେଇଛନ୍ତି ଗଦ୍ୟ ପରମ୍ପରାକୁ ।

ଗଦ୍ୟ କିନ୍ତୁ ଅତ୍ୟନ୍ତ ସଚେତନ ଭାବରେ ସେ ଲେଖିଛନ୍ତି । ସମୟର ଆବଶ୍ୟକତାକୁ ସେ ଯେପରି ଅନୁଭବ କରିଛନ୍ତି । ବିଶେଷକରି ନିଜର ଗୁରୁ ସ୍ଥାନୀୟ ମହାନ୍ ବ୍ୟକ୍ତି ତଥା ପ୍ରାଚୀ ସମିତିର ପ୍ରତିଷ୍ଠାତା ରାୟବାହାଦୂର ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ସେ ଏହି କ୍ଷେତ୍ରରେ ଅନୁସରଣ କରିଛନ୍ତି ।[୩୮] ଗଦ୍ୟ ରଚନା କାଳରେ ସୁଅ ମୁହଁର ପତରଟିଏ ଭାସିଗଲା ପରି ସେ କେବଳ ଭାସି ଯାଇଛନ୍ତି ଏକ ଆବେଗରେ । ଲେଖି ଚାଲିଛନ୍ତି ଗୋଟିଏ ପରେ ଗୋଟିଏ ଅନୁବାଦ ବା କରିଚାଲିଛନ୍ତି ଗୋଟିଏ ପରେ ଗୋଟିଏ ପାଠ୍ୟ ପୁସ୍ତକ ଭାବରେ ବିବେଚିତ ହୋଇଥିବା ପ୍ରାଚୀନ ସାହିତ୍ୟର ସମ୍ପାଦନା । ଏହି ସୂତ୍ରରେ ସେ ଶତାଧିକ, ପ୍ରାୟ ୧୩୦ ଖଣ୍ଡ (ଏଯାବତ୍ ମିଳିଥିବା ପୁସ୍ତକଗୁଡ଼ିକର ସଂଖ୍ୟା) ପୁସ୍ତକ ରଚନା କରିବାକୁ କ୍ଷମ ହୋଇଛନ୍ତି । ଓଡ଼ିଆ ବାଣୀ ଭଣ୍ଡାର ମଧ୍ୟ ଏହି କ୍ରମରେ ଅନେକାଂଶରେ ଋଦ୍ଧିମନ୍ତ ହୋଇଅଛି ।

---

(୩୬) କବି ହେବା ନୋହିଲା / ସୁଅ ମୁହଁର ପତର / ପୃ : ୨୯୯

(୩୭) ସହକାର / ୧୯୨୯ ମସିହା - ୫ମ ସଂଖ୍ୟା

(୩୮) ସୁଅ ମୁହଁର ପତର / ପୃ : ୩୦୩

ଶ୍ରୀଧର ଦାସଙ୍କ ଗଦ୍ୟଶୈଳୀକୁ ବିଶ୍ଳେଷଣ କଲାବେଳେ ଆମେ ଏହାକୁ ମୁଖ୍ୟତଃ ଚାରିଗୋଟି ପର୍ଯ୍ୟାୟରେ ବିଭାଜିତ କରି ଆଲୋଚନାର ପରିସରକୁ ବ୍ୟାପ୍ତ କରିପାରିବା । ଯେପରି :

(କ) ଶ୍ରୀଧର ଦାସଙ୍କ ପ୍ରବନ୍ଧ

(ଖ) ଶ୍ରୀଧର ଦାସଙ୍କ ସଂପାଦିତ ଗ୍ରନ୍ଥ

(ଗ) ଶ୍ରୀଧର ଦାସଙ୍କ ଅନୁବାଦ

(ଘ) ଶ୍ରୀଧର ଦାସଙ୍କ ଆତ୍ମଜୀବନୀ : ସୁଅ ମୁହଁର ପତର

## ଶ୍ରୀଧର ଦାସଙ୍କ ପ୍ରବନ୍ଧ

ଅଧ୍ୟାପକ ଶ୍ରୀଧର ଦାସଙ୍କ ପ୍ରବନ୍ଧର ସଂଖ୍ୟା ପ୍ରଚୁର ନୁହେଁ; ସ୍ୱଳ୍ପ । ତଥାପି ତାହାକୁ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ, ସେଥିରେ ସେ ଏକାନ୍ତ ଭାବରେ ଅତ୍ୟନ୍ତ ଆନ୍ତରିକତାର ସହ ମୌଳିକତ୍ୱକୁ ଉଲ୍ଲେଖ କରିଛନ୍ତି । 'ବଉଦର ଭାଷା'ରେ ସେ ବଉଦ ଷ୍ଟେଟ୍‌ରେ ପ୍ରଚଳିତ ଥିବା ବିଶେଷ ଶବ୍ଦ ଭଣ୍ଡାରକୁ ପ୍ରଥମେ ଚୟନ କରିଛନ୍ତି । ତାହାର କ୍ରିୟା ପଦର ବୈଶିଷ୍ଟ୍ୟକୁ ଖୋଜିଛନ୍ତି କେବଳ ଅର୍ଥଗତ ପାର୍ଥକ୍ୟକୁ ସେ ଦେଖିନାହାନ୍ତି; ବରଂ ଉଚ୍ଚାରଣଗତ ପାର୍ଥକ୍ୟକୁ ସେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ତେଣୁ ପ୍ରବନ୍ଧଟି ମୁଖ୍ୟତଃ ଭାଷାତାତ୍ତ୍ୱିକ ପ୍ରବନ୍ଧ ଥିଲା । ବଉଦରେ ଚାକିରି କରି ସେହି ଅଞ୍ଚଳର ଭାଷାର ବୈଶିଷ୍ଟ୍ୟତାକୁ ଦେଖାଇବା ପ୍ରବନ୍ଧର ଉଦ୍ଦେଶ୍ୟ ଥିଲା । ଗୋଟିଏ ଉଦାହରଣ ଏଠାରେ ଉପସ୍ଥାପିତ କରାଯାଇପାରେ । ଯେପରି : "ଏଠାରେ ବ୍ୟବହୃତ ବାକ୍ୟରେ ଟିକିଏ ବିଶେଷତ୍ୱ ଦେଖାଯାଏ, ଲୋକ ସାଧାରଣ ଏପରିକି ଶିକ୍ଷିତ ଲୋକ ମଧ୍ୟ ନିଷେଧାର୍ଥକ ବାକ୍ୟରେ ପ୍ରଧାନ କ୍ରିୟା ପରେ 'ନାହିଁ' ଶବ୍ଦ ବ୍ୟବହାର ନକରି ପୂର୍ବରୁ ବ୍ୟବହାର କରନ୍ତି । ଯଥା— ସେ ଭାତ ନାହିଁ ଖାଇ । ମୁଁ ବାରକାନେ (ଘରକୁ) ନାଇ ଯାଇ ଇତ୍ୟାଦି । ହିନ୍ଦୀ ଭାଷାର ପ୍ରଭାବରେ ଏ ପ୍ରକାର ପରିବର୍ତ୍ତନ ଘଟିଅଛି ।[୩୯] ପୁଣି ମଧ୍ୟ ସେ ଆଉ ଏକ ସ୍ଥାନରେ ଲେଖିଛନ୍ତି, "ଅନୁଜ୍ଞାସୂଚକ ଓ ପ୍ରଶ୍ନବାଚକ ବାକ୍ୟରେ 'ବୋ'ର ପ୍ରଚଳନ ବେଶୀ । କେବଳ ଯେ ବଉଦର ଲୋକେ 'ବୋ' ବ୍ୟବହାର କରିଥାନ୍ତି, ତାହା ନୁହେଁ; ଗଡ଼ଜାତର ସୋନପୁର, ଆଠମଲ୍ଲିକରେ ଏବଂ ଅନୁଗୁଳ ଜିଲ୍ଲାରେ ମଧ୍ୟ ଏହାର ବ୍ୟବହାର ଦେଖାଯାଏ । ବ୍ୟବହାର ଭଦ୍ର ସମାଜରେ ବିରଳ । କନ୍ଧ ଭାଷାରେ ଏହି 'ବୋ'ର ବହୁଳ ପ୍ରଚଳନ

(୩୯) ବଉଦର ଭାଷା / ସହକାର - ୧୧ଶ ଓ ୧୨ଶ ସଂଖ୍ୟା / ୧୯୩୧ / ପୃ : ୫୨୫

ଦେଖାଯାଏ । ବୋଧହୁଏ ଏହା କନ୍ଧ ଭାଷାରୁ ଆସି କ୍ରମେ କ୍ରମେ ଏଠା କଥିତ ଓଡ଼ିଆ ଭାଷାରେ ପ୍ରବେଶ କରିଅଛି ।"[୪୦] ଏହିପରି ଦେଖିବାକୁ ଗଲେ ପ୍ରବନ୍ଧରେ ସେ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣର ସବୁ ଦିଗରୁ ବଉଦର ଭାଷାକୁ ବିଶ୍ଳେଷଣ କରିଛନ୍ତି । ଏଥିରୁ ଯେ ସେ ଜାଣି ଜଣାଇବାର ଦୁର୍ବାର କାମନାକୁ ରଚନା କାଳରେ ବଳବତ୍ତର ରଖିଥିଲେ ଏଥିରେ ଦ୍ୱିମତ ନ ଥାଇପାରେ ।

ଅନ୍ୟପକ୍ଷରେ ଆମେ ତାଙ୍କର ଆଉ ଏକ ପ୍ରବନ୍ଧକୁ ଗ୍ରହଣ କରିପାରିବା । ତାହା ହେଉଛି 'ନିତ୍‌ସେ ଓ ସୃଜନ ବିଦ୍ୟା', ଯାହାକି 'ସହକାର' ୧୧ଶ ଭାଗ-୩ୟ ସଂଖ୍ୟାରେ ପ୍ରକାଶ ପାଇଥିଲା । ପାଶ୍ଚାତ୍ୟ ଦାର୍ଶନିକ ନିତ୍‌ସେଙ୍କ ଦର୍ଶନରେ ସେ ପର୍ଯ୍ୟାପ୍ତ ପରିମାଣରେ ପ୍ରଭାବିତ ହୋଇଥିବା ପରି ମନେହୁଏ । କାରଣ କର୍ମରେ ବିଶ୍ୱାସ ରଖୁଥିବା ନିତ୍‌ସେଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ସେ ଲେଖିଛନ୍ତି, "କଷ୍ଟ ନ କଲେ କୃଷ୍ଣ ପାଇବା ଅସମ୍ଭବ । ମନୁଷ୍ୟ ଜାତିର ଉନ୍ନତି ବିଧାନ କରିବାକୁ ହେଲେ ଚେଷ୍ଟା କରିବା ଦରକାର । x x କୌଣସି ଜାତିର ସୌନ୍ଦର୍ଯ୍ୟ, ମେଧା, ବିଦ୍ୟା ଓ ବୁଦ୍ଧି ଚେଷ୍ଟା ବିନା ସାଧିତ ହୋଇନପାରେ । ଜଣେ ଲୋକ ଯତ୍ନ ଓ ଅଧ୍ୟବସାୟ ଦ୍ୱାରା ନିଜର ବୁଦ୍ଧି ବୃତ୍ତି ଦ୍ୱାରା ନିଜକୁ ଉନ୍ନତ କରିପାରେ । ସେହିପରି ଯତ୍ନ ଓ ଅଧ୍ୟବସାୟ ଦ୍ୱାରା ଅନେକ ପୁରୁଷ (generation) ର ଫଳ ସ୍ୱରୂପ ଆମ୍ଭେମାନେ ଗୋଟିଏ ଉଚ୍ଚଶ୍ରେଣୀର ମନୁଷ୍ୟ ପାଇପାରିବା ।"[୪୧] ପ୍ରବନ୍ଧ ରଚନା କାଳରେ କେବଳ ନୁହେଁ, ସାଧାରଣତଃ ସାମାଜିକ ଜୀବନରେ ମଧ୍ୟ ସେ ଖୁବ୍ ବେଶୀ ବାସ୍ତବବାଦୀ ଓ ନିତ୍‌ସେଙ୍କ ଦର୍ଶନରେ ଉଦ୍‌ବୁଦ୍ଧ ହୋଇଥିବା ଏକ ସୁଦୃଢ଼ ବ୍ୟକ୍ତିତ୍ୱ । ସେ କଷ୍ଟ କରିଛନ୍ତି ଆଗାମୀ ପିଢ଼ି ପାଇଁ ଓ କଷ୍ଟ ସ୍ୱୀକାର କରିଛନ୍ତି ମଧ୍ୟ ନିଜକୁ ଉନ୍ନତ ମାର୍ଗରେ ନେଇଯିବା ପାଇଁ । ଛାତ୍ରମାନଙ୍କୁ ମଧ୍ୟ ପ୍ରତିଟି ମୁହୂର୍ତ୍ତରେ ପ୍ରେରଣା ଯୋଗାଇ ଦେଇଛନ୍ତି କଷ୍ଟ କରି ଜୀବନକୁ ସଂଗ୍ରାମଶୀଳ କରିବାକୁ ।

ତେଣୁ ପ୍ରବନ୍ଧରୁ ଅନ୍ତତଃ ଏତିକି ବୁଝିହୁଏ ଯେ, ଶ୍ରୀଧର ଦାସ ପ୍ରବନ୍ଧ ରଚନା କାଳରେ ନିଜର ପୂର୍ଣ୍ଣ ମୌଳିକତାକୁ ପ୍ରକାଶ କରିବାକୁ ଶତତ ଚେଷ୍ଟିତ ହୋଇଛନ୍ତି । ଏ ଯେଉଁଠାରେ ପ୍ରବନ୍ଧ ବି ଦର୍ଶନ ଭିତ୍ତିକ ହୋଇଉଠିଛି, ସେଠାରେ ସେ ସେହି ଦର୍ଶନକୁ ପ୍ରଥମେ ପଢ଼ି ଓ ସେଥିରେ ଦୀକ୍ଷିତ ହୋଇ, ପରେ ସେ ସେହି ସିଦ୍ଧାନ୍ତକୁ ଯାହା ରୂପାୟନ କରୁଛନ୍ତି ସେହି ପ୍ରବନ୍ଧରେ ।

---

(୪୦) ତତ୍ରୈବ / ପୃ : ୫୨୫

(୪୧) ଏକ ସ୍ମରଣୀୟ ବ୍ୟକ୍ତିତ୍ୱ - ଅଧ୍ୟାପକ ଶ୍ରୀଧର ଦାସ / ପଠାଣି ପଟ୍ଟନାୟକ - ସହକାର / ସ୍ୱନକ୍ଷତ୍ର ସଂଖ୍ୟା / ଜାନୁୟାରୀ - ୨୦୦୫ / ପୃ : ୪୬

## ଶ୍ରୀଧର ଦାସଙ୍କ ସମ୍ପାଦିତ ଗ୍ରନ୍ଥ

ଅଧ୍ୟାପକ ଶ୍ରୀଧର ଦାସଙ୍କ ଦ୍ୱାରା ସମ୍ପାଦିତ ହୋଇଥିବା ଗ୍ରନ୍ଥଗୁଡ଼ିକ ବାସ୍ତବରେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ବିଶେଷ ସାରସ୍ୱତ ସୃଷ୍ଟି । ତେବେ ଯେଉଁ କେତେକ ଗ୍ରନ୍ଥ ମହାବିଦ୍ୟାଳୟ ସ୍ତରରେ ପାଠ୍ୟ ହେବା ଲାଗି ମଞ୍ଜୁର ପ୍ରାପ୍ତି ହୋଇଛି, ସେହିସବୁ ଗ୍ରନ୍ଥକୁ ସେ ମାତ୍ର ସମ୍ପାଦନା କରିଛନ୍ତି । ସେଗୁଡ଼ିକ ହେଉଛି; ପୂର୍ବରୁ କୁହାଯାଇଥିବା 'ଚିଲିକା', 'ଦରବାର', 'ଚନ୍ଦ୍ରଭାଗା', 'ଉଷାଭିଳାଷ' ବା 'ରସ କଲ୍ଲୋଳ' ଇତ୍ୟାଦି । ଏହି ସମ୍ପାଦନା କାଳରେ ସେ ମୂଳ ଗ୍ରନ୍ଥ ବା ପାଠ୍ୟାଂଶ ସହିତ ଗୋଟିଏ ମୁଖବନ୍ଧ ଲେଖିଛନ୍ତି । ଯେମିତି ଲେଖିଛନ୍ତି ରାୟବାହାଦୂର ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଲାବଣ୍ୟବତୀ ବା ବିଦଗ୍ଧ ଚିନ୍ତାମଣିର ସମ୍ପାଦନା କାଳରେ । ଏହି ମୁଖବନ୍ଧ ଆଜିକାଲିର ଯେକୌଣସି ପୁସ୍ତକର ମୁଖବନ୍ଧ ପରି କିନ୍ତୁ ନୁହେଁ; ବାସ୍ତବରେ ଏହାହିଁ ହେଉଛି ଲେଖକର ଏକ ନିରୋଳା ସାରସ୍ୱତ ପ୍ରବନ୍ଧ ମାତ୍ର । ଏହି ସୂତ୍ରରେ ଆମେ ଶ୍ରୀଧର ଦାସଙ୍କ ସମ୍ପାଦିତ ଗ୍ରନ୍ଥର ମୁଖବନ୍ଧକୁ ଆଲୋଚନା କଲେ ତାଙ୍କର ଗଦ୍ୟଶୈଳୀ ବେଶ୍ ସ୍ପଷ୍ଟ ହୋଇଉଠିବ ।

ସମ୍ପାଦିତ ଗ୍ରନ୍ଥରୁ ଶ୍ରୀଧର ଦାସଙ୍କ ଗଦ୍ୟଶୈଳୀ ନିର୍ଦ୍ଧାରଣ କାଳରେ ଆମେ ଏଠାରେ ଉଦାହରଣ ପାଇଁ ତାଙ୍କର ସେହି କୃତିଗୁଡ଼ିକ ମଧ୍ୟରୁ 'ରସକଲ୍ଲୋଳ'କୁ ଏକ ମାନଦଣ୍ଡ ଭାବରେ ଗ୍ରହଣ କରିଛୁ । ସାହିତ୍ୟ ରସାନ୍ୱେଷୀ ପାଠକ ତାଙ୍କର ଅନ୍ୟକୌଣସି ଏତାଦୃଶ କୃତିକୁ ନେଇ ମଧ୍ୟ ବିଶ୍ଳେଷଣ କରିପାରନ୍ତି । ତେବେ ନିର୍ଯ୍ୟାସ ଯେ ଏକ ଓ ଅଭିନ୍ନ ରହିବ, ଏଥିରେ ସନ୍ଦେହ ନାହିଁ ।

'ରସ କଲ୍ଲୋଳ' ଗ୍ରନ୍ଥଟିର ପ୍ରଥମ, ଦ୍ୱିତୀୟ, ନବମ, ତ୍ରୟତ୍ରିଂଶତ୍ ଓ ଚତୁଃତ୍ରିଂଶ ଛାନ୍ଦ ୧୯୬୭ ଓ ୧୯୬୮ ମସିହା ବି.ଏ. ପରୀକ୍ଷା ନିମନ୍ତେ ଓ ପ୍ରଥମ, ଦ୍ୱିତୀୟ, ବିଂଶ, ପଞ୍ଚବିଂଶ, ଷଡ଼ବିଂଶ ଓ ଦ୍ୱାତ୍ରିଂଶ ଛାନ୍ଦ ୧୯୬୯ ମସିହାରେ ବି.ଏ. ପରୀକ୍ଷା ନିମନ୍ତେ ପାଠ୍ୟ ପ୍ରସଙ୍ଗ ଭାବରେ ବିବେଚିତ ହେବା ପରେ ଶ୍ରୀଧର ଦାସ ଏହି ଗ୍ରନ୍ଥଟିର ସମ୍ପାଦନା କାର୍ଯ୍ୟ ହାତକୁ ନେଇଛନ୍ତି । ସମ୍ପାଦିତ ଗ୍ରନ୍ଥଟିକୁ ପ୍ରକାଶ କରିଛନ୍ତି କଟକର ବିଶିଷ୍ଟ ପ୍ରକାଶକ ଗ୍ରନ୍ଥମନ୍ଦିର, କଟକ-୨ । ମୁଖବନ୍ଧଟିରେ ସେ କେତୋଟି ବିଶେଷ ପର୍ଯ୍ୟାୟକୁ ସ୍ଥାନ ଦେଇଛନ୍ତି ମାତ୍ର । ସେଗୁଡ଼ିକ ହେଲା– (୧) ରସ କଲ୍ଲୋଳର ରଚୟିତା ଦୀନକୃଷ୍ଣ, (୨) ଦୀନକୃଷ୍ଣଙ୍କ କାଳ, (୩) ଦୀନକୃଷ୍ଣଙ୍କ ଜୀବନ, (୪) କବିଙ୍କ ଧର୍ମମତ, (୫) କବିଙ୍କ ପାଣ୍ଡିତ୍ୟ, (୬) ରସ କଲ୍ଲୋଳରେ କ୍ଲିଷ୍ଟତା, (୭) ରସ କଲ୍ଲୋଳରେ

ଅଳଙ୍କାର, (୮) ରସ କଲ୍ଲୋଳର ସୂକ୍ତି, (୯) ରସ କଲ୍ଲୋଳରେ ଋତୁ ଓ ପ୍ରକୃତି ବର୍ଣ୍ଣନା, (୧୦) ଦୀନକୃଷ୍ଣଙ୍କର କାବ୍ୟାଦର୍ଶ, (୧୧) ରସ କଲ୍ଲୋଳର ରଚନା ଶୈଳୀ ଓ (୧୨) ରସ କଲ୍ଲୋଳର ବିଷୟ ସୂଚୀ । ଏହି ବାରଗୋଟି ଅଧ୍ୟାୟରେ ସେ କବି ଦୀନକୃଷ୍ଣଙ୍କୁ ଯେପରି ବୁଝିଛନ୍ତି, ତାକୁ ଅତ୍ୟନ୍ତ ସରଳ ଓ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ରଚନା କାଳରେ କିନ୍ତୁ ଲକ୍ଷ୍ୟ ରହିଛି ଛାତ୍ର ସମାଜ ଠାରେ, ତେଣୁ ସେ ବିଭିନ୍ନ ଦୃଷ୍ଟାନ୍ତର ଅବତାରଣା କରିଛନ୍ତି ସତ, ହେଲେ ନିଜ ପାଣ୍ଡିତ୍ୟ ବଳରେ ନିଜର ମୌଳିକ ସିଦ୍ଧାନ୍ତକୁ କେବେ ଉପସ୍ଥାପିତ କରିନାହାନ୍ତି । କାରଣ ସେ ଜାଣନ୍ତି ସମାଲୋଚନାତ୍ମକ ପ୍ରବନ୍ଧରେ ନିଜର ନିଜସ୍ୱ ବକ୍ତବ୍ୟକୁ ସିନା ଉପସ୍ଥାପିତ କରିହେବ, ହେଲେ ଛାତ୍ରମାନଙ୍କ ପାଇଁ ସମ୍ପାଦିତ ପୁସ୍ତକରେ ତାହାର ସ୍ଥାନ ଏକାନ୍ତ ଭାବରେ ନଗଣ୍ୟ । ଛାତ୍ରମାନଙ୍କୁ ଖୋରାକ୍ ଯୋଗାଇ ଦିଆଗଲେ ସେମାନେ ହୁଏତ ଆଗାମୀ ସମୟରେ ସତ୍ୟାନୁସନ୍ଧୀ ହୋଇ ଓ ଗବେଷଣାର ଶାଶ୍ୱତ ମନନକୁ ନେଇ ଶୁଦ୍ଧ ସମାଲୋଚନା କରିବେ ବା ସେହି ଦିଗରେ ମନୋନିବେଶ କରିବେ । ଏଣୁ ଶ୍ରୀଧର ଦାସ ରସ କଲ୍ଲୋଳ ସମ୍ପାଦନା କାଳରେ ପ୍ରଥମରୁ ଏକ ମୌଳିକ ବିଶ୍ଳେଷଣକୁ ସ୍ଥାନ ଦେଇଛନ୍ତି । 'ରସ କଲ୍ଲୋଳର ରଚୟିତା ଦୀନକୃଷ୍ଣ' ପ୍ରବନ୍ଧାଂଶରେ ସେ ପ୍ରଥମରୁ ଉଲ୍ଲେଖ କରିଛନ୍ତି ଯେ—"ଓଡ଼ିଆ ସାହିତ୍ୟର ଇତିହାସରେ ଅନେକଗୁଡ଼ିଏ ଗ୍ରନ୍ଥର ଲେଖକ ନିଜକୁ ଦୀନକୃଷ୍ଣ ଦାସ ନାମରେ ପରିଚିତ କରାଇଅଛନ୍ତି । 'ମାଘ ମାହାତ୍ମ୍ୟ' ଓ 'ଯମ ପୁରାଣ' ଗ୍ରନ୍ଥ ଦ୍ୱୟର ଲେଖକ ଦୀନକୃଷ୍ଣ ନିଜକୁ ନୃସିଂହ ଦାସଙ୍କ ପୁତ୍ର ବୋଲି କହିଅଛନ୍ତି । 'ରସ ବିନୋଦ', 'ନାମରତ୍ନ ଗୀତା', 'ଜଗମୋହନ ଛାନ୍ଦ' ପ୍ରଭୃତିର ରଚୟିତା ଦୀନକୃଷ୍ଣ ଦାସ ନିଜକୁ ମଧୁସୂଦନଙ୍କ ଜ୍ୟେଷ୍ଠପୁତ୍ର ବୋଲି କହିଅଛନ୍ତି । ରସ କଲ୍ଲୋଳର କବି ନିଜକୁ ଦୀନକୃଷ୍ଣ ଦାସ କହିଥିଲେ ହେଁ କୌଣସି ବିଶେଷ ଆତ୍ମ ପରିଚୟ ଦେଇନାହାନ୍ତି । ତେଣୁ ଏହି ତିନିଜଣ ଦୀନକୃଷ୍ଣ ବିଭିନ୍ନ ବ୍ୟକ୍ତି ବୋଲି କେହି କେହି କହନ୍ତି । ଅବଶ୍ୟ 'ଯମ ପୁରାଣ'ର ରଚୟିତା ଦୀନକୃଷ୍ଣ ଦାସଙ୍କ ସ୍ୱାତନ୍ତ୍ର୍ୟ ବିଷୟରେ କୌଣସି ସନ୍ଦେହ ନାହିଁ । କିନ୍ତୁ 'ରସ ବିନୋଦ' ଓ 'ରସ କଲ୍ଲୋଳ'ର ରଚୟିତା ଦୀନକୃଷ୍ଣ ଦ୍ୱୟ ବିଭିନ୍ନ କି ଅଭିନ୍ନ ଏ ବିଷୟରେ ବହୁକାଳ ଧରି ବାଦାନୁବାଦ ଚାଲିଅଛି । ହଣ୍ଟର ସାହେବ ତାଙ୍କ ଓଡ଼ିଆ ଇତିହାସର ପରିଶିଷ୍ଟରେ ଉତ୍କଳୀୟ କବି ଓ ସେମାନଙ୍କର କାବ୍ୟର ଯେଉଁ ତାଲିକା ଦେଇଅଛନ୍ତି ସେଥିରେ ସେ ରସ-ବିନୋଦକାର ଓ ରସ-କଲ୍ଲୋଳକାରଙ୍କୁ ବିଭିନ୍ନ ବ୍ୟକ୍ତି ରୂପେ ଗ୍ରହଣ କରିଅଛନ୍ତି । ୰ ତାରିଣୀ ଚରଣ ରଥ ତଦ୍‌କୃତ ଓଡ଼ିଆ ସାହିତ୍ୟର ଇତିହାସରେ ସେହି ମତକୁ ଉଦ୍ଧାର ମାତ୍ର କରିଅଛନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭ

ମହାନ୍ତି ପ୍ରାଚୀ ସମିତି ପକ୍ଷରୁ ଜଗମୋହନ ଛାନ୍ଦ ଓ ରସ କଲ୍ଲୋଳ ପ୍ରକାଶ କରିଅଛନ୍ତି । ସେଥିରେ ସେ ରସ କଲ୍ଲୋଳ ଓ ରସ ବିନୋଦ ଉଭୟ ଗ୍ରନ୍ଥର କବିଙ୍କୁ ଏକ ଓ ଅଭିନ୍ନ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଅଛନ୍ତି । ପଣ୍ଡିତ ବିନାୟକ ମିଶ୍ର ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ ଏ ଦୁହିଁଙ୍କୁ ପୃଥକ୍ ବ୍ୟକ୍ତି ବୋଲି ଗ୍ରହଣ କରିଅଛନ୍ତି । ଦୁଃଖର ବିଷୟ, ଏତେ ଆଲୋଚନା ସତ୍ତ୍ୱେ ଏଇ ପ୍ରଶ୍ନର କୌଣସି ସର୍ବସମ୍ମତ ସମାଧାନ ହୋଇପାରିନାହିଁ ।[୪୨] କହିବାର କଥା ହେଉଛି ଅଧ୍ୟାପକ ଦାସ ଓଡ଼ିଆ ପ୍ରେମୀ ଛାତ୍ର-ଛାତ୍ରୀଙ୍କୁ ଦୀନକୃଷ୍ଣ ଦାସଙ୍କ ସମ୍ବନ୍ଧରେ ସେ ପର୍ଯ୍ୟନ୍ତ ଯେଉଁ ବାଦାନୁବାଦ ରହିଆସିଛି ତାହାକୁ ପ୍ରଥମେ ଜଣାଇଛନ୍ତି । ସେହି ବାଦାନୁବାଦର ଭିତ୍ତିଭୂମି କ'ଣ ଥିଲା, ତାହାକୁ ମଧ୍ୟ ଉପସ୍ଥାପିତ କରିଛନ୍ତି । କିନ୍ତୁ ସମାଧାନ କାଳରେ ନିଜସ୍ୱ ମତକୁ ଉପସ୍ଥାପନ କରିନାହାନ୍ତି । ଏପରି କହିବାର କାରଣ ହେଉଛି ଯେ,—ସେ ସମାଲୋଚନା ଗ୍ରନ୍ଥ ଲେଖୁନାହାନ୍ତି ଏବଂ ଶ୍ରେଣୀ କକ୍ଷରେ ଛାତ୍ରଙ୍କୁ ପଢ଼ାଇଲା ପରି ଗ୍ରନ୍ଥକୁ ଲେଖୁଛନ୍ତି ବୋଲି ମାନସିକ ସ୍ତରରେ ସ୍ଥିର କରିନେଇଛନ୍ତି । ସମାଲୋଚନା ଗ୍ରନ୍ଥରେ ନିଜର ବ୍ୟକ୍ତିଗତ ସିଦ୍ଧାନ୍ତକୁ ଉପସ୍ଥାପିତ କରିବାର ଯଥେଷ୍ଟ ପରିସର ରହିଛି, କାରଣ ସେ ସିଦ୍ଧାନ୍ତ ଗୃହୀତ ହୋଇପାରେ ବା ନହୋଇପାରେ । ପରବର୍ତ୍ତୀ କାଳରେ ସେହି ସିଦ୍ଧାନ୍ତ ସମାଲୋଚନାର କଷଟି ପଥରରେ ପରୀକ୍ଷିତ ମଧ୍ୟ ହୋଇପାରେ । ତେଣୁ ଛାତ୍ର-ଛାତ୍ରୀ ଅଧ୍ୟୟନ କାଳରେ ସେହି ବିଭ୍ରାନ୍ତି ସ୍ତରକୁ ଯିବେ କାହିଁକି ? ସେମାନେ ସମାଲୋଚକ ସ୍ତରକୁ ଆସିଗଲେ ସେମାନେ ମଧ୍ୟ ନିଜେ ସେ ଦିଗରେ କାର୍ଯ୍ୟ କରିପାରନ୍ତି । ତେଣୁ ଏଠାରେ ଅତ୍ୟନ୍ତ ସ୍ପଷ୍ଟ ହୋଇଉଠୁଛି ଯେ,—ଅଧ୍ୟାପକ ଶ୍ରୀଧର ଦାସ ଯେତେବେଳେ କୌଣସି ପ୍ରବନ୍ଧ ଲେଖୁଛନ୍ତି, ସେତେବେଳେ ତା'ର ପାଠକ କିଏ ବା ସେ କାହାପାଇଁ ଲେଖୁଛନ୍ତି ସେଥିପ୍ରତି ଅତ୍ୟନ୍ତ ସଚେତନ ରହିଛନ୍ତି । 'ବଉଦର ଭାଷା' ପ୍ରବନ୍ଧଟି ଲେଖିଲା ବେଳେ ସେ ଯେପରି ଭାଷାର ଅବକ୍ଷୟ ହେଉଛି ବା ତାକୁ କିପରି ମାର୍ଗରେ ସୁରକ୍ଷିତ କରାଯାଇପାରିବ, ତାହାର ଏକ ସ୍ପଷ୍ଟ ସୂଚନା ଦେଇଛନ୍ତି ସାଧାରଣ ପାଠକବର୍ଗଙ୍କୁ ବା ଭବିଷ୍ୟତରେ ଭାଷାବିତ୍‌ମାନଙ୍କୁ; ସେ ଧାରା କିନ୍ତୁ ଏଠି ନାହିଁ । ପ୍ରକାରାନ୍ତରେ ଏଠି ରହିଛି ସରଳ-ସାବଲୀଳ ରୀତିରେ ଐତିହାସିକ ତଥ୍ୟର ପ୍ରାଞ୍ଜଳ ବର୍ଣ୍ଣନା ।

ପୁନଶ୍ଚ ଅଧ୍ୟାପକ ଶ୍ରୀଧର ଦାସ ଯେତବେଳେ ଦୀନକୃଷ୍ଣ ଦାସଙ୍କର କାଳ ନିରୂପଣ କରିଛନ୍ତି, ସେତେବେଳେ ସେ ପୂର୍ଣ୍ଣମାତ୍ରାରେ ନିଜର ମୌଳିକତାକୁ ଉଲ୍ଲେଖ କରିଛନ୍ତି ।

(୪୨) ରସ କଲ୍ଲୋଳର ମୁଖବନ୍ଧ / ସଂ : ଅଧ୍ୟାପକ ଶ୍ରୀଧର ଦାସ
ପ୍ରକାଶକ : ଗ୍ରନ୍ଥ ମନ୍ଦିର, କଟକ - ୨ / ପ୍ରକାଶ କାଳ - ୧୯୬୭ / ପୃ : ୧-୨

କାରଣ ଏହି ପର୍ଯ୍ୟାୟଟିର ଐତିହାସିକତା ଛାତ୍ରମାନଙ୍କର ଏକାନ୍ତ କାମ୍ୟ । ସେ ନିଜର ଯୁକ୍ତିକୁ ଉପସ୍ଥାପନ କରିବା ପାଇଁ ଦାର୍ଢ଼୍ୟତା ଭକ୍ତି, ନାରତ୍ନ ଗୀତା (ଦୀନକୃଷ୍ଣ ଦାସ), ରସ ଲେଖା (ଉପେନ୍ଦ୍ର ଭଞ୍ଜ)କୁ ଗ୍ରହଣ କରିଅଛନ୍ତି ଏବଂ ବିଭିନ୍ନ ଯୁକ୍ତି ଦେଖାଇ ଶେଷରେ କହିଛନ୍ତି ଯେ, "ଏଇସବୁ ଯୁକ୍ତିରୁ ଜଣାଯିବ ଯେ, ଦୀନକୃଷ୍ଣ ଦାସ, ଦିବ୍ୟସିଂହ ଦେବ ତଥା ଉପେନ୍ଦ୍ର ଭଞ୍ଜଙ୍କର ସମକାଳୀନ ଥିଲେ । ସେ ସପ୍ତଦଶ ଶତାବ୍ଦୀର ଶେଷ ଭାଗ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ବିଦ୍ୟମାନ ଥିଲେ ।"[୪୩] କିନ୍ତୁ ସବୁଠାରୁ ବଡ଼ କଥା ହେଉଛି, ଉପେନ୍ଦ୍ର ଭଞ୍ଜଙ୍କର ଏକ ପ୍ରସିଦ୍ଧ ଉକ୍ତି, ଯାହାକୁ କି ଅନେକ ବଡ଼ ବଡ଼ ଅଧ୍ୟାପକ ମଧ୍ୟ ଏବେ ବି ଭାଷଣ ଦେବାବେଳେ ଉଦ୍ଧାର କରିଥାନ୍ତି, ତାହା ଯେ ବାସ୍ତବରେ ଉପେନ୍ଦ୍ର ଭଞ୍ଜଙ୍କର ହୋଇନପାରେ ବୋଲି ସେ ନିଜର ଏକ ସଂକ୍ଷିପ୍ତ ମତଟିଏ ଦେଇଛନ୍ତି । ଉକ୍ତିଟି ହେଉଛି—

"କହେ ଉପଇନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
କବି ପଣେ ରବି ତଳେ ନ ଗଣେ ମୁଁ କାହାକୁ ।।
ଜୟଦେବ ଦୀନକୃଷ୍ଣ ପାଦେ ମୋ ଶରଣ
ଆନ କବିଙ୍କର ଶିରେ ମୋ ବାମ ଚରଣ ।।"

ଅଜସ୍ର ଶବ୍ଦ ସମୁଦ୍ରକୁ ପାର କରିଥିବା ମହାନ୍ କବି ଉପେନ୍ଦ୍ର ଭଞ୍ଜ କେବେ ଗର୍ବିତ ହୋଇ ଏପରି ସଂଯମତାହୀନ ବାକ୍ୟ ନିଜ କବିତାରେ ଉଲ୍ଲେଖ କରିବେ, ଏହା କାହିଁକି ସତରେ ବିଶ୍ୱାସ ହୁଏନାହିଁ । କାରଣ ଯେଉଁମାନେ ଯେତିକି ଉପରକୁ ଉଠିଛନ୍ତି, ସେମାନଙ୍କର ହୃଦୟ ଓ ଚିନ୍ତାଧାରା ସେତିକି ପରିମାଣରେ ବ୍ୟାପକ ଓ ବିସ୍ତୃତ । ତେଣୁ ତାଙ୍କ ନାମରେ କେହି ଜଣେ ଦୁଷ୍ଟ ପ୍ରକୃତିର ଲୋକ ତାଙ୍କୁ ଭଲପାଇ ହେଉ ବା ତାଙ୍କୁ ନ୍ୟୁନ କରିବାକୁ ହେଉ, ତାଙ୍କ ପରବର୍ତ୍ତୀ କାଳରେ ଏପରି ଏକ ପଦଟିଏ ଲେଖି ତାଙ୍କ ନାମରେ ଚଳେଇ ନେଇଛନ୍ତି । ଯେପରି ଏବେ 'ବଜାର ବୋଲି' ପାଇଁ ଗବେଷକମାନେ କହୁଛନ୍ତି ଯେ, ଏପରି ଭାଣ୍ଡ କବିତାକୁ କବି ସମ୍ରାଟ୍ ଉପେନ୍ଦ୍ର କେବେ ଲେଖିନଥିବେ, ବରଂ ତାକୁ କେହି ଜଣେ ଦୁଷ୍ଟ ଲେଖି ତାଙ୍କ ନାମରେ ଭଣିତା କରିଦେଇଥିବ । ତେବେ ଉପରୋକ୍ତ କବିତାଂଶଟିକୁ ଉପେନ୍ଦ୍ରଙ୍କର ନୁହେଁ ବୋଲି ଅତି ସଂକ୍ଷିପ୍ତରେ କହି ଅଧ୍ୟାପକ ଶ୍ରୀଧର

(୪୩) ରସ କଲ୍ଲୋଳର ମୁଖବନ୍ଧ / ସଂ : ଅଧ୍ୟାପକ ଶ୍ରୀଧର ଦାସ / ପ୍ରକାଶକ : ଗ୍ରନ୍ଥ ମନ୍ଦିର, କଟକ - ୨ / ପ୍ରଥମ ପ୍ରକାଶ - ୧୯୬୭ / ପୃ : ୮

ଦାସ ନିଜର ମୂଲ୍ୟାୟନ ଦୃଷ୍ଟିକୋଣରୁ ଅତ୍ୟନ୍ତ ସ୍ପଷ୍ଟ ଓ ସ୍ୱଚ୍ଛ କରିଦେଇଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

ରସ କଲ୍ଲୋଳର ମୁଖବନ୍ଧର ପଞ୍ଚମ ଅଧ୍ୟାୟଟି ହେଉଛି 'କବିଙ୍କ ପାଣ୍ଡିତ୍ୟ' । ବାସ୍ତବରେ ଏହି ଅଂଶଟିକୁ ଆମେ ଅଧ୍ୟାପକ ଶ୍ରୀଧର ଦାସଙ୍କର ପାଣ୍ଡିତ୍ୟ ବୋଲି କହିଲେ କିଛି ଭୁଲ ହେବନାହିଁ । କାରଣ ଅଧ୍ୟାପକ ଦାସ ଏହି ଅଂଶଟିରେ ଦୀନକୃଷ୍ଣଙ୍କର ପାଣ୍ଡିତ୍ୟକୁ ସ୍ପଷ୍ଟ କରିବାକୁ ଯାଇ ଯେପରି ମାଘ, କାଳିଦାସ ପ୍ରମୁଖଙ୍କ ଶ୍ରେଷ୍ଠ କାବ୍ୟକୃତିକୁ ନେଇ ତୁଳନାତ୍ମକ ଭାବରେ ବିଶ୍ଳେଷଣ କରିଛନ୍ତି ତାହା ଅଦ୍ୱିତୀୟ ଓ ଅନୁପମ । କାରଣ ସ୍ୱୟଂ ଦୀନକୃଷ୍ଣ ନିଜେ ମାଘ ବା କାଳୀଦାସଙ୍କୁ ସ୍ମରଣ କରିଛନ୍ତି କି ନାହିଁ ତାହା ତାଙ୍କ କାବ୍ୟରେ ଉଲ୍ଲେଖ କରିନାହାନ୍ତି । ପ୍ରାଚୀନ କବିମାନେ ସମସ୍ତେ ସଂସ୍କୃତର ପ୍ରସିଦ୍ଧି ଲାଭ କରିଥିବା କାବ୍ୟଗୁଡ଼ିକୁ ଆତ୍ମସ୍ଥ କରିଥିବେ, ଏହା କେବଳ ଏକ ଅନୁମାନ ମାତ୍ର । କାରଣ ଉପେନ୍ଦ୍ରଙ୍କ ପରି ରାଜ ପରିବାର ବ୍ୟକ୍ତିଙ୍କ ପାଖରେ ସଂସ୍କୃତର ଗ୍ରନ୍ଥ ମିଳିବା ଓ ଅଧ୍ୟୟନ କରିବା ସୁଲଭ ହୋଇପାରେ, ମାତ୍ର ଦୀନକୃଷ୍ଣଙ୍କ ପରି କବି ଯିଏ ନିଜ ପେଟ ପାଇଁ ଅନ୍ନସଂସ୍ଥାନ କରିପାରୁନଥିଲେ ଓ କୁଷ୍ଠ ରୋଗାକ୍ରାନ୍ତ ହୋଇପଡ଼ିଥିଲେ, ତାଙ୍କ ପାଇଁ ସଂସ୍କୃତର ବିଶାଳ କାବ୍ୟ ସମୁଦ୍ରକୁ ଅତିକ୍ରମ କରିବା ସହଜସାଧ ବୋଲି କାହିଁକି ମନରେ ସନ୍ଦେହ ଆସେ । ତେବେ ତାଙ୍କର କବିତ୍ୱ ଅବିସମ୍ବାଦିତ ଓ ସମାଲୋଚକର ଦୃଷ୍ଟିରେ କବି ଯେତେବେଳେ ଉତ୍ତୀର୍ଣ୍ଣ ହୋଇଉଠୁଛନ୍ତି; ସେତେବେଳେ କବି ମହାନ୍ ଶ୍ରେଣୀୟ, ତେବେ ଏହା ପଛରେ ସମାଲୋଚକର ବିଦ୍ୟା ଓ ବୈଦଗ୍ଧ୍ୟକୁ ମଧ ସ୍ୱୀକାର କରାଯାଇପାରେ । ଏହି ଦୃଷ୍ଟିକୋଣରୁ ଶ୍ରୀଧର ଦାସ ଯେତେବେଳେ ରସ କଲ୍ଲୋଳର ଅଂଶକୁ ନୈଷଧ ସହିତ ତୁଳନା କରନ୍ତି ବା ସାହିତ୍ୟ ଦର୍ପଣର ନିୟମ ସହିତ ତୁଳନା କରନ୍ତି, ସେତେବେଳେ ଶ୍ରୀଧରଙ୍କର ପାଣ୍ଡିତ୍ୟ ଓ ବିଦଗ୍ଧତାକୁ ସ୍ୱୀକାର ନକରି ରହିହୁଏ ନାହିଁ ।

ଏହିପରି ଭାବରେ ଦେଖିଲେ ସମ୍ପାଦିତ କାବ୍ୟର ମୁଖବନ୍ଧଗୁଡ଼ିକ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଭାଷାରେ ଛାତ୍ର-ଛାତ୍ରୀଙ୍କ ବୋଧଗମ୍ୟ ରୀତିରେ ଲିଖିତ ହୋଇଛି । ଇତିହାସର ବିବଦମାନ ତଥ୍ୟକୁ ଉପସ୍ଥାପନ କରାଯାଇ ମୀମାଂସାର ପଥକୁ ପରିଷ୍କୃତ କରାଯାଇଛି ଓ କେତେକ ସ୍ଥଳରେ ନିଜର ଅକାଟ୍ୟ ଯୁକ୍ତିକୁ ଉପସ୍ଥାପନ କରି ନିଜର ସିଦ୍ଧାନ୍ତକୁ ଉପନୀତ କରାଇଛନ୍ତି ଓ କବିଙ୍କ ପାଣ୍ଡିତ୍ୟକୁ ସ୍ପଷ୍ଟ କରିବାକୁ ଯାଇ ନିଜ ପାଣ୍ଡିତ୍ୟର ଅବତାରଣା କରିଛନ୍ତି । ଏହି ସମସ୍ତ ଉପାଦାନଗୁଡ଼ିକରୁ ତାଙ୍କ ଗଦ୍ୟଶୈଳୀ ଯେ କେତେ ଚମତ୍କାର ଓ ସମୟୋପଯୋଗୀ ତାହା ଅନୁମାନ କରାଯାଇପାରେ ।

## ଶ୍ରୀଧର ଦାସଙ୍କ ଅନୁବାଦ

ଅଧ୍ୟାପକ ଶ୍ରୀଧର ଦାସ ତାଙ୍କର ଆଦ୍ୟ ସାରସ୍ୱତ ସୃଜନ କର୍ମଟିକୁ ଅନୁବାଦ ପ୍ରକ୍ରିୟା ମଧ୍ୟରୁ ପ୍ରାରମ୍ଭ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ପୂର୍ବରୁ କୁହାଯାଇଛି ଯେ, ଭାରତ ସେବକ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ପ୍ରେରଣାରେ ସେ ଏକଦା ଅନୁବାଦ କ୍ରିୟା ମଧ୍ୟରେ ଆତ୍ମପ୍ରକାଶ କରିଥିଲେ । ତେବେ ପରବର୍ତ୍ତୀ କାଳରେ କବିତା, ଗଳ୍ପ ଓ ପ୍ରବନ୍ଧାଦି ମୌଳିକ ସୃଜନ କର୍ମରେ ନିଜର ମନୋନିବେଶ କରିଥିଲେ ମଧ୍ୟ ଅଧିକ ସମୟ ପର୍ଯ୍ୟନ୍ତ ସେଥିରେ ସେ ବାନ୍ଧିହୋଇ ପାରିନଥିଲେ । ଅଧିକନ୍ତୁ, ଅନୁବାଦ କଳାର ସମ୍ମୋହନରେ ସେ ନିଜକୁ ହଜାଇ ଦେଇଥିଲେ । ଏହି ସୂତ୍ରରେ ଓଡ଼ିଆ ବାଣୀ ଭଣ୍ଡାର ତାଙ୍କ ଲେଖନୀରୁ ପ୍ରାୟ ୮୫ (ପଞ୍ଚାଅଶୀ) ଖଣ୍ଡ ଅନୁବାଦିତ ପୁସ୍ତକ ପାଇ ସମୃଦ୍ଧ ହୋଇଅଛି । ଏହି ଅନୁବାଦଗୁଡ଼ିକ ମଧ୍ୟରେ ରହିଛି ୧୦ ଖଣ୍ଡ ପୁସ୍ତକ, ଯାହାକୁ ଅନ୍ୟ କୌଣସି ସଂସ୍ଥା ପ୍ରକାଶ କରିଥିଲେ ଓ ପରେ ତାକୁ ଶ୍ରୀଧର ଅନୁବାଦ କରିଛନ୍ତି ସେହି ସଂସ୍ଥାର ଓଡ଼ିଆ ପ୍ରକାଶନ ପାଇଁ । ଯେପରି U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ ୬ ଖଣ୍ଡ ପୁସ୍ତକ ଓ N.B.T. India, New Delhi ଆନୁକୂଲ୍ୟରେ ପ୍ରକାଶିତ ୩ ଖଣ୍ଡ ପୁସ୍ତକ ଓ ଶେଷରେ Indian Council of Historical Research ଆନୁକୂଲ୍ୟରେ ପ୍ରକାଶିତ ହୋଇଥିବା ୧ ଖଣ୍ଡ ପୁସ୍ତକ । (ଏହାର ବିସ୍ତୃତ ତାଲିକା ପରିଶିଷ୍ଟ ବିଭାଗର (କ) ଅଂଶ ତଥା 'ଶ୍ରୀଧର ଦାସଙ୍କ ରଚନାବଳୀ'ରେ ଉଲ୍ଲିଖିତ ରହିଛି) । ଏହି ୧୦ ଖଣ୍ଡ ପୁସ୍ତକକୁ ଛାଡ଼ିଦେଲେ ଅବଶିଷ୍ଟ ୭୫ ଖଣ୍ଡ ଅନୁବାଦ ପୁସ୍ତକ ହେଉଛି ପୂର୍ଣ୍ଣମାତ୍ରାରେ ତାଙ୍କର ରୁଚି ଓ ଅବବୋଧର ପୂର୍ଣ୍ଣ ପରିଚାୟକ ମାତ୍ର ।

ଅଧ୍ୟାପକ ଶ୍ରୀଧର ଦାସଙ୍କର ସେହି ୭୫ ଖଣ୍ଡ (ପଞ୍ଚସ୍ତରୀ ଖଣ୍ଡ) ଅନୁବାଦ ପୁସ୍ତକଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯିବ ଯେ ଶ୍ରୀଧର ଦାସଙ୍କର ଚୟନର ପୃଷ୍ଠଭୂମି ହେଉଛି ପ୍ରାଚ୍ୟ ଓ ପାଶ୍ଚାତ୍ୟର କେତେକ ବଳିଷ୍ଠ ତଥା ବିଶିଷ୍ଟ କ୍ଲାସିକ୍ ଗ୍ରନ୍ଥମାନ । ପ୍ରାଚ୍ୟ (ସଂସ୍କୃତ) ସାହିତ୍ୟରୁ ସେ ଯେପରି 'ମୃଚ୍ଛକଟିକ' ଓ 'ମୁଦ୍ରାରାକ୍ଷସ', 'ରାମାୟଣ କାହାଣୀ', 'ମହାଭାରତ କାହାଣୀ', 'ଜାତକ କାହାଣୀ', 'ଶକୁନ୍ତଳା' ପ୍ରଭୃତି କ୍ଲାସିକ୍ ସୃଷ୍ଟିକୁ ସେ ଗ୍ରହଣ କରିଛନ୍ତି; ପାଶ୍ଚାତ୍ୟ ଜଗତରୁ ମଧ୍ୟ ସେ 'ମୋପାସାଁ କାହାଣୀ', 'ଟଲଷ୍ଟୟ କାହାଣୀ', 'ଚେକଭ କାହାଣୀ', 'ଗର୍କୀ କାହାଣୀ' ପ୍ରଭୃତିକୁ ମଧ୍ୟ ସେ ଗ୍ରହଣ କରିଛନ୍ତି । ସବୁଠାରୁ ବଡ଼ କଥା ହେଉଛି ସେ ଆମ ଦେଶୀୟ ଭାଷା ତଥା ଓଡ଼ିଆ ଭାଷାର ଏକ କ୍ଲାସିକ୍ ଉପନ୍ୟାସ 'ଛମାଣ ଆଠଗୁଣ୍ଠ'କୁ ମଧ୍ୟ ସଂକ୍ଷିପ୍ତ ଭାବରେ ରୂପାୟିତ କରିଛନ୍ତି । ତେଣୁ

ତାଙ୍କର ରୁଚି ଯେ କେତେ ଗଭୀର ଓ ସଂସ୍କୃତି ସଚେତନ, ତାହା ଏହି ପରିପ୍ରେକ୍ଷୀରେ ସୂଚୀତ ହୋଇଯିବା ସଙ୍ଗେ ସଙ୍ଗେ ଆମ ଦେଶର ଅଗଣିତ ଶିଶୁ ଓ କିଶୋରଙ୍କୁ ଆମ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଭଲ ବହିକୁ ପରିଚିତ କରାଇବାର ଅଦମ୍ୟ ଉତ୍ସାହଟିକୁ ମଧ୍ୟ ବେଶ୍ ଉପଲବ୍‌ଧ କରିହୁଏ ।

ଅନୁବାଦ କାଳରେ ଶ୍ରୀଧର ଦାସ ଭାଷା ପ୍ରତି ବେଶୀ ସତର୍କ ଓ ସଚେତନ ଥିବାପରି ମନେହୁଏ । କାରଣ ସେ ବୁଝନ୍ତି ଯେ, "A good translation should be rather faithful than exact. A translation must read like an orginal." (Art of Translation / T.H. Warren) ଏହି କାରଣରୁ ସେ ଯେତେବେଳେ ଅନୁବାଦ କରିଛନ୍ତି ତାକୁ ଏତେ ଆନ୍ତରିକତାର ସହିତ ଓଡ଼ିଆ ଭାଷାରେ ରୂପ ଦେଇଛନ୍ତି ଯେ, ତାକୁ ନ ପଢ଼ିଲେ ବିଶ୍ୱାସ କରିହେବ ନାହିଁ । ତେବେ ଏହି ପରିପ୍ରେକ୍ଷୀରେ ଗୋଟିଏ ଅନୁବାଦର ଦୃଷ୍ଟାନ୍ତକୁ ଏହିଠାରେ ଉପସ୍ଥାପିତ କରାଯାଇପାରେ । ଯେପରି 'ମୋପାସାଁ କାହାଣୀ' (ପ୍ରଥମ ଭାଗ)ର ତୃତୀୟ ଗଳ୍ପ 'ପ୍ରେମ' । ଏହାର ଆରମ୍ଭ ହୋଇଛି ଏହିପରି–

"ଅଳ୍ପଦିନ ତଳେ ମୁଁ ଖବରକାଗଜରେ ଗୋଟିଏ ପ୍ରେମ କାହାଣୀ ପଢ଼ିଥିଲି । ସମ୍ବାଦ ପ୍ରକାଶିତ ହୋଇଥିଲା ଯେ, ଜଣେ ପ୍ରେମିକ ତା'ର ପ୍ରେମିକାକୁ ହତ୍ୟା କରି ନିଜେ ଆତ୍ମହତ୍ୟା କରିଥିଲା । ନିଜେ ଆତ୍ମହତ୍ୟା କରିଥିବାରୁ ପ୍ରମାଣିତ ହୁଏ ଯେ, ସେ ତା'ର ପ୍ରେମିକାକୁ ଭଲ ପାଉଥିଲା । କିଏ କାହାକୁ ଭଲ ପାଉଥିଲା, ସେଥିରେ ମୋର କିଛି ଯାଏ ଆସେ ନାହିଁ । ସେମାନଙ୍କର ପ୍ରେମ ହିଁ ମୋର ଆଲୋଚ୍ୟ ବିଷୟ । ଏହି ପ୍ରେମ ମୋତେ ବିସ୍ମିତ କରିଛି; ହୃଦୟକୁ କୋମଳ କରିଛି; ମୋର ଚିନ୍ତାଶକ୍ତି ଜାଗ୍ରତ କରିଛି ସତ, କିନ୍ତୁ ସେଥିପାଇଁ ମୁଁ ଏ ବିଷୟରେ ଆଗ୍ରହୀ ନୁହେଁ । ମୋର ଆଗ୍ରହର କାରଣ ହେଉଛି ଭିନ୍ନ । ଏହି ଘଟଣା ପଢ଼ି ମୋର ଯୌବନ କାଳର ଏକ ଘଟଣା ମନେ ପଡ଼ିଯାଏ । ସେ ଏକ ପକ୍ଷୀ ଶିକାର । ସେଥିରେ ମୁଁ ଯେଉଁ ପ୍ରେମର ପରିଚୟ ପାଇଥିଲି, ତାହା ଭିନ୍ନ ପ୍ରକାରର ।"(୪୪) ଏହି ଅଂଶଟି ଏକ ନମୁନା ମାତ୍ର । ଏହାକୁ ପଢ଼ିଲେ ଆଦୌ ବିଶ୍ୱାସ କରିହୁଏ ନାହିଁ ଯେ, ଏହା ଏକ ବିଦେଶୀ ଗଳ୍ପ ବୋଲି ।

ସେହିପରି ଆଉ ଗୋଟିଏ ଦୃଷ୍ଟାନ୍ତକୁ ମଧ୍ୟ ଏଠାରେ ଉପସ୍ଥାପନ କରାଯାଇପାରେ । ଦୃଷ୍ଟାନ୍ତଟି ମୋପାସାଁ କାହାଣୀର ଦ୍ୱିତୀୟ ଭାଗର ଶେଷ ଗଳ୍ପ : 'ଅନ୍ଧ' । ଉଦ୍ଧୃତାଂଶଟି ଏହିପରି :

(୪୪) ମୋ ପାସାଁ କାହାଣୀ (ପ୍ରଥମ ଖଣ୍ଡ) / ପ୍ରକାଶକ : ଗ୍ରନ୍ଥ ମନ୍ଦିର, କଟକ-୨

"ମୁଁ ଜଣେ ଅନ୍ଧ ବିଷୟ ଜାଣେ । ତାକୁ ଜଣେ ଶହୀଦ୍ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଥିଲା ଜଣେ ଚାଷୀର ପୁଅ । ତା'ର ବାପା, ମାଆ ଯେତେଦିନ ବଞ୍ଚିଥିଲେ ସେତେଦିନ ସେମାନେ ତା'ର କିଛି କିଛି ଯତ୍ନ ନେଉଥିଲେ । କେବଳ ଦୃଷ୍ଟିଶକ୍ତିର ଅଭାବ ଛଡ଼ା ଅନ୍ୟ କୌଣସି ଅଭାବ ସେ ଅନୁଭବ କରୁନଥିଲା । କିନ୍ତୁ ବୁଢ଼ାବୁଢ଼ୀ ଚାଲିଯିବା ପରେ ତା'ର ଦୁଃଖର ଜୀବନ ଆରମ୍ଭ ହେଲା । ତାକୁ ଜଣେ ଭଉଣୀ ଉପରେ ନିର୍ଭର କରିବାକୁ ପଡ଼ିଲା । ସମସ୍ତେ ତାକୁ ଜଣେ ଭିକ୍ଷୁକ ଭଳି ବ୍ୟବହାର କଲେ । ଖାଇଲା ବେଳେ ତାକୁ ପ୍ରତ୍ୟହ ଗାଳି ଶୁଣିବାକୁ ହେଉଥିଲା । ତା'ର ଯାହା ପୈତୃକ ସମ୍ପତ୍ତି ଥିଲା, ତାକୁ ତା'ର ଭିଣୋଇ ନେଇଯାଇଥିଲେ । କିନ୍ତୁ ତାକୁ ଖାଇବାକୁ ଦେବାବେଳକୁ ଭିଣୋଇ କୁଣ୍ଠା ପ୍ରକାଶ କରୁଥିଲେ । ଅତି କଷ୍ଟରେ ଯାହା ତାକୁ ସାମାନ୍ୟ ଖାଇବାକୁ ଦିଆଯାଉଥିଲା; ସେଥିରେ ତା'ର ପେଟ ପୁରୁନଥିଲା; କୌଣସି ମତେ କେବଳ ଜୀବନ ରହିଥିଲା ମାତ୍ର ।"[୪୫]

ଏହିସବୁ ଦୃଷ୍ଟାନ୍ତ ଅତୀବ ଚମତ୍କାର ଭାବରେ ଶ୍ରୀଧର ଦାସଙ୍କ ଓଡ଼ିଆ ମନନଶୀଳତାର ସ୍ପଷ୍ଟ ପରିଚୟ ପ୍ରଦାନ କରିଥାଏ । ଅନ୍ୟାନ୍ୟ ଗଳ୍ପରେ 'ମି. ଜେଭାସ' (ବ୍ୟର୍ଥ ଜୀବନ), 'କାର୍ଲ' (ପ୍ରେମ) ବା 'ଟମ୍' (ଟମ୍ କକାଙ୍କ କେବିନ୍) ପ୍ରଭୃତି ଚରିତ୍ରର ନାମଗୁଡ଼ିକ କେବଳ ଗଳ୍ପଟି ଯେ ପାଶ୍ଚାତ୍ୟ ଦେଶର ବୋଲି ସୂଚାଇ ଦେଇଥାନ୍ତି ସିନା, ହେଲେ ସମ୍ପୂର୍ଣ୍ଣ ବିଷୟବସ୍ତୁକୁ ଅନୁଧ୍ୟାନ କଲେ ଜଣାଯିବ ସତେ ଯେପରି ଏହି ଗଳ୍ପଗୁଡ଼ିକ ଏକାନ୍ତ ଭାବରେ ଆମ ଓଡ଼ିଆ ଭାଷାର ଓ ଓଡ଼ିଆ ମାଟିର କଥା କହୁଛନ୍ତି । ଏଇଠି ଅନୁବାଦ କଳାର ସାର୍ଥକତା ଓ ଅନୁବାଦକର ଗୋଟିଏ ଭାଷା-ସାହିତ୍ୟ ଉପରେ ଅପ୍ରତିହତ ବିଜୟ ଯାତ୍ରା ବୋଲି ସ୍ୱୀକାର କରିବାକୁ ହୋଇଥାଏ ।

## ଶ୍ରୀଧର ଦାସଙ୍କ ଆତ୍ମଜୀବନୀ : 'ସୁଅ ମୁହଁର ପତର'

ଶ୍ରୀଧର ଦାସଙ୍କର ଗଦ୍ୟଶୈଳୀର ଆଲୋଚନା କାଳରେ ତାଙ୍କର ଆତ୍ମଜୀବନୀ : 'ସୁଅ ମୁହଁର ପତର' ଏକ ବିଶେଷ ଆଲୋଚନାର ଅପେକ୍ଷା ରଖେ । ଏହି ଗ୍ରନ୍ଥଟି ୩୫୫ ପୃଷ୍ଠାର ଏକ ବିରାଟ ଗ୍ରନ୍ଥଟିଏ ।[୪୬] ଏହି ଗ୍ରନ୍ଥଟିର ରଚନା କାଳକୁ ଅଧ୍ୟାପକ ଶ୍ରୀ

(୪୫) ମୋ ପାଖାଁ କାହାଣୀ (ଦ୍ୱିତୀୟ ଖଣ୍ଡ) / ପ୍ରକାଶକ : ଗ୍ରନ୍ଥ ମନ୍ଦିର, କଟକ-୨, ପ୍ରଥମ ପ୍ରକାଶ : ଫେବୃୟାରୀ, ୧୯୭୩ / ପୃ : ୧୧୭

(୪୬) ସୁଅ ମୁହଁର ପତର : ଅଧ୍ୟାପକ ଶ୍ରୀଧର ଦାସ
ପ୍ରକାଶକ : ଶ୍ରୀଧର ଦାସ / ପ୍ରଥମ ସଂସ୍କରଣ : ଜୁନ୍, ୧୯୮୨

ଦାସ ବୃଦ୍ଧ ହୋଇଗଲେଣି ଓ ପରିଣତ ବୟସରେ ଉପନୀତ ମଧ୍ୟ ହୋଇସାରିଲେଣି । 'ଆତ୍ମଜୀବନୀ' ସମ୍ପର୍କରେ ସୂଚନା ଦେବା ସେ ତାଙ୍କର ସ୍ୱୀକାରୋକ୍ତି ପ୍ରକାଶ କରିଛନ୍ତି ଏହିପରି : "x x ଅଶୀତିବର୍ଷ ବୟସ ବେଳେ ସ୍ମୃତିଶକ୍ତି କ୍ଷୀଣ ହେବାର କଥା । ବିସ୍ମୃତ ବା ଅର୍ଦ୍ଧ ବିସ୍ମୃତ ଘଟଣାକୁ ସ୍ମୃତିପଟକୁ ଆଣିବା ବେଳକୁ ତାହା ସାମାନ୍ୟ ବିକୃତ ହୋଇଯାଇଥିବା ଅସମ୍ଭବ ନୁହେଁ ।"[୪୭] ମାତ୍ର ସତ କହିବାକୁ ଗଲେ ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ ଆତ୍ମଜୀବନୀରେ ଯେତିକି କଥା ସ୍ମୃତିଚାରଣ କରିଛନ୍ତି, ତାହା ଏତେ ଜୀବନ୍ତ ଓ ପ୍ରାଣବନ୍ତ ଯେ, ତାହାକୁ ସ୍ୱୀକାର ନକରି ରହିହୁଏ ନାହିଁ ।

ଏହି ଆତ୍ମଜୀବନୀର ରଚନା ଶୈଳୀ ବେଶ ସରଳ ଓ ସାବଲୀଳ । ଘଟଣାର ସତ୍ୟତାକୁ ସେ ଏତେ ପ୍ରାଞ୍ଜଳ ଭାବରେ ଉପସ୍ଥାପିତ କରିଛନ୍ତି ଯେ, ତାକୁ ଥରେ ପଢ଼ିବାକୁ ଆରମ୍ଭ କଲେ ଶେଷ ନକରି ରହିହୁଏ ନାହିଁ । ଅବଶ୍ୟ ଘଟଣାର ଅବତାରଣାଗୁଡ଼ିକ 'ଆତ୍ମକୃତ କର୍ମ ପ୍ରଶଂସା' ପରି ମନେ ହୋଇଥାନ୍ତି ।[୪୮] ତଥାପି ଏହାର ବର୍ଣ୍ଣନା ଶୈଳୀ ଓ ପ୍ରୟୋଗ ହୋଇଥିବା ଭାଷା ବା ଶବ୍ଦ ଭଣ୍ଡାରକୁ ଲକ୍ଷ୍ୟ କଲେ ଏହା ଯେ ଏକ ଭିନ୍ନ ଶ୍ରେଣୀର ଉତ୍କୃଷ୍ଟ ରଚନା, ତାହା ମନେ ହୋଇଥାଏ ।

'ସୁଅ ମୁହଁର ପତର'ର ବର୍ଣ୍ଣନା ଶୈଳୀର ଏକ କ୍ରମ ପ୍ରବାହମାନତା ରଖିଛି । ଜୀବନ ସଂଗ୍ରାମରେ ଅବିରତ ଯୁଦ୍ଧ କରି ଚାଲିଥିବା ମଣିଷଟି ପରିଣତ ବୟସରେ ଯେତେବେଳେ ନିଜର ଜୀବନୀ ଲେଖିବାକୁ ବସିବ, ସେ ତା'ର ଉତ୍‌ଥାନ-ପତନର ସ୍ପଷ୍ଟ ଚିତ୍ର ଦେବ ନାହିଁ ତ ଆଉ କ'ଣ କରିବ ? ସେ ପ୍ରଥମରୁ ହିଁ ସ୍ପଷ୍ଟ କରିଦେଇଛନ୍ତି ଯେ, ସେ ବନ୍ଧୁମାନଙ୍କର ପ୍ରୋତ୍ସାହନରୁ ଆତ୍ମଜୀବନୀ ଲେଖୁଛନ୍ତି, ନିର୍ଦ୍ଦିଷ୍ଟ ଭାବରେ କୌଣସି ବର୍ଗର ପାଠକ-ପାଠିକାଙ୍କ ପାଇଁ ନୁହେଁ । ତେଣୁ ସେ ବନ୍ଧୁଙ୍କ ନିକଟରେ ଅଧିକୃତ କର୍ମ ପ୍ରଶଂସାକୁ ବ୍ୟାଖ୍ୟା କରିବେ ନାହିଁ ତ ଆଉ କେଉଁଠାରେ କରିବେ ? ତେବେ ସେ ଏହି ଜୀବନୀକୁ ଶେଷ କରିସାରିଲା ପରେ ଓ ବହୁ ଘାତ-ପ୍ରତିଘାତ ମଧ୍ୟରେ ଏହା ମୁଦ୍ରିତ ରୂପ ନେଇସାରିଲା ପରେ ତାହା ଆଉ ତାଙ୍କ ସମ୍ପତ୍ତି ହୋଇ ରହିନାହିଁ କି ତା' ଆଉ ତାଙ୍କ ବନ୍ଧୁଙ୍କ ପାଇଁ ଉତ୍ସର୍ଗୀକୃତ ହୋଇ ରହିପାରିନାହିଁ, ବରଂ ଦେଶ-କାଳ-ପାତ୍ରର ସୀମା ଓ ସରହଦକୁ ଅତିକ୍ରମ କରି ଏହା ସର୍ବାନ୍ତକରଣରେ ହୋଇ

---

(୪୭) ତତ୍ରୈବ / ପୃଷ୍ଠା : ନିବେଦନ

(୪୮) ଅଧ୍ୟାପକ ଶ୍ରୀଧର ଦାସ : ସୁଅ ମୁହଁର ପତର / ଆଦର୍ଶ ମଣିଷ ଶ୍ରୀଧର ଦାସ- ସଂପାଦନା-ଡକ୍ଟର ବିଭୁତି ପଟ୍ଟନାୟକ / ପ୍ରାଚୀ ପ୍ରକାଶନ-ନୂଆଦିଲ୍ଲୀ-ଭୁବନେଶ୍ୱର / ପ୍ରଥମ ପ୍ରକାଶ - ୨୦୦୩ / ପୃ : ୬୭

ଉଠିଛି ଓଡ଼ିଶାର; ଓଡ଼ିଶାର ପ୍ରତ୍ୟେକ ପାଠକ-ପାଠିକାଙ୍କର । ପାଠକ ଯେତେବେଳେ ଏହି 'ସୁଅ ମୁହଁର ପତର'କୁ ପଢ଼ି ତାରି ମଧ୍ୟରେ ନିଜକୁ ଆବିଷ୍କାର କରେ ବା ଜୀବନ ସଂଗ୍ରାମରେ ଲଢ଼ିବା ପାଇଁ ପ୍ରେରଣା ଲାଭ କରେ, ସେତିକିବେଳେ ହିଁ ଲେଖକଙ୍କର ସାର୍ଥକତାକୁ ଉପଲବ୍ଧି କରିହୁଏ ।

ସେଦିନ ଆଲୋଚକ ଜି.କେ.ଦାସ ଯଥାର୍ଥରେ କହିଥିଲେ ଯେ,—"A leaf in the Stream (ସୁଅ ମୁହଁର ପତର), is an open diary : a straight-forward narration of selection of events and situations connected with the author's life without any attempts at self-dramatisation or fantasisation."(୪୯) ବାସ୍ତବରେ 'ସୁଅ ମୁହଁର ପତର'ରେ ଯେଉଁ ଘଟଣାର କ୍ରମନ୍ୱୟତା ପ୍ରକାଶ ପାଇଛି, ତାହା ଏକାନ୍ତ ଭାବରେ ଜୀବନ୍ତ ହୋଇଉଠିଛି । ଏବଂ ସମକାଳୀନ ଶିକ୍ଷା କ୍ଷେତ୍ରରେ ଚାଲିଥିବା ବିଭିନ୍ନ ଅପ୍ରିୟ ସତ୍ୟକୁ ମଧ୍ୟ ଆଲୋକିତ କରିଛି । ଏହି ପରିପ୍ରେକ୍ଷୀରେ ପ୍ରଫେସର ଗଗନେନ୍ଦ୍ରନାଥ ଦାଶଙ୍କ ଉକ୍ତିଟିକୁ ମଧ୍ୟ ସ୍ମରଣ କରାଯାଇପାରେ । ସେ କୁହନ୍ତି,—"The autobiography of Sridhar Das possesses unmistakable literary value as it is written in a very simple, straight forwarded but lucid style and narrates many events interesting in themselves in an engaging manner."(୫୦) ସୁଅ ମୁହଁର ପତରରେ ବର୍ଣ୍ଣିତ ଘଟଣା ଯେ କେତେ ଉତ୍ସାହଜନକ ଓ ମଗ୍ନ ଚେତନାର ଦ୍ୟୋତକ, ତାହା ଉପରୋକ୍ତ ମନ୍ତବ୍ୟଗୁଡ଼ିକରୁ ସ୍ପଷ୍ଟ ହୋଇଉଠିଥାଏ ।

ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ ଆତ୍ମଜୀବନୀରେ କେତେକ ପ୍ରଚଳିତ ଶବ୍ଦର ପ୍ରୟୋଗ କରିଛନ୍ତି, ଯାହାକି ସେକାଳର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାକୁ ବେଶ୍ ପ୍ରତିଫଳିତ କରିଥାଏ । ଉଦାହରଣ ସ୍ୱରୂପ କେତେକ ବିଶେଷ ଶବ୍ଦମାନଙ୍କୁ ଏଠାରେ ଗ୍ରହଣ କରିପାରିବା । ଯେପରି :—'ଅଣା' (ଏହା ଏକ ଟଙ୍କାର ଏକ ଷଷ୍ଠାଂଶ, ମାତ୍ର ବର୍ତ୍ତମାନ ଅପ୍ରଚଳିତ), 'ବାହାଦୂର' (ତତ୍କାଳୀନ ସମୟରେ ରାଜାଙ୍କ ଦ୍ୱାରା ପ୍ରଦତ୍ତ ସମ୍ମାନସୂଚକ ପଦବୀ), 'କଟକିଆ' (କଟକର ଅଧିବାସୀ), 'ମକତବ୍'

---

(୪୯) Indian Literature (234), Sahitya Akademi, New Delhi / P. 185

(୫୦) Prof. Gaganendranath Dash - Foreward / A Leaf in the Stream - Tr. Mary Mohanty / Rupantar, BBSR.

(ମୁସଲମାନଙ୍କ ବିଦ୍ୟାଳୟ), 'ମୋଗଲବନ୍ଦୀ' (ଓଡ଼ିଶାର ଉପକୂଳବର୍ତ୍ତୀ ତିନିଗୋଟି ଜିଲ୍ଲା : କଟକ, ପୁରୀ ଓ ବାଲେଶ୍ୱର ଅଞ୍ଚଳ, ଯେଉଁଗୁଡ଼ିକକି ଏକଦା ମୋଗଲ ସାମ୍ରାଜ୍ୟ ଅଧୀନରେ ରହିଥିଲା), 'ଟୋଲ' (ସଂସ୍କୃତ ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ଥିବା ଏକ ପ୍ରକାର ସ୍ୱତନ୍ତ୍ର ବିଦ୍ୟାଳୟ) ଓ 'ସରବରାକାର' (ଖଜଣା ଆଦାୟକାରୀ) ଇତ୍ୟାଦି । ଏହି ଶବ୍ଦଗୁଡ଼ିକର ଅର୍ଥ ନ ଜାଣିଲେ ସାଧାରଣତଃ ତାଙ୍କ ଜୀବନୀରୁ ସମକାଳୀନ ଇତିହାସକୁ ଉପଲବ୍ଧି କରିହେବ ନାହିଁ ।

ମୋଟ ଉପରେ ଦେଖିବାକୁ ଗଲେ ଶ୍ରୀଧର ଦାସଙ୍କ ଆତ୍ମଜୀବନୀ 'ସୁଅ ମୁହଁର ପତର' ହେଉ, କି ତାଙ୍କର ଅନୁବାଦ ପୁସ୍ତକମାନ ହେଉ, ତାଙ୍କ ଦ୍ୱାରା ସଂପାଦିତ ଗ୍ରନ୍ଥ ହେଉ କି ତାଙ୍କ ସ୍ୱଚ୍ଛ ପ୍ରବନ୍ଧମାଳା ହେଉ, ଏସବୁ ଏକାନ୍ତ ଭାବରେ ସୁଖପାଠ୍ୟ ଓ ସମୟୋଚିତ । ଭାଷାର ସରଳତା ସହିତ ତାଙ୍କର ଆବେଗର ଉଦ୍‌ବେଳନ ଉକ୍ତ ସାରସ୍ୱତ ସୃଜନ କର୍ମରେ ଏକାତ୍ମ ହୋଇଉଠିଛନ୍ତି । ସମସ୍ତଙ୍କୁ ଏକାଠି କରି ଅନୁଧ୍ୟାନ କଲେ, ତାଙ୍କ ଗଦ୍ୟଶୈଳୀକୁ ଏକାନ୍ତ ଭାବରେ ଶ୍ରଦ୍ଧା କରିହେବ ଓ ସେଥିରେ ଅନୁସନ୍ଧାନ କଲେ ତନ୍ମଧ୍ୟରେ ମଧ୍ୟ ନୂତନତ୍ୱକୁ ଉପଲବ୍ଧି କରିହେବ, ଏଥିରେ ସନ୍ଦେହ ନାହିଁ ।

***

# ପଦ୍ୟ ଶୈଳୀ

ଅଧ୍ୟାପକ ଶ୍ରୀଧର ଦାସଙ୍କ ପଦ୍ୟ ପରିମାଣାତ୍ମକ ଦୃଷ୍ଟିରୁ ଖୁବ୍ ସ୍ୱଳ୍ପ; ଗଦ୍ୟ ପରି ପ୍ରଚୁର ନୁହେଁ କି ବିଚିତ୍ରବର୍ଣ୍ଣ ମଧ ନୁହେଁ । ସ୍କୁଲରେ ପାଠ ପଢ଼ିବା ବେଳେ ତାଙ୍କ ମନ ଭିତରେ ଥିବା କବିସତ୍ତାଟି ଆତ୍ମପ୍ରକାଶ କରିବାକୁ ବ୍ୟଗ୍ର ହୋଇଉଠିଥିଲା । ଏହି କ୍ରମରେ ସେ କିଛି କବିତା ଲେଖିଥିଲେ ଓ ସମକାଳୀନ ପତ୍ର-ପତ୍ରିକାରେ, ବିଶେଷ ଭାବରେ 'ସହକାର'ରେ ସେସବୁ ପ୍ରକାଶ ପାଇଥିଲା । ମାତ୍ର କବିତାଟି ଲେଖିସାରିବା ପରେ, ବିଶେଷ ଭାବରେ ମୁଦ୍ରିତ କବିତାଟିକୁ ସେ ପାଠ କଲାପରେ ସେ ସ୍ରଷ୍ଟା ଭାବରେ ଆନନ୍ଦିତ ହୋଇଥିବେ ନିଶ୍ଚୟ; ମାତ୍ର ଜଣେ ସୁଧୀ ସମୀକ୍ଷକ ଭାବରେ ନିଜ କବିତାକୁ ସେ ନିଜେ ଅନ୍ତରର ସହିତ ଗ୍ରହଣ କରିପାରିନାହାନ୍ତି । ଏଇ ପରିପ୍ରେକ୍ଷୀରେ ମନେପଡ଼େ ବିଶିଷ୍ଟ କବି-ସମାଲୋଚକ ଟି.ଏସ୍.ଇଲିଅଟ୍‌ଙ୍କ କଥା । ସେ ଥରେ କବି ଓ କବିତା ମଧ୍ୟରେ ଥିବା ସମ୍ପର୍କକୁ ସୂଚାଇବାକୁ ଯାଇ କହିଥିଲେ, "The mind of the poet is shred of platinum. It may partly or exclusively operate upon the experience of the man himself, but the more perfect the artist, the more completely separate in him will be the man who suffers and the mind which creates the more perfectly will the mind digest and transmute the previous which are its materials."[୫୧] ଏହି ମର୍ମରେ ଦେଖିବାକୁ ଗଲେ କବି କବିତା ସୃଷ୍ଟି କରନ୍ତି ସତ; ମାତ୍ର କବିତାର ଜନ୍ମ ପରେ କବି ଆଉ କବି ହୋଇ ରୁହନ୍ତି ନାହିଁ; ସେ ହୋଇ ଉଠନ୍ତି ସାଧାରଣ ପାଠକଟିଏ ମାତ୍ର । ତେବେ ଶ୍ରୀଧର ଦାସ ଏଠାରେ ସାଧାରଣ ପାଠକଟିଏ ମାତ୍ର ନୁହନ୍ତି । ନିଜର ପ୍ରଜ୍ଞାର କଷଟି ପଥରରେ ନିଜର କୃତିକୁ ସେ ପରୀକ୍ଷା କରି ନେଇଛନ୍ତି ଓ ପର ମୁହୂର୍ତ୍ତରେ

(୫୧) Tradition and Individual Talent / T.S. Eliot : Selected Essay / P. 18

ନିଜ କାବ୍ୟକୃତିରେ ସେ ଯେ ବହୁ ପଥ ଅତିକ୍ରମ କରିପାରିବେ ନାହିଁ ତାହାକୁ ଉପଲବ୍ଧି କରି ସେ କବିତାଠାରୁ କ୍ରମଶଃ ଦୂରେଇଯାଇ ବିଶେଷ ଭାବରେ ଗଦ୍ୟ ରଚନାରେ ନିଜର ମନୋନିବେଶ କରିଛନ୍ତି ।

କବି ଶ୍ରୀଧର ଯେତେବେଳେ କବିତା ରଚନା କରି ସହକାର ପୃଷ୍ଠାର ଜଣେ ଅନ୍ୟତମ କବି ଭାବରେ ପ୍ରସିଦ୍ଧି ଲାଭ କରୁଥିଲେ, ସେତେବେଳେ ମଧ୍ୟ ସେହି ସହକାର ପୃଷ୍ଠାରେ ଲେଖନୀ ଚାଳନା କରିଥିଲେ ସରଳା ଦେବୀ, ଉପେନ୍ଦ୍ର ତ୍ରିପାଠୀ, ଗଜେନ୍ଦ୍ର ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ ପ୍ରମୁଖ ଅନେକ କବି । କିନ୍ତୁ ଏହି କବିମାନେ ପ୍ରତ୍ୟେକ କବିତା ମାଧ୍ୟମରେ ସଂଗ୍ରାମ କରୁଥିବା ବେଳେ କବି ଶ୍ରୀଧର ଯେ କାହିଁକି ନିଜର 'ସରସୀ ସୁନ୍ଦରୀ'କୁ ଅନ୍ୟ ଜଣେ କବିଙ୍କ 'ସର ସୁନ୍ଦରୀ' ସହିତ ତୁଳନା କରି ନିଜ ସୃଷ୍ଟିକର୍ମରୁ କ୍ଷାନ୍ତ ରହିଗଲେ ଜାଣିହୁଏ ନାହିଁ । ସେ ଅବଶ୍ୟ ନିଜ ସମ୍ପର୍କରେ ସ୍ପଷ୍ଟ କରି ଉଲ୍ଲେଖ କରିଛନ୍ତି ଯେ, "+ + ବାସ୍ତବରେ 'ସର ସୁନ୍ଦରୀ' ଅନୁବାଦଟି" ମୋ ଅନୁବାଦ ଅପେକ୍ଷା ଉଚ୍ଚକୋଟୀର ଥିଲା । ମୋର ପଦ୍ୟ ଲେଖାଗୁଡ଼ିକ ନିମ୍ନସ୍ତରର ବୋଲି ମୁଁ ଅନୁଭବ କରିଥିଲି । ଏହାପରେ କବିତା ଲେଖା ଏକବାରେ ଛାଡ଼ିଦେଲି ।"[୫୨] କବି କବିତାଠାରୁ ଦୂରେଇ ଯାଇଛନ୍ତି । ମାତ୍ର କବିତା କବିଙ୍କ ଠାରୁ ଦୂରେଇ ଯାଇନି । କବିତା କ'ଣ କି ? ଏକ ପ୍ରକାର ତ ସବାର୍ । ତେଣୁ କବିଙ୍କର ଅନିଚ୍ଛା ସତ୍ତ୍ୱେ ମଧ୍ୟ କବିତା ଆପେ ଆପେ କବିଙ୍କ ନିକଟକୁ ଆସିଯାଇଛି ଓ ତାଙ୍କ ହୃଦୟରୁ କବିତା ଝରି ଆସିଛି ଠିକ୍ ଏକ ବେଗମତୀ ସ୍ରୋତସ୍ୱିନୀ ପରି ।

ଶ୍ରୀଧର ଦାସଙ୍କ ସେହି ସ୍ୱଳ୍ପ ପରିମାଣର କବିତାକୁ ବିଶ୍ଳେଷଣ କରାଗଲେ, ତାହା ଯେ ଏକାନ୍ତ ସଫଳ, ସାବଲୀଳ ଓ ସ୍ପଷ୍ଟ ତାହା ଉପଲବ୍ଧି କରିହୁଏ । ଏଠାରେ ସ୍କଟଙ୍କର ଅନ୍ୟ ଏକ କବିତା "Love of country"ର ଅନୁବାଦରୁ କିଛି ଅଂଶ ନିମ୍ନ କ୍ରମରେ ଉଲ୍ଲେଖ କରାଗଲା । ଅନୁବାଦଟିର ନାମ 'ସ୍ୱଦେଶ ପ୍ରେମ' । କବିତାର ଗୋଟିଏ ଅଂଶ ହେଉଛି ଏହିପରି :

"ଅଛି କି ଏମନ୍ତ ଜନ ଏ ଜଗତେ ?
ପାଷାଣେ ପରାଣ ବାନ୍ଧି ଅନୁବ୍ରତେ,
ବଚନେ ନ ଭାଷେ ଅମୃତ ବିଶେଷ
ଏ ମୋ ଜନ୍ମଭୂମି ଏହି ମୋ ସ୍ୱଦେଶ ।

---

(୫୨) ସୁଅ ମୁହଁର ପଟର / ଶ୍ରୀଧର ଦାସ / ପୃ : ୨୯୯

x x x x x x

ଥାଉ ତା'ର ନାମ ଥାଉ ଉଚ୍ଚପଦ
ଥାଉ ତା'ର ଶକ୍ତି, ଅତୁଳ ସମ୍ପଦ ।
ସବୁ ଅତି ତୁଚ୍ଛ ସବୁ ବୃଥା ସିନା,
ନ ବାଜିଲେ ହୃଦେ, ଦେଶ-ପ୍ରୀତି-ବୀଣା ।"

*(ସହକାର / ୮ମ ବର୍ଷ : ୩ୟ ଓ ୪ର୍ଥ ସଂଖ୍ୟା)*

ଅନୁବାଦ କର୍ମରେ ସବୁଠାରୁ ବଡ଼ କଥା ହେଉଛି ମୂଳ ସୃଷ୍ଟି କର୍ମ ସହିତ ଏକାନ୍ତ ଭାବରେ ଏକାତ୍ମ ନହେଲେ, ତାହାକୁ ଅନୁବାଦ କରିହେବ ନାହିଁ । ଦ୍ୱିତୀୟତଃ ମୂଳ କୃତିଟି ମଧ୍ୟ ନିଜ ରୁଚିର ଅନୁକୂଳ ହେବା ଏକାନ୍ତ ବିଧେୟ । ତେଣୁ ଉପରୋକ୍ତ ପଂକ୍ତିଟି ପାଠକଲେ କବିଙ୍କ ମନ ମଧ୍ୟରେ ଯେଉଁ ଆବେଗଟି ରହିଛି ତାହା ଯେ କେତେ ପରିମାଣରେ ଦେଶାନୁପ୍ରେମରେ ଅଭିଭୂତ ତାହା ଆକଳନ କରିହୁଏ ।

କେବଳ ଇଂରାଜୀ କବିତାର ଭାବାନୁବାଦ ନୁହେଁ, ଆମ ପ୍ରାଚ୍ୟ ସଂସ୍କୃତ ସାହିତ୍ୟରୁ ମଧ୍ୟ ସେ ବିଷୟ ବା ପ୍ରସଙ୍ଗକୁ ଚୟନ କରିଛନ୍ତି, ଏବଂ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି ମଧ୍ୟ । ଏହି ସୂତ୍ରରେ ସେ ଅନୁବାଦ କରିଥିବା 'ହଂସଦୂତ' କାବ୍ୟାନୁବାଦକୁ ମଧ୍ୟ ବିବେଚନା କରାଯାଇପାରେ । ତାହାର ଗୋଟିଏ ଅଂଶ ହେଉଛି ଏହିପରି :

"ହଂସ ! ପରାଣ ସ୍ୱାମୀ କୃଷ୍ଣ ଆମ୍ଭର
ରଥ ଆରୋହୀ ଯାନ୍ତେ ସହ ଅକ୍ରୂର ।।
ଦୂରୁଁ କରିଣ ଉଚ୍ଚ ସ୍ୱରେ ରୋଦନ
ଗୋପ ରମଣୀ କଲେ ଅନୁଗମନ ।।
ଯେ ପଥେ, ସେହି ପଥେ କର ଗମନ,
ନାଥକୁ କର ଆମ୍ଭ ଦୁଃଖ ଜ୍ଞାପନ ।।
ଅନନ୍ୟ ସାଧାରଣ ତୋର ଏ ଯଶ
ନିଶ୍ଚୟ ଧରା ତଳେ ହେବ ପ୍ରକାଶ ।।"[୫୩]

---

(୫୩) ଉଦ୍ଧୃତାଂଶଟି 'ସହକାର'ର ସ୍ୱନକ୍ଷତ୍ର ସଂଖ୍ୟା, ଜାନୁୟାରୀ-୨୦୦୫ର ପୃଷ୍ଠା ୪୩ରେ ପ୍ରକାଶ ପାଇଥିବା ପଠାଣି ପଟ୍ଟନାୟକଙ୍କର 'ଏକ ସ୍ମରଣୀୟ ବ୍ୟକ୍ତିତ୍ୱ - ଅଧ୍ୟାପକ ଶ୍ରୀଧର ଦାସ' ପ୍ରବନ୍ଧରୁ ସଂଗୃହୀତ ।

'ହଂସ ଦୂତ'ର ଏହି ଅଂଶଟି ପାଠ କଲେ ଏହାର ଭାଷା ଓ ବର୍ଣ୍ଣନା ଶୈଳୀ ଆମ ପ୍ରାଚୀନ ସାହିତ୍ୟର ଯେ କେତେ ନିକଟବର୍ତ୍ତୀ ତାହା ବେଶ୍ ଅନୁମାନ କରାଯାଇପାରେ । କେବଳ ଏତିକି ନୁହେଁ, କବି ଆର୍ଣ୍ଣଓଲଡ଼୍‌ଙ୍କ 'Shorab and Rustam'କୁ ମଧ୍ୟ ଅନୁବାଦ କରିଛନ୍ତି । ଅନୁବାଦିତ ପୁସ୍ତକ 'ସୋରାବ ଓ ରୁସ୍ତମ'ର 'ସୂଚନା'ରେ କବି ଶ୍ରୀଧର କହିଛନ୍ତି,—"x x ଆର୍ଣ୍ଣଓଲଡ଼୍‌ଙ୍କ 'Shorab and Rustam'କୁ ଅବଲମ୍ବନ କରି ଏହି ପୁସ୍ତିକାଟି ଲିଖିତ । ତେଣୁ ମୂଳ କାବ୍ୟର ଏହା ପ୍ରତିଛାୟା ମାତ୍ର । ଏଥିରେ ମୂଳ ଲେଖାର ସରସତା ଆଶା କରାଯାଇ ନପାରେ । ମାତ୍ର ପାର୍ଶି ଓ ଇଂରାଜୀ-ଅନଭିଜ୍ଞ ଓଡ଼ିଆ ପାଠକମାନଙ୍କୁ କିଞ୍ଚିତ ଆନନ୍ଦ ଦାନ କରିପାରିଲେ ପୁସ୍ତିକାର ଉଦ୍ଦେଶ୍ୟ ସଫଳ ହୋଇଅଛି ବୋଲି ମନେକରିବି ।"(୫୪) କବି ଶ୍ରୀଧର କାବ୍ୟାନୁବାଦ କଲାବେଳେ ମୂଳ ସାହିତ୍ୟ ପଠନର ମୌଳିକ ଉଦ୍ଦେଶ୍ୟ 'ଆନନ୍ଦ' ପ୍ରାପ୍ତି କଥାକୁ ଭୁଲି ନାହାନ୍ତି । ତେଣୁ ପାଠକଙ୍କୁ ଆନନ୍ଦିତ କରିବା ଉଦ୍ଦେଶ୍ୟରେ ସେ କାବ୍ୟାନୁବାଦ କ୍ଷେତ୍ରରେ ମଧ୍ୟ ନିଜର ଲେଖନୀ ଚାଳନା କରିଛନ୍ତି ।

ପ୍ରଫେସର ପୋଷ୍ଟଗେଟ୍ (Postgate) ତାଙ୍କର 'Translation and Translations' ପ୍ରବନ୍ଧରେ ଅନୁବାଦ ସମ୍ପର୍କରେ ଯାହା ପ୍ରକାଶ କରିଥିଲେ ଯେ, ଗଦ୍ୟର ଅନୁବାଦ ଗଦ୍ୟରେ ଓ ପଦ୍ୟର ଅନୁବାଦ ପଦ୍ୟରେ ହେବା ବିଧେୟ ବୋଲି, ତାହାର ଅନ୍ତର୍ନିହିତ ଉଦ୍ଦେଶ୍ୟକୁ ଠିକ୍ ଭାବରେ ବୁଝିଥିଲେ ଅଧ୍ୟାପକ ଶ୍ରୀଧର ଦାସ । ତେଣୁ ସେ ଯେତେସବୁ ପଦ୍ୟ ବା କାବ୍ୟକୁ ଅନୁବାଦ କରିଛନ୍ତି ତାକୁ ଗଦ୍ୟରେ ନକହି କରିଛନ୍ତି ସେହି କାବ୍ୟରେ ବା କବିତାରେ । ଅନ୍ୟପକ୍ଷରେ ଯଦି ତାଙ୍କ କାବ୍ୟାନୁବାଦ ସେତେ ସରସ ନ ହେଉଥାନ୍ତା ବା ପାଠକେ ଯଦି ସେଥିରୁ ଆନନ୍ଦ ନ ପାଉଥାନ୍ତେ ତେବେ ତାଙ୍କର ସେହି 'ସୋରାବ ଓ ରୁସ୍ତମ୍' ଦ୍ୱିତୀୟ ସଂସ୍କରଣରେ ମୁଦ୍ରିତ ହେଲା କାହିଁକି ? ଏହିସବୁ ଆନୁଷଙ୍ଗିକ ତଥ୍ୟକୁ ବିବେଚନା କଲେ ସ୍ପଷ୍ଟ ଭାବରେ ଜଣାପଡ଼େ ଯେ, ଛାତ୍ର ଶ୍ରୀଧରଙ୍କ ମନରେ ଯେଉଁ ତୁଳନାତ୍ମକ ସ୍ତରୀୟ ସ୍ୱସିଦ୍ଧାନ୍ତଟି ମନରେ ବସା ବାନ୍ଧି ହୋଇଯାଇଥିଲା, ତାହାର ପ୍ରଭାବ ପରବର୍ତ୍ତୀ କାଳରେ ନିଜର ତରୁଣ ବା ପ୍ରବୀଣ ଅବସ୍ଥାକୁ ମଧ୍ୟ ଆକ୍ରାନ୍ତ କରିଛି । ମାତ୍ର ତାଙ୍କ ଅଲକ୍ଷ୍ୟରେ ଯେ ତାଙ୍କ କବିତା କେତେ ଉତ୍କର୍ଷତା ଲାଭ କରିସାରିଛି, ତାହାକୁ ସେ ବୋଧହୁଏ ଆଉ ଉପଲବ୍ଧି କରିପାରିନାହାନ୍ତି । କସ୍ତୁରୀ ମୃଗସମ ସେ ନିଜର ଗୌରବକୁ ପଦ୍ୟ ମଧ୍ୟରେ ଆବିଷ୍କାର କରିବା ପରିବର୍ତ୍ତେ

(୫୪) 'ସୋରାବ ଓ ରୁସ୍ତମ'ର ସୂଚନା / ଦ୍ୱିତୀୟ ମୁଦ୍ରଣ / ଉତ୍କଳ ସାହିତ୍ୟ ପ୍ରେସ୍ - କଟକ / ୧୯୪୯

ଗଦ୍ୟ ମଧ୍ୟରେ ଆବିଷ୍କାର କରିଛନ୍ତି ଓ ଗଦ୍ୟଧାରାରେ ନିମଗ୍ନ ହୋଇ ଉଠିଛନ୍ତି । ତେବେ ପଦ୍ୟଧାରାକୁ ବଳବତ୍ତର ରଖିଥିଲେ, ସେ ଯେ ପରବର୍ତ୍ତୀ କାଳରେ ଜଣେ ଭଲ କବିଟିଏ ନହୋଇପାରିଥାନ୍ତେ, ତାହା କିଏ କହିବ ? ଗଦ୍ୟ ମଧ୍ୟରେ ମଜ୍ଜି ରହିଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ କବିତାର ମୋହକୁ ସେ ତୁଟାଇ ପାରିନାହାନ୍ତି । ଯେତେବେଳେ କବିପ୍ରାଣଟି ଚଳଚଞ୍ଚଳ ହୋଇଉଠିଛି, ସେତେବେଳେ ତାଙ୍କ ହୃଦୟରୁ ଝରି ଆସିଛି କବିତା । ସେ କବିତା ବଉଦରେ ଥିବାବେଳେ 'ଶ୍ରୀମାନ ରାଜା ଶ୍ରୀ ନାରାୟଣ ପ୍ରସାଦ ଦେବଙ୍କ ସିଂହାସନ ପ୍ରାପ୍ତିର ଅଷ୍ଟମ ବାର୍ଷିକ ଉତ୍ସବ ଉପଲକ୍ଷେ' ହେଉ ବା 'ବଉଦ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଉଦ୍‌ଘାଟନ ଉପଲକ୍ଷେ ହେଉ; ମାସିକ ସାହିତ୍ୟ ପତ୍ରିକା ସହକାରରେ ପ୍ରକାଶ ପାଇଥିବା 'ରେଣୁ' କବିତା ହେଉ ବା ଅବସର କାଳରେ ଲିଖିତ 'କଠୋପନିଷଦ୍' (ଅପ୍ରକାଶିତ ଓ ଅସମ୍ପୂର୍ଣ୍ଣ) ହେଉ—କବିତା କବିଙ୍କ ମାଧ୍ୟମ ଦେଇ ଆତ୍ମପ୍ରକାଶ କରିବ ହିଁ କରିବ । ଆଉ ସେତେବେଳେ ପାଠକ ଶ୍ରୀଧର ଦାସ ବା ସମାଲୋଚକ ଶ୍ରୀଧର ଦାସ ଶତଚେଷ୍ଟା କରି ମଧ୍ୟ ସେହି କବି ପ୍ରାଣର ସ୍ରୋତସ୍ୱିନୀ ଧାରାକୁ କେବେ ଅଟକାଇପାରିବେ ନାହିଁ । ତେଣୁ ପରିଶେଷରେ ଏତିକିମାତ୍ର କୁହାଯାଇପାରିବ ଯେ, ସେ କବିତା ଲେଖାକୁ ଅବ୍ୟାହତ ରଖିଥିଲେ ସମକାଳୀନ ଅନ୍ୟାନ୍ୟ କବିଙ୍କ ପରି ନିଶ୍ଚିତ ଭାବରେ ଜଣେ ପ୍ରତିଷ୍ଠିତ କବି ହୋଇପାରିଥାନ୍ତେ । ମାତ୍ର ସେ ଜାଣିଶୁଣି ଏକ ଅହେତୁକ ସ୍ୱୀୟ ସିଦ୍ଧାନ୍ତର ବଶବର୍ତ୍ତୀ ହୋଇ କବିତା ରାଜ୍ୟରୁ ବିଦାୟ ନେଇ ଗଦ୍ୟ ରଚନା କରିଥିଲେ ମଧ୍ୟ କବି ପ୍ରେୟସୀ ତାଙ୍କୁ ଶେଷ ପର୍ଯ୍ୟନ୍ତ ଆକୃଷ୍ଟ କରି ରଖିଛି ଓ କବି ଶ୍ରୀଧର କବିତାର ମୋହରେ ଶେଷ ପର୍ଯ୍ୟନ୍ତ ମଧ୍ୟ ବାନ୍ଧି ହୋଇ ରହିଛନ୍ତି ।

***

# ବ୍ୟକ୍ତିତ୍ୱର ବିଭିନ୍ନ ଦିଗ

ଅଧ୍ୟାପକ ଶ୍ରୀଧର ଦାସ ଏକାଧାରାରେ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ତାଙ୍କୁ ନିକଟରୁ ଦେଖିଥିବା ବ୍ୟକ୍ତି ମଧ୍ୟ ବିଶ୍ୱାସ କରିପାରନ୍ତି ନାହିଁ ଯେ, ସେ ଏତେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବୋଲି । ଏହି ପ୍ରସଙ୍ଗରେ ମନେପଡୁଛି ଅଧ୍ୟାପକ ଶ୍ରୀ ପ୍ରଭାତ କୁମାର କରଙ୍କର ସ୍ୱୀକାରୋକ୍ତି । ସେ କହିଛନ୍ତି, "ମୁଁ ଖ୍ରୀଷ୍ଟ କଲେଜରେ Join କରିବାର ପ୍ରଥମ ଷ୍ଟାଫ ମିଟିଂ ପରେ ମୋର ଧାରଣା ଭିନ୍ନ ମୋଡ଼ ନେଲା । ମନେ ମନେ ତାଙ୍କର ଆକଳନ କରିବା ପାଇଁ ମୋ ମନ ଭିତରେ କିଏ ଯେମିତି ଖେଞ୍ଚ ମାରିଲା । ଯାରେ, ଏ ଲୋକ ଏମିତି ସାଦାସିଧା, ଏମିତି ବେଶଭୂଷା, ଦେଖିଲେ ଜଣେ ବରିଷ୍ଠ ଅଧ୍ୟାପକ ଭଳି ଦିଶନ୍ତିନି—ଏ ପୁଣି ଏଡ଼େ କର୍ମଯୋଗୀ, କର୍ତ୍ତବ୍ୟ ପରାୟଣ ଓ ନିରଳସ ବ୍ୟକ୍ତିତ୍ୱର ଅଧିକାରୀ !! x x x ଏ ସାଦାସିଧା କଚ୍ କଚ୍ ପାନଖିଆ ଲୋକଟିର ପୁଣି ଏଡ଼େ ମହାତ୍ମ୍ୟ !!"(୫୫) ବାସ୍ତବରେ ଅଧ୍ୟାପକ ଶ୍ରୀଧର ଦାସଙ୍କର ବାହାରକୁ ଦିଶୁଥିବା ରୂପ, ବେଶଭୂଷା ଓ ତାଙ୍କ ଅନ୍ତର ମଧ୍ୟରେ ଥିବା ଜ୍ଞାନ, ଗୁଣ, ସ୍ନେହ, ମମତା, ପ୍ରଜ୍ଞା ଓ ମନନଶୀଳତା ମଧ୍ୟରେ ତାଳମେଳ ନଥିଲେ ମଧ୍ୟ, ତାହା ହିଁ ସତ୍ୟ ଯେ, ଏତେ ସରଳ ଓ ନିରଳସ ମଣିଷଟି ହେଉଛନ୍ତି ଅଶେଷ ଜ୍ଞାନର ଅଧିକାରୀ ଓ ସମସ୍ତ ଆଖିରେ ହୋଇଉଠିଛନ୍ତି 'ଚଳନ୍ତି ଜ୍ଞାନକୋଷ' ।

ଏହି ମର୍ମରେ ତାଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଦିଗଗୁଡ଼ିକୁ ଆଲୋଚନା ନକଲେ ତାଙ୍କ ବ୍ୟକ୍ତିତ୍ୱକୁ ପୂର୍ଣ୍ଣମାତ୍ରାରେ ଅବବୋଧ କରିହେବ ନାହିଁ । ତେଣୁ ଏହି ପୁସ୍ତକରେ ତାଙ୍କ ବିଶାଳ ବ୍ୟକ୍ତିତ୍ୱ ମଧ୍ୟରୁ ମାତ୍ର ୧୦ (ଦଶ) ଗୋଟି ଦିଗ ପ୍ରତି ଆଲୋକପାତ କରିବାର ପ୍ରୟାସ କରାଯାଇଛି ।

---

(୫୫) ଶ୍ରୀଧର ସ୍ମରଣେ / ସଂ : ଅଧ୍ୟାପକ ହେମନ୍ତ କୁମାର ପରିଡ଼ା / ପ୍ରକାଶକ : ରଘୁନାଥଜୀଉ ମହାବିଦ୍ୟାଳୟ, ଦେଉଳସାହି, କଟକ-୮/ପ୍ରଥମ ପ୍ରକାଶ-୧୯୯୭ / ପୃ : ୨୬-୨୭

## (କ) ଶିକ୍ଷକ

ଅଧ୍ୟାପକ ଶ୍ରୀଧର ଦାସଙ୍କର ବୃତ୍ତିଗତ ଜୀବନର ଶୁଭାରମ୍ଭ ଘଟିଥିଲା ଶିକ୍ଷକତାରୁ । ସେଦିନ ୧୯୨୪ ମସିହାରେ ଛାତ୍ର ଶ୍ରୀଧର ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନୀରବରେ ଘରେ ବସିଥାନ୍ତି । ଘରର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନଥିବାରୁ ଶ୍ରୀ ଦାସ ସେ ଦିଗରେ ଯେତିକି ଚିନ୍ତିତ ରହୁଥିଲେ, ତତୋଽଧିକ ପରିମାଣରେ ମଧ ଉଦ୍‌ବିଗ୍ନ ହୋଇଉଠୁଥିଲେ ନିଜ ମଧରେ କ୍ରମଶଃ ବୃଦ୍ଧି ପାଉଥିବା ଅଧୟନର ଆକାଙ୍‌କ୍ଷାକୁ ଚରିତାର୍ଥ କରିବା ପାଇଁ । ଏହିଭଳି ଏକ ଗମ୍ଭୀର ମୁହୂର୍ତ୍ତ ମଧରେ ସେ କାଳାତିପାତ କରୁଥିବାବେଳେ ହଠାତ୍ ସେ ଗୋଟିଏ ଆଶାର ଆଲୋକ ପାଆନ୍ତି, ଯେତେବେଳେ ନିଜର ପ୍ରିୟ ଗୁରୁ ପଣ୍ଡିତ ଜଗନ୍ନାଥ ରଥ ତାଙ୍କୁ ଗୋଟିଏ ଚାକିରି କରିବାର ପ୍ରସ୍ତାବ ଦିଅନ୍ତି । ସେତେବେଳେ ବୀର ନରସିଂହପୁର ଠାରେ ଥିବା ବିଶ୍ୱନାଥ ମି.ଇ. ବିଦ୍ୟାଳୟରେ ଗୋଟିଏ ପ୍ରଧାନ ଶିକ୍ଷକ ପଦ ଅସ୍ଥାୟୀ ଭାବରେ ଖାଲି ପଡ଼ିଥାଏ । ପଣ୍ଡିତ ଶ୍ରୀଯୁକ୍ତ ରଥ ମହାଶୟ ଶ୍ରୀଧରଙ୍କୁ ସେହି ପଦବୀକୁ ପୂର୍ଣ୍ଣ କରିବା ପାଇଁ ପ୍ରେରଣାତ୍ମକ ପତ୍ରଟିଏ ଦିଅନ୍ତି । ପତ୍ରଟି ପାଇବା ପରେ ତାଙ୍କ ଧମନୀରେ ପ୍ରବାହିତ ହେଉଥିବା ଶିକ୍ଷକ ରକ୍ତ ଯେପରି ଉଦ୍‌ବେଳିତ ହୋଇଉଠେ । ଅନ୍ୟପକ୍ଷରେ ପିତାଙ୍କର ମଧ ନିର୍ଦ୍ଦେଶ ଓ ଆଶୀର୍ବାଦ ତାଙ୍କ ଚଳାପଥକୁ କୁସୁମିତ କରି ତୋଳେ । ସେ ମାତ୍ର ୯ ମାସ ପାଇଁ ବିଶ୍ୱନାଥପୁର ମି.ଇ. ସ୍କୁଲରେ ପ୍ରଧାନଶିକ୍ଷକ ଭାବରେ ଅବସ୍ଥାପିତ ହୁଅନ୍ତି ।

ବିଶ୍ୱନାଥପୁର ମି.ଇ. ସ୍କୁଲର ଅନୁଭୂତି କିନ୍ତୁ ବିଚିତ୍ରବର୍ଣ୍ଣା । ସେତେବେଳେ ସେହି ସ୍କୁଲରେ ଥିଲା ଚାରିଗୋଟି ଶ୍ରେଣୀ ଓ ଶିକ୍ଷକଙ୍କ ସଂଖ୍ୟା ଥିଲା ମଧ ଚାରି । ଶ୍ରୀଧର ଦାସ ହେଲେ ପ୍ରଧାନଶିକ୍ଷକ, ଦ୍ୱିତୀୟ ଶିକ୍ଷକ ଥିଲେ ଶ୍ରୀ ନୀଳକଣ୍ଠ ରଥ, ହେଡ୍‌ପଣ୍ଡିତ ଥିଲେ ଶ୍ରୀଯୁକ୍ତ ଲୋକନାଥ ପାଟଯୋଷୀ, ଦ୍ୱିତୀୟ ପଣ୍ଡିତ ମଧ ଥିଲେ ଶ୍ରୀଯୁକ୍ତ ନୀଳକଣ୍ଠ ମିଶ୍ର । ସମସ୍ତଙ୍କ ମଧରେ ଶ୍ରୀଯୁକ୍ତ ପାଟଯୋଷୀ କେବଳ ବୟୋଜ୍ୟେଷ୍ଠ ନଥିଲେ, ଥିଲେ ମଧ ଜଣେ ବିଚକ୍ଷଣ ଓ ପ୍ରଚଣ୍ଡ ପ୍ରତିଭା ସମ୍ପନ୍ନ ବ୍ୟକ୍ତି । ତାଙ୍କର ବିଦ୍‌ବତ୍ତା ସମସ୍ତଙ୍କ ଦ୍ୱାରା ସ୍ୱୀକୃତ ହେଉଥିଲା । ତାଙ୍କର ସମସ୍ତ ଭଲ ଗୁଣ ମଧରେ ଗୋଟିଏ ମାତ୍ର ଖରାପ ସ୍ୱଭାବ ଥିଲା । ତାହା ହେଉଛି ତାଙ୍କର ଅଫିମ ଖାଇବା ନିଶା । ଅନେକ ସମୟରେ ଶ୍ରୀଧର ଦାସ ଜ୍ୱରରେ ପଡୁଥିବାରୁ ପଣ୍ଡିତ ମହାଶୟେ ତାଙ୍କୁ ସୋରିଷ ପରିମାଣରେ ଅଫିମ ଖାଇବାକୁ ଉପଦେଶ ପ୍ରଦାନ କରୁଥିଲେ । ମାତ୍ର ଶ୍ରୀଧର ଦାସ କେବେ ସେହି ପ୍ରରୋଚନାରେ ଉଦ୍‌ବୁଦ୍ଧ ହୋଇନାହାନ୍ତି । ମାତ୍ର ତାଙ୍କର ବିଦ୍‌ବତ୍ତାକୁ ସମ୍ମାନ ଜଣାଇଛନ୍ତି ।

ବିଶ୍ୱନାଥପୁର ମି.ଇ. ସ୍କୁଲରେ ଶିକ୍ଷକତାର ସମୟ କାଳ ପୂର୍ଣ୍ଣ ହୋଇଆସିବା ବେଳକୁ ପୁରୀ ଜିଲ୍ଲା ବୋର୍ଡ ସ୍ଥିର କଲେ ଯେ, ସେ ସମୟର ସମସ୍ତ ଭର୍ଣ୍ଣାକୁଲାର ସ୍କୁଲକୁ ସାହାଯ୍ୟପ୍ରାପ୍ତ ମାଇନର ସ୍କୁଲରେ ପରିଣତ କରିଦିଆଯିବ । ଏହି ସୂତ୍ରରେ କାକଟପୁରର ମି.ଇ. ସ୍କୁଲଟି ମଧ୍ୟ ସାହାଯ୍ୟପ୍ରାପ୍ତ ସ୍କୁଲରେ ପରିଣତ ହେଲା । ଏହି ସ୍କୁଲଟିରେ ମଧ୍ୟ ପ୍ରଧାନଶିକ୍ଷକ ପଦବୀ ପାଇଁ ଶ୍ରୀଧର ଦାସଙ୍କୁ ଆମନ୍ତ୍ରଣ କରାଗଲା । ସେ ଅଞ୍ଚଳର ତତ୍କାଳୀନ ଓକିଲ ରାୟ ସାହେବ ବ୍ରହ୍ମାନନ୍ଦ ମହାନ୍ତିଙ୍କର ପ୍ରସ୍ତାବ କ୍ରମେ ଶ୍ରୀଧର ସେହି ସ୍କୁଲରେ ପ୍ରଧାନଶିକ୍ଷକ ଭାବେ ଯୋଗ ଦିଅନ୍ତି । ହେଡ୍‌ପଣ୍ଡିତ ଥାଆନ୍ତି ଶ୍ରୀଯୁକ୍ତ ଗୋପୀନାଥ ଦୀକ୍ଷିତ । ଏହି ଦୀକ୍ଷିତ ମହାଶୟ କିନ୍ତୁ ବେଶ ସ୍ୱଚ୍ଛଳ ଆର୍ଥିକ ଦୃଷ୍ଟିକୋଣରୁ । ତାଙ୍କର ବିପୁଳ ଧନ ଥିଲା । ସେ ଥରେ ଶ୍ରୀଧର ଦାସଙ୍କୁ ଏକ ବିଶେଷ ଉପଦେଶ ଦେଇଥିଲେ, ତାହା ହେଉଛି ଯିଏ ଅଧିକ ଅର୍ଜନ କରେ ସେ କେବେ ଧନୀ ହୋଇପାରେ ନାହିଁ । ବରଂ ଯିଏ କମ୍ ଖର୍ଚ୍ଚ କରେ ସିଏ ଧନୀ ହୋଇପାରିବ । ଏହି ଉପଦେଶଟି ଶ୍ରୀଧର ଦାସଙ୍କ ଜୀବନକୁ ବହୁ ପରିମାଣରେ ପ୍ରଭାବିତ କରିଥିଲା । ତେଣୁ ସେ ଥିଲେ ପୂର୍ଣ୍ଣମାତ୍ରାରେ ମିତବ୍ୟୟୀ । ଯାହା ଏକାନ୍ତ ଭାବରେ ଖର୍ଚ୍ଚ ହେବାର କଥା, ତାହାହିଁ ସେ ଖର୍ଚ୍ଚ କରନ୍ତି । ଅଯଥା ଖର୍ଚ୍ଚକୁ ସେ ଉପେକ୍ଷା କରିଯାନ୍ତି । ଶେଷ ପର୍ଯ୍ୟନ୍ତ ସେ ଏହି ଧାରାରେ ନିଜକୁ ଗତି କରାଇ ନେଇଥିଲେ ।

ଏହା ମଧ୍ୟରେ ଶ୍ରୀଧର ଦାସ ବି.ଏ. ପାଶ୍ କରିସାରିବା ପରେ ଆଉ ମି.ଇ. ସ୍କୁଲରେ ରହିବାକୁ ଇଚ୍ଛା କରନ୍ତି ନାହିଁ । ମନ ହାଇସ୍କୁଲ ଆଡ଼କୁ ବ୍ୟାକୁଳିତ ହୁଏ । ତେଣୁ ସୁଯୋଗ କ୍ରମେ ସେ ଓଳସିଂହ ହାଇସ୍କୁଲରେ ଜଣେ ସହକାରୀ ଶିକ୍ଷକ ଭାବରେ ଯୋଗଦାନ କରନ୍ତି । ଏହି ହାଇସ୍କୁଲଟି ସେତେବେଳେ ସ୍ଥାନୀୟ ଜମିଦାର ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ ନିର୍ମାଣ କରାଯାଇଥିଲା । ସେଠାରେ ପ୍ରଧାନଶିକ୍ଷକ ଥାଆନ୍ତି ଶ୍ରୀ ଜଗମୋହନ ପଟ୍ଟନାୟକ । ସେ ଆଇ.ଏ. ପାଶ୍ କରିଥିଲେ । ମାଇନର ସ୍କୁଲ ଥିବାବେଳେ ସେ ହିଁ ପ୍ରଧାନଶିକ୍ଷକ ଥିଲେ । ତେଣୁ ହାଇସ୍କୁଲ ବେଳେ ମଧ୍ୟ ତାଙ୍କୁ ସମ୍ମାନ ଜଣାଇ ପ୍ରଧାନଶିକ୍ଷକ କରାଯାଇଥିଲା । ମାତ୍ର ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଶ୍ରୀଯୁକ୍ତ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି.ଏ. (ଅନର୍ସ) ଅଧ୍ୟୟନ କରିଥିବାରୁ ସେ ପ୍ରଧାନଶିକ୍ଷକ ଜଗମୋହନବାବୁଙ୍କର ବିରୋଧୀ ଥିଲେ । ଏହା ମଧ୍ୟରେ ଜଗମୋହନବାବୁ ବି.ଏ. ପରୀକ୍ଷା ଦେବାପାଇଁ ଉଦ୍ୟମ କରି ଅକୃତକାର୍ଯ୍ୟ ହେବାରୁ ବିଚ୍ଛନ୍ଦ ଚରଣ ନିଜେ ପ୍ରଧାନଶିକ୍ଷକ ହେବାପାଇଁ ଷଡ଼ଯନ୍ତ୍ର ଆରମ୍ଭ କଲେ । କ୍ରମେ ପରିସ୍ଥିତି ଅତ୍ୟନ୍ତ ଜଟିଳ ହେବାରୁ ସେ ସେହି ସ୍ଥାନକୁ ତ୍ୟାଗ କରିବା ପାଇଁ ସିଦ୍ଧାନ୍ତ କରିନେଲେ ଓ ସୁଯୋଗ କ୍ରମେ ସ୍କୁଲର ସେକ୍ରେଟାରୀ ତଥା ପ୍ରତିଷ୍ଠାତା ଶ୍ରୀ ଦାଶରଥି ପଟ୍ଟନାୟକଙ୍କ ସୁପାରିଶ ନେଇ ଟ୍ରେନିଂ

କଲେଜ୍‌ରେ ଡି.ଇଡି. ପଢ଼ିବାକୁ ଦରଖାସ୍ତ କରନ୍ତି ଓ ପରେ ପରେ ସ୍କୁଲ ତ୍ୟାଗ କରନ୍ତି । ଡି.ଇଡି.ର ଟ୍ରେନିଂ ପରେ ପୁଣି ବାଧ୍ୟବାଧକତାରେ ଅନନ୍ୟୋପାୟ ନଦେଖି ସେ ଓଳସିଂହ ହାଇସ୍କୁଲକୁ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ଭାବରେ ଫେରନ୍ତି । ପୂର୍ବର ଅଶାନ୍ତ ବାତାବରଣରେ ସାମାନ୍ୟ ଶିଥିଳତା ଦେଖାଦେଇଥିଲେ ମଧ୍ୟ ପୂର୍ଣ୍ଣମାତ୍ରାରେ ନିର୍ବାପିତ ହୋଇନଥାଏ । ଶିକ୍ଷକ ଶ୍ରୀଧର ସେଠାରେ ବୃତ୍ତିଗତ ଭାବରେ କାର୍ଯ୍ୟ କରୁଥିଲେ ମଧ୍ୟ ଆତ୍ମାରେ ଆଦୌ ଶାନ୍ତି ପାଇପାରୁନଥାନ୍ତି । ତେଣୁ ମନ ଆହୁରି ଉପରକୁ ଉଠିବା କାମନା ପୋଷଣ କରୁଥାଏ ।

ଏହିଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବଉଦ ଷ୍ଟେଟ୍‌ର କିଙ୍ଗ୍ ଏଡ୍‌ୱାର୍ଡ ସପ୍ତମ ସ୍କୁଲ ପାଇଁ ଜଣେ ଟ୍ରେନିଂପ୍ରାପ୍ତ ଗ୍ରାଜୁଏଟ୍ ହେଡ୍‌ମାଷ୍ଟରର ଆବଶ୍ୟକତା ସଂକ୍ରାନ୍ତୀୟ ଏକ ବିଜ୍ଞାପନ ତାଙ୍କର ଦୃଷ୍ଟିଗୋଚରରେ ହୁଏ । ଶିକ୍ଷକ ଶ୍ରୀଧର ସେହି ବଉଦ ଷ୍ଟେଟ୍‌ର ସ୍କୁଲ ପାଇଁ ତତ୍‌କ୍ଷଣାତ୍ ଦରଖାସ୍ତଟିଏ କରିଦିଅନ୍ତି । ମନରେ କିନ୍ତୁ ଗଡ଼ଜାତ ଅଞ୍ଚଳ ପ୍ରତି ଏକପ୍ରକାର ଭୟ ରହିଥାଏ । ନୂଆ ଜାଗାକୁ ନୂଆ ଚାକିରି । ମାତ୍ର ମନରେ ଯଥେଷ୍ଟ ସାହସ ଭରି ଦେଇଥାନ୍ତି ପୁରୀ ଜିଲ୍ଲାର ସ୍କୁଲ ବିଭାଗୀୟ ଇନିସ୍‌ପେକ୍ଟର ଶ୍ରୀଯୁକ୍ତ ଲୋକନାଥବାବୁ । ସେ ଗଡ଼ଜାତ ଅଞ୍ଚଳ ଚାକିରି ସମ୍ବନ୍ଧରେ ବୁଝାଇ କହିଥିଲେ ଯେ, ଇଂରେଜ ସରକାରଙ୍କ ଅଧୀନରେ ଚାକିରର ଠିକ୍ ତଳକୁ ହେଉଛି ଗଡ଼ଜାତ ରାଜ୍ୟ ଅଧୀନରେ ଚାକିରି କରିବା । ବାସ୍ତବରେ ଯେତେବେଳେ ଶ୍ରୀଧର ଦାସ ଗଡ଼ଜାତ ଅଞ୍ଚଳରେ ଚାକିରି କଲେ, କଥାର ସତ୍ୟତାକୁ ପୂର୍ଣ୍ଣମାତ୍ରାରେ ହୃଦୟଙ୍ଗମ କଲେ । ସ୍କୁଲରେ ଚତୁର୍ଥ ଶ୍ରେଣୀ ଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନର ବ୍ୟବସ୍ଥା ରହିଥିଲା । ପାଠୋପକରଣ ମଧ୍ୟ ପର୍ଯ୍ୟାପ୍ତ ପରିମାଣରେ ଥିଲା । ଅନ୍ୟାନ୍ୟ ଶିକ୍ଷକମାନେ ମଧ୍ୟ ଅତ୍ୟନ୍ତ କର୍ମଠ ଥିଲେ । ଏହିଭଳି ଏକ ପରିବେଶରେ ଶ୍ରୀଧର ପ୍ରଧାନ ଶିକ୍ଷକ ଭାବରେ ଅବସ୍ଥାପିତ ହୋଇ ନିଜକୁ ଗୌରବାନ୍ୱିତ ମନେ କରିବା ସଙ୍ଗେ ସଙ୍ଗେ ନିଜକୁ ଏକ ଉପଯୁକ୍ତ କାର୍ଯ୍ୟକ୍ଷେତ୍ର ମିଳିଛି ବୋଲି ଅନୁଭବ କରନ୍ତି ।[୫୬]

ବଉଦର କିଙ୍ଗ୍ ଏଡ୍‌ୱାର୍ଡ ସ୍କୁଲର ଚାକିରିର ଅନନ୍ୟତା ଶିକ୍ଷକ ଶ୍ରୀଧରଙ୍କୁ ବହୁଳ ମାତ୍ରାରେ ଅଭିଭୂତ କରିବା ସଙ୍ଗେ ସଙ୍ଗେ ସେଠାକାର ଭାଷାର ସ୍ୱକୀୟତା ତାଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ଚାକିରିରେ ଯୋଗ ଦେବାର ମାତ୍ର ଅଳ୍ପ କେତେଦିନ ପରେ ସ୍କୁଲରେ ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷା ଆରମ୍ଭ ହୁଏ । ଶ୍ରୀଧର ଦାସ ଥାଆନ୍ତି ପରୀକ୍ଷାର ସୁପରିଣ୍ଟେଣ୍ଡେଣ୍ଟ । ପରୀକ୍ଷାର ରୀତି ଥାଏ ମୌଖିକ । ତେଣୁ ଛାତ୍ର-ଛାତ୍ରୀମାନେ ଯେଉଁ ଉତ୍ତର ଦିଅନ୍ତି, ତାହାର କେତେକ ଶବ୍ଦ ତାଙ୍କ ପାଇଁ ଅତ୍ୟନ୍ତ ଦୁର୍ବୋଧ୍ୟ ଥିଲା । ସେହି

(୫୬) ସୁଅ ମୁହଁର ପତର - ପୃ : ୧୩୩

ସ୍କୁଲର ତତ୍କାଳୀନ ପଣ୍ଡିତଙ୍କ ସାହାଯ୍ୟ ନେଇ ଯଦିଓ ସେ ଛାତ୍ର-ଛାତ୍ରୀଙ୍କ ବ୍ୟବହୃତ ଦୁର୍ବୋଧ ଶବ୍ଦର ଅର୍ଥ ଜାଣିଲେ ଓ ପିଲାମାନଙ୍କର ପରୀକ୍ଷାକୁ ସମ୍ପାଦନ କଲେ, ତେବେ ତାଙ୍କ ମନରେ ଏହିଭଳି ଭାଷା ପ୍ରତି ଏକ ଅହେତୁକ ଆଗ୍ରହ କ୍ରମେ ଜାଗିଉଠିଲା । ଯେପରି 'ମୁନ୍‌ଗା', ଯାହାର ଅର୍ଥ 'ସଜନା' ବା 'ମାଖନ' ଯାହାର ଅର୍ଥ ହେଉଛି 'ବୋଇତି କଖାରୁ' ଇତ୍ୟାଦି । ଏହି ସୂତ୍ରରେ ସେ ସେଦିନ 'ବଉଦର ଭାଷା'କୁ ନେଇ ଗୋଟିଏ ପ୍ରବନ୍ଧ ରଚନା କରିବାକୁ ମନସ୍ଥ କରିଥିବେ । ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି 'ବଉଦର ଭାଷା' ପ୍ରବନ୍ଧଟି ଥିଲା କିନ୍ତୁ ଅନନ୍ୟ ।[୫୭] ତେବେ ବଉଦର ଅଳ୍ପ ଶିକ୍ଷିତ ଲୋକମାନେ କିନ୍ତୁ ଏହାକୁ ବୁଝିଲେ ବିପରୀତ ଭାବରେ । କଟିକିଆ ଲୋକ ଗଡ଼ଜାତର ଭାଷାକୁ ଥଟ୍ଟା କରୁଛନ୍ତି ବୋଲି ଅଯଥା ଅପଯଶରେ ଭାଗୀ ହୋଇଗଲେ ଶ୍ରୀଧର । ଆଉ ପରବର୍ତ୍ତୀ କାଳରେ ସେହି ପ୍ରବନ୍ଧର ପୂର୍ଣ୍ଣାଙ୍ଗ କଳେବରର ସ୍ୱପ୍ନକୁ ସେ ନିଜର ଅନିଚ୍ଛା ସତ୍ତ୍ୱେ ମଧ ହତ୍ୟା କଲେ । ଭାଷା ଚର୍ଚ୍ଚାରେ ସେଇଠି ପୂର୍ଣ୍ଣଚ୍ଛେଦ ପଡ଼ିଲେ ମଧ ବାସ୍ତବରେ ଭାଷା ଚର୍ଚ୍ଚା ତାଙ୍କ ମାନସିକତାରୁ କେବେ ଦୂରେଇ ଯାଇନଥିଲା । ଏହି କାରଣରୁ ତ ସେ ପରବର୍ତ୍ତୀ କାଳରେ ରଚନା କରିଥିଲେ ଅଭିଧାନ ବା ଶବ୍ଦକୋଷ ପ୍ରଭୃତି ମହାନ୍ ମହାନ୍ ଗ୍ରନ୍ଥ ।

ଏଇ ଗଡ଼ଜାତ ବଉଦ ଅଞ୍ଚଳରେ ସେ ନିଜର ଆଶା ଠାରୁ ମାତ୍ରାଧିକ ପରିମାଣରେ ସମ୍ମାନ ଲାଭ କରିଥିଲେ । ଷ୍ଟେଟ୍‌ର ରାଜା ତାଙ୍କୁ ସେଇ ମାଇନର ସ୍କୁଲକୁ କିପରି ହାଇସ୍କୁଲରେ ପରିଣତ କରାଯାଇପାରିବ; ସେହି ସଂକ୍ରାନ୍ତରେ କେବଳ ଆନୁଷ୍ଠାନିକ ଭାବରେ ଦାୟିତ୍ୱ ନ୍ୟସ୍ତ କଲେ ନାହିଁ; ବିଧିବଦ୍ଧ ଭାବରେ ତଥା ବାସ୍ତବ ପର୍ଯ୍ୟାୟରେ ସେ ସଂକ୍ରାନ୍ତୀୟ ସମସ୍ତ କାର୍ଯ୍ୟ କରିବାକୁ ଶ୍ରୀଧରଙ୍କୁ ପୂର୍ଣ୍ଣ ଅଧିକାର ପ୍ରଦାନ କରିଥିଲେ ।

ଶ୍ରୀଧର ଦାସ ଏହି ସମୟକୁ ଜାଣି ପାରିଥିଲେ ଯେ, ହାଇସ୍କୁଲ ନିର୍ମାଣ କରିବା ଯୋଜନାକୁ ନେଇ ଷ୍ଟେଟ୍‌ର ଦେୱାନଙ୍କ ସହିତ ରାଜାସାହେବଙ୍କର ମତଦ୍ୱୈଧ ରହିଛି । ଦେୱାନଙ୍କର ମତ ଥିଲା ଯେ, ଷ୍ଟେଟ୍ ପ୍ରତିବର୍ଷ ଗୋଟିଏ ଛାତ୍ର ପାଇଁ ମାସିକ ୨୦ ଟଙ୍କା ଖର୍ଚ୍ଚ କରିବା ଦ୍ୱାରା ବର୍ଷକୁ ଟ ୨୪୦ ବିନିମୟରେ ଗୋଟିଏ ମାଟ୍ରିକ୍ୟୁଲେଟ୍ ପାଉଛି । ତେଣୁ ଗୋଟିଏ ଛାତ୍ର ସଂଖ୍ୟାକୁ ବୃଦ୍ଧି କରାଇ ପ୍ରତିବର୍ଷ ୪/୫ ଜଣ ଛାତ୍ରଙ୍କୁ ଛାତ୍ରବୃତ୍ତି ପ୍ରଦାନ କଲେ, ସ୍କୁଲ ନିର୍ମାଣରେ ବାର୍ଷିକ ଯେତିକି ଅର୍ଥ ବ୍ୟୟ ହେବ; ତାହାର ତୁଳନାରେ

(୫୭) ବଉଦର ଭାଷା : ଶ୍ରୀଧର ଦାସ / ସହକାର - ୧୧ଶ ଓ ୧୨ଶ ସଂଖ୍ୟା (ଫାଲ୍‌ଗୁନ-ଚୈତ୍ର), ୧୩୩୮ / ପୃ : ୫୨୪-୫୨୬

ଯଥେଷ୍ଟ କମ୍ ଅର୍ଥ ବିନିମୟରେ ଷ୍ଟେଟ୍ ଅନେକ ଲାଭ ପାଆନ୍ତା । ଦେଓ୍ୱାନଙ୍କର ଏତାଦୃଶ ଯୁକ୍ତି ଅତ୍ୟନ୍ତ ଯୁକ୍ତିଯୁକ୍ତ ବୋଲି ମନେ ହେଉଥିଲେ ହେଁ ଶ୍ରୀଧର ରାଜାଙ୍କ ଆଜ୍ଞାକୁ ପାଳନ କରିବା ପାଇଁ ବାଧ ହୋଇ ଖଣ୍ଡିଏ ଯୋଜନା ପତ୍ର ପ୍ରସ୍ତୁତ କରି ରାଜାଙ୍କ ନିକଟକୁ ପଠାଇଥିଲେ । ପରେ ପରେ ସେହି ମାଇନର ସ୍କୁଲଟି ଅବଶ୍ୟ ହାଇସ୍କୁଲରେ ପରିଣତ ହୋଇଥିଲା । ସ୍କୁଲର ନାମକୁ ରାଜାସାହେବଙ୍କ ପିତାଙ୍କ ନାମରେ ନାମିତ କରିବା ପାଇଁ ଶ୍ରୀଧର ଦାସ ପ୍ରସ୍ତାବ ଦେଇଥିଲେ ମଧ୍ୟ ରାଜା କିନ୍ତୁ ଦୂରଦୃଷ୍ଟି ସମ୍ପନ୍ନ ହୋଇ ସ୍କୁଲର ନାମକୁ ଅପରିବର୍ତ୍ତିତ ରଖିଥିଲେ । ସ୍କୁଲଟି କିଙ୍ଗ୍ ଏଡ୍‌ଓ୍ୱାର୍ଡ ସପ୍ତମ ହାଇସ୍କୁଲ ଭାବରେ ନାମିତ ହୋଇଥିଲା । ଏହି ସ୍କୁଲରେ କ୍ରମାନ୍ୱୟରେ ଅଷ୍ଟମ ଶ୍ରେଣୀ ଓ ନବମ ଶ୍ରେଣୀ ଖୋଲିଥିଲା ।

ବଉଦ ଷ୍ଟେଟ୍‌ର ରାଜା ଶିକ୍ଷାର ବିସ୍ତାର ପାଇଁ ଯଥେଷ୍ଟ ଆଗ୍ରହ ପ୍ରକାଶ କରୁଥିଲେ । ତେଣୁ ହାଇସ୍କୁଲର ସୁନାମ ବୃଦ୍ଧି କରିବା ଉଦ୍ଦେଶ୍ୟରେ ସେ ଦେଓ୍ୱାନ ବାହାଦୂରଙ୍କ ସହିତ ଆଲୋଚନା କରି ସ୍କୁଲ ପାଇଁ ଜଣେ ଏଜୁକେସନ୍ ଅଫିସରର ଆବଶ୍ୟକତାକୁ ଅନୁଭବ କଲେ । ଦେଓ୍ୱାନ କଥା ପ୍ରସଙ୍ଗରେ ରାଜାଙ୍କ ଉଦ୍ଦେଶ୍ୟ ଶ୍ରୀଧରଙ୍କୁ ଜଣାଇଥିଲେ ଯେ, ରାଜା ତାଙ୍କୁ ଏଜୁକେସନ ଅଫିସର ଭାବେ ନିଯୁକ୍ତି ଦେବାପାଇଁ ଚାହାନ୍ତି । ମାତ୍ର ଶ୍ରୀଧର ସେତେବେଳେ ନିଜର ପ୍ରଧାନଶିକ୍ଷକ ପଦ ପାଇଁ ଖୁବ୍ ଶାନ୍ତିରେ ଅଛନ୍ତି ବୋଲି ପ୍ରକାଶ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ରାଜାସାହେବଙ୍କର ସେହି ଇଚ୍ଛାକୁ ଅସ୍ୱୀକାର କରିପାରିଲେ ନାହିଁ । ଶେଷ ପର୍ଯ୍ୟନ୍ତ ସେ ହିଁ ହେଲେ ବଉଦ ଷ୍ଟେଟ୍‌ର ଏକମାତ୍ର ଏଜୁକେସନ ଅଫିସର ।

ଏଜୁକେସନ ଅଫିସର ଭାବରେ ଶ୍ରୀଧର ଦାସଙ୍କର ଦାୟିତ୍ୱବୋଧ ମାତ୍ରାଧିକ ଭାବରେ ବୃଦ୍ଧି ପାଇଥିଲା । ସେତେବେଳେ ଷ୍ଟେଟ୍‌ରେ ପ୍ରାୟ ଷାଠିଏଟି ପ୍ରାଇମେରୀ ସ୍କୁଲ, ଗୋଟିଏ ସଂସ୍କୃତ ଟୋଲ, ଗୋଟିଏ ଟ୍ରେନିଂ ସ୍କୁଲ, ଗୋଟିଏ ମକ୍‌ତବ ଓ ଗୋଟିଏ ହାଇସ୍କୁଲ ଥିଲା । ଏଥିମଧ୍ୟରୁ ସଂସ୍କୃତ ଟୋଲ, ଟ୍ରେନିଂ ସ୍କୁଲ, ମକତବ୍ ଓ ହାଇସ୍କୁଲ, ଏହି ଚାରିଗୋଟି ସ୍କୁଲ ସେତେବେଳେ ବଉଦଗଡ଼ ମଧ୍ୟରେ ଅବସ୍ଥିତ ଥିଲା । ତାହାଛଡ଼ା ଷ୍ଟେଟ୍‌ରେ ମଧ୍ୟ ଜଙ୍ଗଲି କନ୍ଧମାନଙ୍କର ଗୋଟିଏ ସ୍କୁଲ ଥିଲା । ତେଣୁ ଏ ସମସ୍ତ ସ୍କୁଲର ପରିଦର୍ଶନ କରିବା ସହିତ ଶିକ୍ଷାର ଉତ୍ତରୋତ୍ତର ଉନ୍ନତି ପାଇଁ ବିଭିନ୍ନ ପ୍ରତିକାରାତ୍ମକ ପଦକ୍ଷେପ ମଧ୍ୟ ଗ୍ରହଣ କରିବାକୁ ପଡୁଥିଲା । ଏହାର ମୂଳରେ ଥିଲା ରାଜାସାହେବଙ୍କର ଶିକ୍ଷା ପ୍ରସାର ଦିଗରେ ଥିବା ଐକାନ୍ତିକ ପ୍ରଚେଷ୍ଟା ଓ ମନୋଭାବ । ରାଜାସାହେବଙ୍କ ଠାରୁ ପୂର୍ଣ୍ଣ ସମ୍ମତି ଓ ଅଧିକାର ପାଇସାରିବା ପରେ ଓ ବାଧ୍ୟତାମୂଳକ

ଶିକ୍ଷାକୁ ବଳବତ୍ତର କରିବା ପାଇଁ ଲାଗିପଡ଼ିଥିଲେ । ସେତେବେଳେ କେବଳ ନିମ୍ନ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ଥିଲା ।

ଷ୍ଟେଟ୍‌ର ତତ୍କାଳୀନ ନିୟମାନୁସାରେ ପ୍ରତ୍ୟେକ ଶିକ୍ଷାବର୍ଷର ଆରମ୍ଭରୁ ଛଅବର୍ଷରୁ ଊର୍ଦ୍ଧ୍ୱ ଯେଉଁ ଛାତ୍ରଛାତ୍ରୀମାନେ ପୁନଶ୍ଚ ବିଦ୍ୟାଧ୍ୟୟନ କରିବେ, ସେମାନଙ୍କର ନାମ ଓ ପୂର୍ଣ୍ଣ ବିବରଣୀର ଏକ ତାଲିକା ହେଡ୍‌ପଣ୍ଡିତ ପ୍ରସ୍ତୁତ କରି ଶ୍ରୀଧର ଦାସଙ୍କ କାର୍ଯ୍ୟାଳୟକୁ ପଠାଇବା ପରେ, ଶ୍ରୀ ଦାସ ସେହି ପିଲାମାନଙ୍କର ଅଭିଭାବକମାନଙ୍କୁ ଚିଠି ମାଧ୍ୟମରେ ଡକାନ୍ତି ଓ ସେମାନେ ନିଜ ନିଜ ପିଲାଙ୍କୁ ବିଦ୍ୟାଧ୍ୟୟନ ପାଇଁ ପଠାନ୍ତି । ସେତେବେଳେ ପିଲାମାନଙ୍କର ପାଠପଢ଼ା ପାଇଁ ଅଭିଭାବକମାନଙ୍କୁ ବେତନ ଦେବାକୁ ପଡୁନଥିଲେ ମଧ୍ୟ ଛାତ୍ରର ଅନୁପସ୍ଥିତିକାଳୀନ ଜୋରିମାନା ଦେବାକୁ ପଡୁଥିଲା । ଏହି ଜୋରିମାନାକୁ ପଣ୍ଡିତେ ଆଦାୟ କରି ସିଧା ଟ୍ରେଜେରୀକୁ ପଠାଇ ଦିଅନ୍ତି କିମ୍ବା କେତେବେଳେ ଶ୍ରୀଧର ଦାସଙ୍କ କାର୍ଯ୍ୟାଳୟକୁ ପଠାଇ ଦିଅନ୍ତି । ଏବଂ ଯଦିବା କେବେ ପଣ୍ଡିତ ମହାଶୟ କୌଣସି ଛାତ୍ରଠାରୁ ଜୋରିମାନା ଆଦାୟ ନ କରିପାରନ୍ତି, ତେବେ ସେମାନଙ୍କର ନାମକୁ ଶ୍ରୀ ଦାସଙ୍କ ଅଫିସ୍‌କୁ ପଠାଇଦେଲେ, ସେହି ଅଭିଭାବକମାନଙ୍କୁ ଅଫିସର ନିୟମାନୁସାରେ ଷ୍ଟେଟ୍‌ର ନାଜର ବା ପୋଲିସକୁ ଏହି ଜୋରିମାନା ଆଦାୟ କରିବା ପାଇଁ ପଠାଯାଏ । ଯଦି ନାଜର ବା ପୋଲିସ ଏଥିରେ ବିଫଳ ହୁଅନ୍ତି, ତେବେ ସାର୍ଟିଫିକେଟ୍ ମକଦ୍ଦମା ଦ୍ୱାରା ତାଙ୍କର ଚଳନ୍ତି ସମ୍ପତ୍ତିକୁ ନିଲାମ କରାଯିବାର ବନ୍ଦୋବସ୍ତ ଥାଏ । ତେବେ ଶ୍ରୀଧର ଦାସ ଏହି କଡ଼ା ନିୟମକୁ ଆଧାର କରି ଶେଷ ନିୟମଟିକୁ କେବେ କୌଣସି ଅଭିଭାବକଙ୍କ ପାଇଁ ପ୍ରୟୋଗ କରିନାହାନ୍ତି ବୋଲି ସ୍ୱୀକାର କରିଛନ୍ତି ।[୫୮]

ସେ ସମୟରେ ବିଦ୍ୟାଳୟରୁ କେହି ଯଦି ନାମ କଟାଇବାକୁ ଚାହୁଁଥିଲେ, ତେବେ ତାଙ୍କୁ ବହୁତ କାଇଦା-କଟକଣା ମଧ୍ୟଦେଇ ଗତି କରିବାକୁ ପଡୁଥିଲା । ନାମ କାଟିବାର କ୍ଷମତା ସ୍ୱୟଂ ରାଜାଙ୍କ ହାତରେ ଥିଲା । ମାତ୍ର ପରବର୍ତ୍ତୀ କାଳରେ ଯେତେବେଳେ ରାଜାସାହେବ ସେହି କ୍ଷମତାଟିକୁ ଶ୍ରୀଧର ଦାସଙ୍କ ହାତରେ ଅର୍ପଣ କଲେ, ସେତେବେଳେ ଶ୍ରୀ ଦାସ ସେହି କାୟଦା-କଟକଣା ପଛରେ ଥିବା ରହସ୍ୟଟିକୁ ଉଦ୍‌ଘାଟନ କରିଥିଲେ । ଜଣେ ହେଡ୍‌ପଣ୍ଡିତ ନାମକଟା ଦରଖାସ୍ତକୁ ଅନୁମୋଦନ କରିବା ପାଇଁ ଟଙ୍କାଟିଏରୁ ଦୁଇଟଙ୍କା ପର୍ଯ୍ୟନ୍ତ ଲାଞ୍ଚ ନେଉଥିଲେ । ଏପରି ଦୁର୍ନୀତିକୁ ସେ ପରବର୍ତ୍ତୀ କାଳରେ ରୋକିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ । ଏହି ରୀତିରେ ସାଧାରଣ ଜନତା ମଧ୍ୟ ଅଭ୍ୟସ୍ତ ହୋଇପଡ଼ିଥିଲେ । ନିଜ ଆତ୍ମଜୀବନୀରେ

(୫୮) ସୁଅ ମୁହଁର ପଥର / ପୃ : ୧୪୬

ଏହିଭଳି ଦୃଷ୍ଟାନ୍ତର ଉପସ୍ଥାପନା କରିଛନ୍ତି ଅଧ୍ୟାପକ ଶ୍ରୀଧର ଦାସ । ଥରେ ଜଣେ ଦରଖାସ୍ତକାରୀ ପ୍ରାୟ ଦୁଇସେର ଘିଅ ଏହି ବାବଦକୁ ଲାଞ୍ଚ ଯାଚିବାରୁ ଶ୍ରୀଧର ତାଙ୍କ ନାମରେ ମକଦ୍ଦମା କରି ଆସିଷ୍ଟାଣ୍ଟ ଦେବାନ୍‌ଙ୍କ ଅଦାଲତରେ ତାଙ୍କୁ ପାଞ୍ଚଟଙ୍କା ଅର୍ଥଦଣ୍ଡରେ ଦଣ୍ଡିତ କରାଇଥିଲେ ।[୫୯] ଏହି କ୍ଷେତ୍ରରେ ତାଙ୍କର ଏତାଦୃଶ ପଦକ୍ଷେପ ଅତ୍ୟନ୍ତ ସ୍ୱାଗତଯୋଗ୍ୟ । ବୋଧହୁଏ ଏହାପରେ କେହି ଜନସାଧାରଣ ଆଉ ନିଜ ପିଲାଙ୍କ ନାମ କଟାଇବା ପାଇଁ ଉତ୍କୋଚ ଦେବାକୁ ସାହସ ପାଇ ନ ଥିବେ ।

ରାଜାସାହେବ ଅତ୍ୟନ୍ତ ବଦାନ୍ୟ ବ୍ୟକ୍ତି ଥିବାରୁ ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇବା ପାଇଁ ବିଭିନ୍ନ ସ୍ଥାନରୁ ବିଭିନ୍ନ ଲୋକେ ଆସୁଥିଲେ । ଏହି କ୍ରମରେ ଥରେ ଆସିଥିଲେ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରଣେତା ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ । ସେ ନିଜର ଭାଷାକୋଷର ପ୍ରକାଶନ ନିମନ୍ତେ କିଛି ଆର୍ଥିକ ସାହାଯ୍ୟ ପାଇଁ ଆସିଥିଲେ । ଶ୍ରୀଧର ଦାସ ତାଙ୍କୁ ସେ ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲେ ଓ ରାଜାଙ୍କ ନିକଟକୁ ନେଇଯିବାର ବିହିତ ବ୍ୟବସ୍ଥା କରାଇଥିଲେ । ଏପରିକି ବହୁ କଷ୍ଟରେ ସଂଗ୍ରହ କରିଥିବା ବଉଦର କେତେକ ଶବ୍ଦ ସହ ମୋଗଲବନ୍ଦୀ ଅଞ୍ଚଳର ଅନେକ ଅପ୍ରଚଳିତ ଶବ୍ଦ, ଯାହାକି ପ୍ରାୟ ପାଞ୍ଚଶହ ଶବ୍ଦ ହେବ; ତାକୁ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ପ୍ରଦାନ କରିଥିଲେ ।[୬୦]

ବଉଦ ଷ୍ଟେଟ୍‌ରେ ଶ୍ରୀଧର ଦାସ ଏଜୁକେସନ ଅଫିସର ଥିବାବେଳେ ଶେକ୍ସପିୟରଙ୍କର କେତୋଟି ଗଳ୍ପକୁ ସଂକ୍ଷିପ୍ତ କରି ପିଲାଙ୍କ ପାଇଁ ଲେଖିଥିଲେ । 'ପିଲାଙ୍କ ଶେକ୍ସପିୟର ଗଳ୍ପ' । ଏହାର ପ୍ରଥମ ଖଣ୍ଡରେ ଥିଲା, ଭେନିସ୍‌ର ବଣିକ (Merchant of Venice) ଓ ତୋଫାନ (Tempest)। ଏହାର ପ୍ରକାଶ କାଳ ଥିଲା ୧୯୫୬ ମସିହା । ପୁସ୍ତକଟିରେ ଜାନକୀବଲ୍ଲଭ ମହାନ୍ତିଙ୍କ ସହିତ ମିଶି ସେ ଯୁଗଳବନ୍ଦୀର ଝଙ୍କାର ତୋଳିଥିଲେ । ଏହି ପୁସ୍ତକଟିର ଦ୍ୱିତୀୟ ଭାଗରେ ଥିଲା ରାଜା ଲିଅର (King Lier) ଓ ମାକ୍‌ବେଥ (Macbeth)। ଗୋପାଳ ଚନ୍ଦ୍ର ପ୍ରହରାଜ ଏହି ବଉଦ ଷ୍ଟେଟ୍‌କୁ ନିଜର ଭାଷାକୋଷ ପାଇଁ ଆର୍ଥିକ ସାହାଯ୍ୟ ଉଦ୍ଦେଶ୍ୟରେ ଆସିଥିଲାବେଳେ ଶ୍ରୀଧର ଦାସ ଏହି 'ପିଲାଙ୍କର ଶେକ୍ସପିୟର' ବହି ତାଙ୍କୁ ଉପହାର ଦେବାରୁ ସେ ଏକ ପ୍ରଶଂସାମୂଳକ ମନ୍ତବ୍ୟଟିଏ ଉକ୍ତ ପୁସ୍ତକ ଉଦ୍ଦେଶ୍ୟରେ ଲେଖିଦେଇଥିଲେ ।

ବଉଦ ଷ୍ଟେଟ୍‌ରେ ଶ୍ରୀଧର ଦାସ ସମସ୍ତ ପ୍ରକାର ସୁଖ ଓ କ୍ଷମତାର ଅଧିକାରୀ ଥିଲେ ମଧ ସାମାଜିକ ଚଳଣୀରେ ନିଜକୁ 'ନିର୍ଜନ ଦ୍ୱୀପରେ ନିର୍ବାସିତ ବନ୍ଦୀ' ପରି ମନେ

(୫୯) ସୁଅ ମୁହଁର ପଥର / ପୃ : ୧୪୭

(୬୦) ସୁଅ ମୁହଁର ପଥର / ପୃ : ୧୫୩

କରୁଥିଲେ । କାରଣ କେବଳ ଦେବାନ, ଉଦୟକର ମିଶ୍ର (ଡାକ୍ତର) ପ୍ରଭୃତି ଆଠ ଦଶଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ସୁଖଦୁଃଖ ହେବା ବା ମନ ଖୋଲି କଥାବାର୍ତ୍ତା ହେବା ଆଦିରେ ଅନେକ କଟକଣା ଥିଲା । ରାଜା ନରେନ୍ଦ୍ର କୁମାର ମଧ୍ୟ ସବୁବେଳେ ସମସ୍ତଙ୍କ ସମ୍ମୁଖରେ "Sridhar Babu is a very honest and efficient officer" ବୋଲି କହୁଥିଲେ ମଧ୍ୟ ଶ୍ରୀଧର ଦାସଙ୍କ M.Ed. ପଢ଼ା ପାଇଁ ବିଭିନ୍ନ ଫନ୍ଦି ପରେ "ଶ୍ରୀଧରବାବୁଙ୍କ ଉପରେ ବ୍ୟୟ ସଂକୋଚର କୁରାହାଡ଼ିର ପ୍ରଥମ ଚୋଟ ମାରି ମୁଁ ଦୁଃଖିତ"[୬୧], କହିବା ଦ୍ୱାରା ଶ୍ରୀଧର ଦାସଙ୍କ ମନରେ ରାଜାଙ୍କର ଅନୁଗ୍ରହ କ୍ରମେ ସନ୍ଦେହ ରୂପ ଗ୍ରହଣ କଲା । ମନରେ ବିଭିନ୍ନ ଆନୁସଙ୍ଗିକ ଘଟଣା ମଧ୍ୟ ତୀବ୍ର ରୂପ ଧାରଣ କରିବାକୁ ଲାଗିଲା । ଏହି କାରଣରୁ ଶ୍ରୀଧର ଗୋଟିଏ ମାସ ଛୁଟି ନେଇ ବାହାରକୁ ଯାଇ ବୁଲାବୁଲି କରିବା ପାଇଁ ମନସ୍ଥ କଲେ । ମାତ୍ର ଛୁଟି ମଞ୍ଜୁର ଏପରି ହେଲା ଯେ, ସେ ନିକଟ ତିନି ଚାରି ମାସ ମଧ୍ୟରେ ସେ ଛୁଟିକୁ କେବେ ଉପଭୋଗ କରିପାରିବେ ନାହିଁ । ବହୁ ବାଦ-ବିସମ୍ବାଦ ମଧ୍ୟରେ ସେ ମାତ୍ର ଦଶ ଦିନର ଛୁଟି ପାଇଲେ ହେଁ ସେଥିରେ ଅନେକ କଟକଣା ଥିଲା । ପରିଶେଷରେ ଏଭଳି ପରିସ୍ଥିତି ଉପୁଜିଲା ଯେ, ସେ ବାଧହୋଇ ଟେଲିଗ୍ରାମ ମାଧ୍ୟମରେ ନିଜର ଇସ୍ତଫାପତ୍ର ପ୍ରଦାନ କରିବାକୁ ବାଧହେଲେ ।

ବଉଦ ଷ୍ଟେଟ୍‌ର ଏଜୁକେସନ ଅଫିସର ପଦବୀ ତ୍ୟାଗ କଲାପରେ ସେ ପୁଣି ପରିସ୍ଥିତିରେ ପଡ଼ି ଓଲସିଂହ ହାଇସ୍କୁଲରେ ପ୍ରଧାନଶିକ୍ଷକତା ପଦବୀକୁ ଆଦରି ନେଲେ । ବଞ୍ଚିବା ପାଇଁ ସେ ବର୍ତ୍ତମାନ ଯେଉଁ ଡାଳ ଧରିଲେ, ସେଥିରେ ସମ୍ମାନର ମାତ୍ରା ଥିଲା ମାତ୍ର ନ୍ୟୂନ ପରିମାଣର । ସ୍କୁଲର ପୃଷ୍ଠପୋଷକ ଶ୍ରୀ ଦାଶରଥି ପଟ୍ଟନାୟକଙ୍କର ବହୁ ଆତ୍ମୀୟସ୍ୱଜନ ସେହି ସ୍କୁଲରେ ଚାକିରି କରୁଥିଲେ । ସେମାନେ ସ୍କୁଲକୁ ବିଶେଷକରି ନିଜର ସମ୍ପତ୍ତି ଭାବରେ ଅପବ୍ୟବହାର କରିବା ସହ ପ୍ରଧାନଶିକ୍ଷକଙ୍କୁ ମାତ୍ର ରବର ଷ୍ଟାମ୍ପ ଭାବରେ ବ୍ୟବହାର କରୁଥିଲେ । ଯେତେବେଳେ ଶ୍ରୀଧରଙ୍କ କୌଣସି ଅଭିଯୋଗ ଦାଶରଥିବାବୁ ଶୁଣିଲେ ନାହିଁ, ଅଧିକନ୍ତୁ ପ୍ରେସିଡେଣ୍ଟ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ମାଧ୍ୟମରେ ଅନ୍ୟ କର୍ମଚାରୀଙ୍କ କୌଣସି କାର୍ଯ୍ୟରେ ହସ୍ତକ୍ଷେପ ନକରି ଚୁପ୍ ରହିବା ରୂପୀ ସାଲିସର ପରାମର୍ଶକୁ ଶ୍ରୀଧରଙ୍କ ଉଦ୍ଦେଶ୍ୟରେ ପ୍ରେରଣ କଲେ; ସେତେବେଳେ ସ୍ୱାଭିମାନୀ ଶ୍ରୀଧର ଦାସ 'ନାମକୁ ମାତ୍ର ପ୍ରଧାନଶିକ୍ଷକ' ହୋଇ ରହିବାକୁ ନଚାହିଁ, ବାଧହୋଇ ନିଜର ଇସ୍ତଫାପତ୍ର ଦେଇ ଘରକୁ ଆସିଯାଇଥିଲେ ।

---

(୬୧) ସୁଅ ମୁହଁର ପତର / ପୃ : ୧୭୯

ଘରେ ପ୍ରାୟ ଆଠ ଦଶଦିନ ରହିବା ପରେ ବାଣପୁର ହାଇସ୍କୁଲର ଜଣେକ ଶିକ୍ଷକ ଶ୍ରୀ ବାମନ ଚରଣ ଦାସ ପଣ୍ଡିତ ଗୋଦାବରୀଶଙ୍କ ପତ୍ରଟିଏ ଧରି ଶ୍ରୀଧରବାବୁଙ୍କ ନିକଟକୁ ଆସିଥିଲେ । ପତ୍ରଟିରେ ତାଙ୍କୁ ବାଣପୁର ସ୍କୁଲରେ ଶିକ୍ଷକତା ପାଇଁ ନିମନ୍ତ୍ରଣ ଥିଲା । ଏହି ସ୍କୁଲଟି ସେତେବେଳେ ସତ୍ୟବାଦୀ ସ୍କୁଲର ଆଦର୍ଶରେ ଗଢ଼ା ଯାଇଥିଲା । ଶ୍ରୀଧର ଦାସ ଅନ୍ଧାରରେ ବାଟ ଖୋଜୁଥିଲେ । ହାତ ପାଆନ୍ତାରେ ଯେତେବେଳେ ବାଟ ଆସି ଆପେ ଆପେ ଦୃଶ୍ୟମାନ ହେଉଛି; ସେତେବେଳେ ସେ ତାକୁ ଆଉ ହାତଛଡ଼ା କରନ୍ତେ କିପରି ? ଆର୍ଥିକ ଦୂରବସ୍ଥାକୁ କେବଳ ସୁଧାରିବା ପାଇଁ ସେ ଏହି ଚାକିରିଟିକୁ ଆଦରି ଦେଲେ ସିନା, ମନ ଭିତରେ କିନ୍ତୁ ତାଙ୍କର ଅନେକ ଦୁଃଖ ଥିଲା । ଅନୁଶୋଚନାର ଆତ୍ମସମୀକ୍ଷାଟିକୁ ସ୍ମରଣ କରାଯାଇପାରେ ଏହିଠାରେ । ନିଜ ଆତ୍ମଜୀବନୀରେ ସେ କହି ରଖିଛନ୍ତି,– "ବେତନ ତଥା ପଦ ମର୍ଯ୍ୟାଦାରେ ନିଜକୁ ତଳକୁ ଖସାଇ ଆଣିଲି । ବଉଦରେ ଟ ୧୩୦ ଙ୍କା ପାଉଥିଲି ଓ ଓଲସିଂହରେ ଟ ୧୨୦ ଙ୍କା, ଏବେ ବାଣପୁରରେ ଟ ୭୦ ଙ୍କା ପାଇବି । ବଉଦରେ ମୋ ଅଧିନରେ ଗୋଟିଏ ହାଇସ୍କୁଲ, ଦୁଇଟି ମାଇନର ସ୍କୁଲ ଓ ପ୍ରାୟ ସତୁରୀଟି ଅନ୍ୟାନ୍ୟ ଶ୍ରେଣୀର ସ୍କୁଲ ଓ ଦୁଇଜଣ ସବ୍‌ଇନସ୍‌ପେକ୍ଟର ଥିଲେ । ମୋ ଉପରେ ଥିଲେ ଜଣେ ଦେୱାନ୍ ଓ ଜଣେ ରାଜା । ଓଲସିଂହରେ ମୋ ଉପରେ ରହିଲେ ବାସ୍ତବରେ ଅନେକ ଲୋକ । ଏବେ ବାଣପୁରରେ ମୋ ଉପରେ ଗୋଦାବରୀଶବାବୁ ଓ ଅନ୍ୟ ଜଣେ ପ୍ରଧାନଶିକ୍ଷକ ରହିବେ; ଏମାନଙ୍କ ଛଡ଼ା ଆଉ କେତେଜଣଙ୍କର ପ୍ରଭୁତ୍ୱ ସ୍ୱୀକାର କରିବାକୁ ହେବ କିଏ ଜାଣେ ? ଅଭାବରେ ସ୍ୱଭାବ ନଷ୍ଟ । ଅଭାବ ପଡ଼ିଲେ ମନୁଷ୍ୟ ଯେ କୌଣସି ନୀଚତା ସ୍ୱୀକାର କରିବାକୁ ବାଧହୁଏ ।"[୬୨]

ସମୟ କ୍ରମେ ବାଣପୁରର ରହଣି ଶ୍ରୀଧର ଦାସଙ୍କୁ ସହଜ ବୋଲି ମନେହୁଏ । ବିଶେଷକରି ଓଲସିଂହ ଅପେକ୍ଷା ବାଣପୁରରେ ଟିକିଏ ଶାନ୍ତି ଥିଲା । ଏଠାରେ ସେ ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶ ମହାପାତ୍ର ପ୍ରମୁଖଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଦ୍ୱାରା ଲିଖିତ ତଥା ଚତୁର୍ଥ-ପଞ୍ଚମ ଶ୍ରେଣୀରେ ଶିକ୍ଷକମାନଙ୍କ ପାଇଁ ଅଭିପ୍ରେତ ତଥା ମଞ୍ଜୁରୀ ପ୍ରାପ୍ତ ବ୍ୟାକରଣକୁ ମଧ ଏହି ସମୟରେ ପଢ଼ିଥିଲେ ଓ ସେହି ବହି ସଂକ୍ରାନ୍ତରେ ପଣ୍ଡିତ ନୀଳକଣ୍ଠଙ୍କ ସହିତ ପ୍ରତ୍ୟେକ୍ଷ ଭାବରେ ଆଲୋଚନା କରିଥିଲେ । ବାଣପୁରରେ ସେ ପ୍ରାୟ ଛଅବର୍ଷ ରହିଥିଲେ । ଥରେ ଜଣେ ଶିକ୍ଷକ ତାଙ୍କ କାର୍ଯ୍ୟକଳାପକୁ ନିନ୍ଦା କରିବା ସହ ତାଙ୍କର ଚରିତ୍ର ଉପରେ ଆକ୍ଷେପ କରିବାରୁ ଶ୍ରୀଧର ଉତ୍ୟକ୍ତ ହୋଇ ଗୋଦାବରୀଶ ମିଶ୍ରଙ୍କ ଠାରୁ ନ୍ୟାୟ ଚାହିଁଲେ । ମାତ୍ର ସ୍କୁଲର ଅଧିକାଂଶ ସଦସ୍ୟ ଉକ୍ତ

---

(୬୨) ସୁଅ ମୁହଁର ପତର / ପୃ : ୧୮୭

ବ୍ୟକ୍ତିଙ୍କ ସମେତ ପ୍ରାୟ ଗୋଦାବରୀଶ ମିଶ୍ରଙ୍କ ଆତ୍ମୀୟ ଥିବାରୁ ସେ ସାଲିଶ୍‌ରେ ନିଜର ବ୍ୟକ୍ତିତ୍ୱକୁ ଜଳାଞ୍ଜଳି ନଦେଇ ସେଠାରୁ ସମ୍ମାନର ସହ ଇସ୍ତଫାପତ୍ର ପ୍ରଦାନ କରି ଚାଲିଆସିଥିଲେ ।

ସମୟର ସୁଅ ବହିଚାଲେ । ଘରେ ପୁଣି ଶ୍ରୀଧର ବେକାର ହୋଇ ବସି ରୁହନ୍ତି । ଅନ୍ଧାର ମଧ୍ୟରେ ବାଟ ଖୋଜୁଥିବା ବେଳେ ପୁଣି ଏକ ଆଶାର ଆଲୋକ ତାଙ୍କୁ ଦେଖାଯାଏ । ବାଣପୁର ସ୍କୁଲରେ ଥିବା ସମୟରେ ତାଙ୍କର ସିଂହଭୂମର ଜଣେ ବିଶିଷ୍ଟ କର୍ମୀ ଶ୍ରୀ ଈଶ୍ୱର ଚନ୍ଦ୍ର ହୋତାଙ୍କ ସହିତ ସାକ୍ଷାତ ହୋଇଥିଲା । ବର୍ତ୍ତମାନର ଦୁର୍ଦ୍ଦିନରେ ସେ ଦେବଦୂତ ହୋଇ ଦେଖାଦେଲେ । ସେ ଶ୍ରୀଧରଙ୍କୁ ତାଙ୍କ ଦ୍ୱାରା ଖଣ୍ଡମଉଦା ଠାରେ ନିର୍ମିତ ଖଣ୍ଡମଉଦା ହାଇସ୍କୁଲର ପ୍ରଧାନଶିକ୍ଷକ ପଦକୁ ପୂରଣ କରିବା ପାଇଁ ପ୍ରବର୍ତ୍ତାଇଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଖଣ୍ଡମଉଦା ହାଇସ୍କୁଲରେ ଜଣେ ଟ୍ରେନିଂପ୍ରାପ୍ତ ଓଡ଼ିଆ ଗ୍ରାଜୁଏଟ୍ ପ୍ରଧାନଶିକ୍ଷକ ହେଲେ ସ୍କୁଲଟି ଅନ୍ତତଃ ସ୍ୱୀକୃତି ପାଇଯିବ । ନିଜର ବହୁ ଆପତ୍ତି ସତ୍ତ୍ୱେ ମଧ୍ୟ ସେ ଶେଷ ପର୍ଯ୍ୟନ୍ତ ସେହି ସ୍କୁଲରେ ଯୋଗ ନ ଦେଇ ରହିପାରିଲେ ନାହିଁ ।

ଖଣ୍ଡମଉଦାରେ ଏକ ଭିନ୍ନ ଧରଣର ଅନୁଭୂତି ହେଲା । ସେତେବେଳେ ଆଖପାଖର ଲୋକେ ବିଶୁଦ୍ଧ ଓଡ଼ିଆ ଥିଲେ ମଧ୍ୟ କେତେକ ଗ୍ରାମରେ ବଙ୍ଗଳା ଶିକ୍ଷା ପାଇଁ ସ୍ୱତନ୍ତ୍ର ପାଠଶାଳା ଥିଲା । ଯୁବକମାନେ ବଙ୍ଗଳା ଭାଷାକୁ କ୍ରମେ ଆଦରି ନେବାକୁ ପ୍ରସ୍ତୁତ ହୋଇଉଠୁଥିବା ବେଳେ, ବର୍ଷିୟାନ ମାନେ ନିଜର ଭାଷା ଓ ସଂସ୍କୃତିକୁ ବଞ୍ଚାଇ ରଖିବାକୁ ତତ୍ପର ଥିଲେ । ଏପରିକି କୌଣସି କୌଣସି ପରିବାରରେ ଏହି ଭାଷା ବିବାଦକୁ କେନ୍ଦ୍ରକରି ପିତା ଓ ପୁତ୍ରଙ୍କ ମଧ୍ୟରେ ବି ମନାନ୍ତର ଘଟୁଥିଲା ।[୬୩] ଅନ୍ୟପକ୍ଷରେ ନିକଟସ୍ଥ ବହଡ଼ାଗୋଡ଼ାରେ ଯେଉଁ ସ୍କୁଲ ଥିଲା ସେଠାରେ ବଙ୍ଗାଳୀ ପିଲାଙ୍କ ସହ ଓଡ଼ିଆ ପିଲା ପଢୁଥିଲେ ମଧ୍ୟ ସେମାନେ ଓଡ଼ିଆ ବଦଳରେ ବଙ୍ଗଳା ପଢ଼ିବେ ବୋଲି ଚୁକ୍ତିନାମା କରିସାରିଥିଲେ । ଏହି କାରଣରୁ ହିଁ ଖଣ୍ଡମଉଦାରେ ଏହି ସ୍କୁଲଟି ନିର୍ମାଣ କରାଯାଇଛି । ଖଣ୍ଡମଉଦା ହାଇସ୍କୁଲ ସହିତ ବହଡ଼ାଗୋଡ଼ା ହାଇସ୍କୁଲର ଏହି କାରଣରୁ ହିଁ ବାରମ୍ବାର କଳିତକରାଳ ହେଉଥିଲା ।

ସ୍କୁଲର ଆଭ୍ୟନ୍ତରୀଣ ଅବସ୍ଥା ସେତେ ଭଲ ନଥିଲା । ଅର୍ଥାଭାବରୁ ଶିକ୍ଷକମାନେ ଖୁବ୍ କମ୍ ବେତନ ପାଉଥିବାରୁ ସେମାନଙ୍କ କାର୍ଯ୍ୟରେ ଶିଥିଳତା ପ୍ରତି ଶ୍ରୀଧର ଦାସ ଜାଣିଶୁଣି ଆଖି ବୁଜି ଦେଉଥିଲେ । ମାଟ୍ରିକ୍ ପରୀକ୍ଷା ଦେବାକୁ ଯାଉଥିବା ଛାତ୍ରମାନେ,

(୬୩) ସୁଅ ମୁହଁର ପତର / ପୃ : ୨୨୪

ଯେଉଁମାନେ କି ମୂଳରୁ ବଙ୍ଗଳା ପଢ଼ି ଓଡ଼ିଆ ଅକ୍ଷରକୁ ସୁଦ୍ଧା ଜାଣିନଥିଲେ, ସେମାନଙ୍କ ପାଇଁ ଓଡ଼ିଆ ବର୍ଣ୍ଣବୋଧ ପାଠ ସହିତ ହସ୍ତାକ୍ଷର ଲେଖିବା ପାଇଁ ବିଧିବଦ୍ଧ ବ୍ୟବସ୍ଥା ଶ୍ରୀଧର ଦାସ କରିଥିଲେ ।

ଏତେ ସତ୍ତ୍ୱେ ମଧ୍ୟ ଶିକ୍ଷା ବିଭାଗୀୟ ନିୟମ ଭଙ୍ଗ ନେଇ ବହଡ଼ାଗୋଡ଼ାର ଚକ୍ରାନ୍ତରେ ହେଉଥିବା ବାରମ୍ବାର ଅଭିଯୋଗର ଅନୁସନ୍ଧାନରେ ଶ୍ରୀଧର ଦାସ ଯେପରି ପେଶୀ ହୋଇଯାଉଥିଲେ । ଡେପୁଟି ଇନସ୍‌ପେକ୍ଟର ଜଣକ ଓଡ଼ିଆ ଥିବାରୁ ଅବଶ୍ୟ ତାଙ୍କର ବିଶେଷ କିଛି ଅସୁବିଧା ହେଉନଥିଲା; ତେବେ ମନରେ କିନ୍ତୁ ଶାନ୍ତି ପାଇପାରୁନଥିଲେ । ଚାହୁଁଥିଲେ ପୁଣି ବାଣପୁରକୁ ଫେରିଆସିବା ପାଇଁ । ଈଶ୍ୱର ହୋତାଙ୍କୁ ନିଜ ମନକଥା ଜଣାଇଲେ । ସେତେବେଳକୁ ମଞ୍ଜୁରୀ ମିଳିବାର ସୂଚନା ମିଳିସାରିଥିବାରୁ ସେ ଆଉ ଦୀର୍ଘଦିନ ସେଠାରେ ନରହି ଘରକୁ ଚାଲିଆସିଲେ ।

ବାଣପୁରରେ ପହଞ୍ଚିବା ପରେ ସେ ଜାଣିବାକୁ ପାଇଲେ ଯେ, କିଛିଦିନ ତଳେ କଟକରୁ ଦେବାନ ବାହାଦୂର ଶ୍ରୀ କୃଷ୍ଣ ମହାପାତ୍ର ତାଙ୍କୁ ବାଣପୁର ହାଇସ୍କୁଲ ଠିକଣାରେ ଗୋଟିଏ ଚିଠି ଦେଇଥିଲେ ବୋଲି । ଖୋଜଖବରରୁ କିଛି ଜଣା ନପଡ଼ିବାରୁ ଶ୍ରୀଧର ତାଙ୍କ ନିକଟକୁ ପୂର୍ବ ଚିଠି ସଂକ୍ରାନ୍ତରେ ଜାଣିବାକୁ ଚାହିଁ ଖଣ୍ଡିଏ ପତ୍ର ଲେଖିଥିଲେ । ଚିଠିର ଉତ୍ତର ଆସିଥିଲା କଟକସ୍ଥ ତାଙ୍କର ବସାଘରେ ଦେଖା କରିବା ପାଇଁ । ଦେବାନ ଥିଲେ ଜଣେ ଦୁର୍ଦ୍ଦାନ୍ତ ବୀର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ National War Front ରେ କାମ କରିଥିବା ଜଣେ ସୁଦକ୍ଷ କର୍ମଚାରୀ । ସମ୍ରାଟ୍ ପଞ୍ଚମ ଜର୍ଜଙ୍କ ୧୯୧୧ ମସିହାରେ ଭାରତ ଆଗମନ ବେଳେ ସେ ମଧ୍ୟ ଥିଲେ ତାଙ୍କର ଏ.ଡି.କମ୍. । ତେଣୁ ତାଙ୍କୁ ଦେଖା କରିବାକୁ ମନ ଭିତରେ ଭୟ ହେଉଥିଲେ ମଧ୍ୟ ସେ ଯାଇ ଠିକ୍ ସମୟରେ ଦେବାନ ବାହାଦୂର ଶ୍ରୀ କୃଷ୍ଣ ମହାପାତ୍ରଙ୍କୁ ଦେଖାକଲେ । ସେ ତାଙ୍କୁ ନିଜର ସ୍କୁଲ 'ହରିହରପୁର ଏକାଡେମୀ' ପାଇଁ ପ୍ରଧାନଶିକ୍ଷକ ଭାବରେ ଗ୍ରହଣ କରିବାକୁ ଯେ ଇଚ୍ଛା କରିଛନ୍ତି; ତାହା ଜଣାଇଲେ । ଶ୍ରୀଧର ସେହି ପରିସ୍ଥିତିରେ ମନା ମଧ୍ୟ କରିପାରିଲେ ନାହିଁ । ଓ ସମୟ କ୍ରମେ ସେହି ସ୍କୁଲର ପ୍ରଧାନଶିକ୍ଷକ ଭାବରେ ଯୋଗଦେଲେ ।

ସ୍କୁଲରେ କିନ୍ତୁ ଦେବାନ ବାହାଦୂର ପୁଲିସ ଶାସନ ନୀତି ପ୍ରୟୋଗ କରୁଥିଲେ । ତେଣୁ ସାମାନ୍ୟ ସାମାନ୍ୟ ମାତ୍ର ତ୍ରୁଟିରେ ଶ୍ରୀଧର ଦାସଙ୍କ ପୂର୍ବରୁ ବହୁ ପ୍ରଧାନଶିକ୍ଷକ ବିତାଡ଼ିତ ହୋଇଥିବା କଥା କ୍ରମେ ଶ୍ରୀଧର ଜାଣିଲେ । ତେଣୁ ସେ ବହୁ ସତର୍କତାର ସହିତ ସେହି ସ୍କୁଲର କାର୍ଯ୍ୟ ସମ୍ପନ୍ନ କରୁଥିଲେ । ୧୯୪୩ ମସିହାରେ ଉତ୍କଳ

ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲାବେଳକୁ ସେ ମାଟ୍ରିକ୍ୟୁଲେସନ ପରୀକ୍ଷାର ଇଂରାଜୀ ପତ୍ରର ପରୀକ୍ଷକ ଭାବେ ନିଯୁକ୍ତି ପାଇଥିଲେ ।

ଶ୍ରୀଧର ଦାସ ନିଜେ ଜଣେ ଶୃଙ୍ଖଳିତ ଶିକ୍ଷକ ଓ ଶାସକ । ତେଣୁ ପ୍ରଧାନଶିକ୍ଷକ ଭାବେ ତାଙ୍କର ପ୍ରତିଟି ପଦକ୍ଷେପ ବେଶ୍ ସ୍ୱାଗତଯୋଗ୍ୟ ମନେ ହେଉଥିଲା । ଏପରିକି ସେହି ସ୍କୁଲରେ ପିଅନ ଦ୍ୱାରା କାଗଜ ଚୋରି ଘଟଣାକୁ ଆବିଷ୍କାର କରି ସେ ତା' ପ୍ରତି ଯେଉଁ ଶାସ୍ତି ବିଧାନ କରିଥିଲେ, ତାହା ପରବର୍ତ୍ତୀ କାଳରେ ଦେବାନ ନିଜେ ଶୁଣି ମଧ୍ୟ ପ୍ରଶଂସା କରିଥିଲେ; ଯଦିଓ ସେକଥା ତାଙ୍କୁ ପ୍ରଥମେ ଜଣାଇବା ଉଚିତ ବୋଲି ସେ ଜଣାଇଥିଲେ ଓ ପରବର୍ତ୍ତୀ କାଳରେ ଏପରି କାର୍ଯ୍ୟ ବିଷୟରେ ଜଣାଇବାକୁ ହେବ ବୋଲି ତାଗିଦ୍ କରିଥିଲେ । ଶ୍ରୀଧର ଦାସ କିନ୍ତୁ ପରିସ୍ଥିତିକୁ ଲକ୍ଷ୍ୟକରି ତା'ର ଦରମାର ମାସିକ ଦୁଇଟଙ୍କା କରି କାଟି ବିକ୍ରି କରିଥିବା କାଗଜର ସମସ୍ତ ମୂଲ୍ୟକୁ ଅସୁଲ କରିଥିଲେ ।

ପ୍ରଧାନଶିକ୍ଷକ ଭାବରେ ସେ ଅନ୍ୟ ଶିକ୍ଷକଙ୍କ ପାଠପଢ଼ା ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦେଉଥିଲେ । ଏକଦା ସଂସ୍କୃତ ଶିକ୍ଷକ 'ଧର୍ମବ୍ୟାଧ ଉପାଖ୍ୟାନ' ପଢ଼ାଉଥିବା ବେଳେ ଗୋଟିଏ ଶ୍ଳୋକକୁ ଭୁଲ ଭାବରେ ପଢ଼ାଇ ନେଉଥିବା ବେଳେ ଶ୍ରୀଧର ଏହାକୁ ସହିନପାରି ଶ୍ରେଣୀ ମଧ୍ୟକୁ ସିଧା ପ୍ରବେଶ କରି ଶ୍ଳୋକଟିକୁ ଠିକ୍ ଭାବରେ ପଢ଼ାଇବା ସହ ତା'ର ସନ୍ଧିବିଚ୍ଛେଦ କରାଇ ବିଷୟଟିକୁ ସରଳ କରାଇ ଦେଇଥିଲେ ।[୬୪]

ଏଠି ଶ୍ରୀଧର ଭାବୁଥିଲେ, ଯାହାହେଉ ଭଲରେ ଅଛନ୍ତି, କିନ୍ତୁ ତାହାକୁ ଦୈବ ଭିନ୍ନ ଦିଗରେ ଗତି କରାଇଦେଲା । ଦେବାନ ବାହାଦୂରଙ୍କର ପରଲୋକ ପ୍ରାପ୍ତି ପରେ ହରିହରପୁର ସ୍କୁଲ ବା ଏକାଡେମୀଟି ଶ୍ରୀକୃଷ୍ଣ ଏକାଡେମୀ ନାମରେ ନାମିତ କରାଗଲା । ଦେବାନ ବାହାଦୂରଙ୍କର ପୁତ୍ର ନେଲୁବାବୁ ହେଲେ ସ୍କୁଲର ସମ୍ପାଦକ ଓ ଭାଗୀରଥି ମହାପାତ୍ର ହେଲେ ସଭାପତି । ସମୟର ଚକ୍ର ଆଗକୁ ଆଗକୁ ମାଡ଼ିବା ସହ ସେଠି ମଧ୍ୟ ଶୀତଳ ରାଜନୀତିର ଖେଳ ଆରମ୍ଭ ହୋଇଗଲା । ଢେଙ୍କାନାଳ ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ ନୃସିଂହ ଚରଣ କାନୁନ୍‌ଗୋ; ଯିଏ କି ସମ୍ପର୍କରେ ଥିଲେ ଭାଗୀରଥି ମହାପାତ୍ରଙ୍କର ଝିଆରୀ ଜ୍ୱାଇଁ । ୧୯୪୮ ମସିହାରେ ଗଡ଼ଜାତମାନେ ଓଡ଼ିଶା ରାଜ୍ୟ ସହିତ ମିଶିବା ବେଳେ ଢେଙ୍କାନାଳର ରାଜାସାହେବ୍ ରାଜ୍ୟକୁ ହସ୍ତାନ୍ତରୀତ କରିବା ପୂର୍ବରୁ ନୃସିଂହ ଚରଣବାବୁଙ୍କୁ ପ୍ରୋଭିଡେଣ୍ଟ ଫଣ୍ଡ ଓ ସାମାନ୍ୟ ଟଙ୍କା ପେନ୍‌ସନ୍ ବାବଦକୁ ଦେଇ ସ୍କୁଲରୁ ବିଦାୟ କରିଦେଲେ । ଏହି ଆଳରେ ଭାଗୀରଥି ମହାପାତ୍ର ଚାହିଁଲେ ନୃସିଂହବାବୁଙ୍କୁ ଶ୍ରୀକୃଷ୍ଣ

(୬୪) ପକ୍ଷୀ ହାୟମି ତ୍ରୁଷ୍ଣା - ସୁଅ ମୁହଁର ପଥର / ପୃ : ୨୪୦

ଏକାଡେମୀରେ ଆଡିସନାଲ୍ ହେଡ୍‌ମାଷ୍ଟର ଭାବରେ ରଖିବା ପାଇଁ । ଶ୍ରୀଧରବାବୁ ଚକ୍ରାନ୍ତକୁ ବୁଝିପାରିଲେ ଓ ସ୍ୱଷ୍ଟ ଭାବରେ ନିଜକୁ ସ୍କୁଲ ଠାରୁ ମୁକ୍ତ କରାଇନେବାକୁ ପ୍ରସ୍ତାବ ଦେଲେ । ପ୍ରସ୍ତାବଟି ଥିଲା ଏହିପରି—ଯେ, ଶ୍ରୀଧରବାବୁ ପ୍ରଥମେ ଦୀର୍ଘ ଛୁଟି ନେବେ । ତାଙ୍କ ସ୍ଥାନରେ ନୃସିଂହବାବୁ ହେବେ ଆଡିସନାଲ ହେଡ୍‌ମାଷ୍ଟର । ଦୀର୍ଘ ଛୁଟିର ପରିସମାପ୍ତି ପରେ ସେ ଇସ୍ତଫା ଦେବେ ଓ ତା'ପରେ ନୃସିଂହବାବୁ ହେବେ ହେଡ୍‌ମାଷ୍ଟର । ଭାଗୀରଥିବାବୁ, ନୃସିଂହବାବୁ ଓ ଶ୍ରୀଧରବାବୁଙ୍କ ମଧ୍ୟରେ ଅନେକ ମନାନ୍ତର ଓ ମତାନ୍ତର ଥିଲେ ମଧ୍ୟ "ଆଲୋ ସଖୀ, ଆପଣା ମହତ ଆପେ ରଖ୍" ନ୍ୟାୟରେ ଶ୍ରୀଧର ଦାସ ନିଜକୁ ସେହି ଆବର୍ଜନାରୁ ମୁକ୍ତ କରି ପୁଣି ଶୂନ୍ୟହସ୍ତ ହୋଇଗଲେ ।

ଶ୍ରୀକୃଷ୍ଣ ଏକାଡେମୀରୁ ବିଦାୟ ନେବାବେଳକୁ କୋରୁଆ ହାଇସ୍କୁଲର ଜଣେ ଶିକ୍ଷକ ଓ ଆଉ ଜଣେ ଭଦ୍ରଲୋକ ଜଗତ୍‌ସିଂହପୁର ଆସିଥାନ୍ତି ନୃସିଂହବାବୁଙ୍କୁ ତାଙ୍କ ସ୍କୁଲ ପାଇଁ ପ୍ରଧାନଶିକ୍ଷକ ଭାବରେ ନିମନ୍ତ୍ରଣ କରିବା ପାଇଁ । ନୃସିଂହବାବୁ ମଧ୍ୟ ସେମାନଙ୍କୁ ଅପେକ୍ଷା କରିବାକୁ କହିଥାନ୍ତି । ସେମାନେ କିନ୍ତୁ ସ୍କୁଲର ଭିତର କଥାକୁ ସଂଗ୍ରହ କରୁଥାନ୍ତି । ତେଣୁ ଯେତେବେଳେ ସେମାନେ ଜାଣିଲେ ଯେ, ଶ୍ରୀଧରବାବୁ ସବୁଦିନ ପାଇଁ ଶ୍ରୀକୃଷ୍ଣ ଏକାଡେମୀକୁ ତ୍ୟାଗ କରିଛନ୍ତି, ସେତେବେଳେ ସେମାନେ ତତ୍‌କ୍ଷଣାତ୍ ଯାଇ ଶ୍ରୀଧର ଦାସଙ୍କୁ ନିଜର ଉଦ୍ଦେଶ୍ୟ ଜଣାଇଲେ । ଶ୍ରୀଧରବାବୁଙ୍କର ଗତି ପୁଣି ବଙ୍କେଇଗଲା କୋରୁଆ ହାଇସ୍କୁଲକୁ ।

କୋରୁଆ ହାଇସ୍କୁଲର ପରିଚାଳକ ଓ ପୃଷ୍ଠପୋଷକ ଥିଲେ ସ୍ଥାନୀୟ ଜମିଦାର ଶ୍ରୀ ଶ୍ୟାମ ସୁନ୍ଦର ପଟ୍ଟନାୟକ । ଏହି ଅଞ୍ଚଳଟି ନିପଟ ମଫସଲ ଥିଲା । ମନେ ହେଉଥିଲା ସତେ ଯେପରି ଏହା ସଭ୍ୟ ଜଗତ ଠାରୁ ବହୁମାତ୍ରାରେ ବିଚ୍ଛିନ୍ନ ହୋଇପଡ଼ିଛି । ଏହା ସତ୍ତ୍ୱେ ମଧ୍ୟ ଜମିଦାରଙ୍କର ସ୍ନେହ, ସହକର୍ମୀଙ୍କ ସହଯୋଗ ତାଙ୍କୁ ବେଶ୍ ସୁଖ ଓ ଶାନ୍ତି ଆଣି ଦେଇଥିଲା । ଇତିମଧ୍ୟରେ ସେ ଏମ୍.ଏ. (ଓଡ଼ିଆ) ପାଶ୍ କରିସାରିଥିବାରୁ ମନ ମହାବିଦ୍ୟାଳୟ ଆଡ଼କୁ ବଳେଇ ଥାଏ । ତେଣୁ ସେ ଏହାପରେ ଅଧ୍ୟାପକଟିଏ ହୋଇଛନ୍ତି; ମାତ୍ର ସ୍କୁଲ ଜୀବନର ଅନୁଭୂତିକୁ ସେ କେବେ ଭୁଲିପାରି ନାହାନ୍ତି ।

ଅସ୍ଥାୟୀ ପ୍ରଧାନଶିକ୍ଷକରୁ କାର୍ଯ୍ୟ ଆରମ୍ଭ କରିଥିବା ଶ୍ରୀଧର ଦାସ ଶେଷରେ କୋରୁଆ ହାଇସ୍କୁଲରେ ପ୍ରଧାନଶିକ୍ଷକ ହୋଇ ଶିକ୍ଷକ ଜୀବନକୁ ଶେଷକରି ଅଧ୍ୟାପକର ଜୀବନକୁ ଆରମ୍ଭ କରନ୍ତି । ତେବେ ବଉଦରେ ରାଜକୀୟ ସମ୍ମାନ ଓ କ୍ଷମତା ରହିଥିଲା, ହେଲେ ଶାନ୍ତି ନଥିଲା । ଶାନ୍ତି ଥିଲା କିନ୍ତୁ କୋରୁଆରେ । କୋରୁଆରେ ସେ ମାତ୍ର

କେତୋଟି ମାସ ଚାକିରି କରିଛନ୍ତି । କିନ୍ତୁ ଜୀବନର ତୃପ୍ତିକୁ ଅନୁଭବ କରିଛନ୍ତି । ସ୍ନେହ, ଆଦର, ସାହାଯ୍ୟ, ସହଯୋଗରେ ନିଜକୁ ଧନ୍ୟ କରିଛନ୍ତି । ସମୟ ସ୍ରୁଅରେ ଯେତେବେଳେ ଯେଉଁ ସ୍ରୋତ ଯେପରି ଆସିଛି, ସେହି ସୁଅରେ ସେ କେବଳ ଭାସି ଯାଇଛନ୍ତି । ଆତ୍ମସମ୍ମାନକୁ କେବେ ହରାଇ ନାହାନ୍ତି କି ମୁଣ୍ଡକୁ କେବେ କୌଣସି ପରିସ୍ଥିତିରେ ନୁଆଁଇ ନାହାନ୍ତି । ବରଂ ଶତ୍ରୁକୁ ମଧ ସମ୍ମାନ ଦେଇଛନ୍ତି । ଶତ୍ରୁର ଆକାଙ୍କ୍ଷାକୁ ପରିପୂର୍ଣ୍ଣ କରିବାକୁ ଯାଇ ନିଜକୁ ସୁବିଧା ଠାରୁ ଦୂରେଇ ନେଇ ଯାଇଛନ୍ତି । ସବୁବେଳେ ଦେବାରେ ଆନନ୍ଦକୁ ଉପଲବ୍ଧି କରିଛନ୍ତି ଓ ସ୍ନେହ-ସୌହାର୍ଦ୍ଦ୍ୟରେ ଅତୁଟ ବିଶ୍ୱାସ ରଖିଛନ୍ତି ।

## (ଖ) ଅଧ୍ୟାପକ

ଶ୍ରୀଧର ଦାସ ୧୯୪୨ ମସିହାରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ଏମ୍.ଏ. ପରୀକ୍ଷା ଦେଇ କୃତିତ୍ୱର ସହିତ ଉତୀର୍ଣ୍ଣ ହୁଅନ୍ତି । ଏହି ଏମ୍.ଏ. ପରୀକ୍ଷା ପାଇଁ ତାଙ୍କୁ କିଛି କମ୍ ସଂଗ୍ରାମ କରିବାକୁ ପଡ଼ିନାହିଁ । ବଉଦ ଷ୍ଟେଟ୍‌ରେ ଥିବାବେଳେ ସେ ଥରେ ଏମ୍.ଏ. ପରୀକ୍ଷା ଦେବାପାଇଁ ଫିସ୍ ଦାଖଲ କରି ମଧ ପରୀକ୍ଷା ଦେବାକୁ ଯାଇପାରିନଥିଲେ । ସେ କିନ୍ତୁ ସେତେବେଳେ ଗୋଟିଏ ମାଷ୍ଟର ଡିଗ୍ରୀ ପାଇବା ପାଇଁ ବିଶେଷ ଭାବରେ ଚେଷ୍ଟିତ ଥିଲେ । ଏହାର କାରଣକୁ ସେ ଅକୁଣ୍ଠିତ ଚିତ୍ତରେ ପ୍ରକାଶ କରିଛନ୍ତି ନିଜ ଆତ୍ମଜୀବନୀ 'ସୁଅ ମୁହଁର ପତର'ରେ । ସେ କହିଛନ୍ତି, "x x ଗୋଦାବରୀଶବାବୁ ଲେଖିଥିଲେ ଯେ ଗ୍ରାଜୁଏଟ୍ ଶିକ୍ଷକମାନେ ପର୍ଯ୍ୟାୟ କ୍ରମେ ହେଡ୍‌ମାଷ୍ଟର ହେବେ । କିନ୍ତୁ ଗତ ପାଞ୍ଚବର୍ଷ ଭିତରେ କିଛିଦିନ ଅସ୍ଥାୟୀ ହେଡ୍‌ମାଷ୍ଟର ରହିବା ଛଡ଼ା ମୋତେ ହେଡ୍‌ମାଷ୍ଟର ପଦରେ ଆଉ କେବେ ରହିବାର ସୁବିଧା ମିଳିନଥିଲା । ମୁଁ ଭାବିଲି ବର୍ତ୍ତମାନର ହେଡ୍‌ମାଷ୍ଟର ଏମ୍.ଏ., ଅନ୍ୟକେହି ଏମ୍.ଏ. ନାହାନ୍ତି । ସତ୍ୟବାଦୀ ହାଇସ୍କୁଲରେ ନୀଳକଣ୍ଠବାବୁ, ଗୋଦାବରୀଶବାବୁ, କୃପାସିନ୍ଧୁବାବୁ ଏପରି ତିନିଜଣ ଏମ୍.ଏ. ଥିବାରୁ ହେଡ୍‌ମାଷ୍ଟର ପଦ ଜଣକ ପରେ ଅନ୍ୟ ଜଣଙ୍କୁ କ୍ରମାନ୍ୱୟରେ ଦିଆଯାଉଥିଲା । ଏଠାରେ ଅନ୍ୟ କେହି ଏମ୍.ଏ. ନଥିବାରୁ ହେଡ୍‌ମାଷ୍ଟର ପଦବୀ ପାଇଁ ଯୋଗ୍ୟ ବିବେଚିତ ହେଉନାହାନ୍ତି । ମୁଁ ଯଦି ଏମ୍.ଏ. ପାଶ୍ କରିପାରେ, ତେବେ ନିଶ୍ଚୟ ମୋତେ ହେଡ୍‌ମାଷ୍ଟର ପଦ ମିଳିଯିବ ।"[୬୫] ତେବେ କାରଣ ଯାହା ହେଉନା କାହିଁକି, ଉଚ୍ଚଶିକ୍ଷା ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗକୁ ଏହି ମର୍ମରେ ଉପଲବ୍ଧି କରାଯାଇପାରେ ।

---

(୬୫) ସୁଅ ମୁହଁର ପତର : ଶ୍ରୀଧର ଦାସ / ପୃ : ୨୧୭-୨୧୮

ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍.ଏ. (ଓଡ଼ିଆ) ଅଧ୍ୟାପନାର ବ୍ୟବସ୍ଥା ଥିଲା । ସେଠାକୁ ସେ ପରୀକ୍ଷା ଦେବାପାଇଁ ଆବେଦନ କରି ବିଫଳ ହେଲେ । ମନର ଇଚ୍ଛା କେବେ ଅବଦମିତ ହେବାର ନୁହେଁ; ଅଧିକନ୍ତୁ ସବୁ ସମୟରେ କେବଳ ସୁଯୋଗକୁ ଖୋଜିବୁଲୁଥାଏ । ଏହି ସମୟରେ ଶ୍ରୀଧର କୌଣସି ଏକ ସମ୍ବାଦପତ୍ରରୁ ଜାଣନ୍ତି ଯେ, ପାଟନା ବିଶ୍ୱବିଦ୍ୟାଳୟ ଓଡ଼ିଶାରେ ଓଡ଼ିଆ ବିଷୟରେ ଏମ୍.ଏ. ପରୀକ୍ଷା କରାଇବାର ବନ୍ଦୋବସ୍ତ କରାଉଛନ୍ତି । ଅନ୍ୟୁନ ତିନିଜଣ ପରୀକ୍ଷାର୍ଥୀ ହେଲେ ପରୀକ୍ଷା କରାଯାଇପାରିବ । ଘୋର ଅନ୍ଧକାର ମଧ୍ୟରେ ଯେପରି କ୍ଷୀଣ ଆଲୋକ ଧାରାଟିଏ ସେ ପାଇଗଲେ । ସେ ନିଜର ବନ୍ଧୁମାନଙ୍କୁ ମଧ୍ୟ ସେହି ପରୀକ୍ଷାଟିକୁ ଦେବାପାଇଁ ପ୍ରବର୍ତ୍ତାଇଲେ । ମାତ୍ର ସେମାନଙ୍କର ସହଯୋଗ ମିଳିଲା ନାହିଁ । ଦୃଢ଼ ମନୋରଥ ଶ୍ରୀଧର କିନ୍ତୁ ହତୋତ୍ସାହ ନହୋଇ ଏକୁଟିଆ ସେହି ପରୀକ୍ଷା ଦେବାପାଇଁ ଆବେଦନ କରିଥିଲେ । ଯଥା ସମୟରେ ପରୀକ୍ଷା ହେଲା ଓ ସେ ଏମ୍.ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ମଧ୍ୟ ହେଲେ । ଏମ୍.ଏ. ପରୀକ୍ଷାର ଫଳାଫଳ ବାହାରିବା ପରେ ପରେ ସେ ବାଣପୁର ତ୍ୟାଗ କରିଥିଲେ ।

ବାଣପୁର ତ୍ୟାଗ ପରେ ସେ ଖଣ୍ଡମଉଦା ହାଇସ୍କୁଲରେ ଯୋଗ ଦେଇଛନ୍ତି । ହରିହରପୁର ଏକାଡେମୀରେ ଯୋଗ ଦେଇଛନ୍ତି ଇତ୍ୟାଦି ଇତ୍ୟାଦି । ତେବେ ମନରେ ଉଚ୍ଚ ଆଶା ଉଚ୍ଚ ସନ୍ଧାନର ସର୍ବଦା ଅପେକ୍ଷା ରହିଥାଏ । ଏହି ଅବସରରେ ସେ ଏକଦା କଟକସ୍ଥ ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍‌ରେ ଅଧ୍ୟାପକ ପଦ ପାଇଁ ଖଣ୍ଡିଏ ଦରଖାସ୍ତ କରିଥିଲେ । ସେହି ଦରଖାସ୍ତ ପରବର୍ତ୍ତୀ କାଳରେ ମଞ୍ଜୁର ହେବା ଫଳରେ ଶ୍ରୀଧର ଦାସ ସେହି କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ସେ ୧୯୪୮ ମସିହାରେ ଉତ୍କଳ ଖ୍ରୀଷ୍ଟିଆନ୍ କଲେଜରେ ଯୋଗ ଦେଇଥିଲେ ଓ ସେହିବର୍ଷ ଓଡ଼ିଆରେ ଅନର୍ସ କ୍ଲାସ୍ ମଧ୍ୟ ଖୋଲାଯାଇଥିଲା । ତାଙ୍କ ପୂର୍ବରୁ ଆଉ ଦୁଇଜଣ ସେଠାରେ ଓଡ଼ିଆ ବିଭାଗର ଅଧ୍ୟାପକ ଭାବରେ ନିଯୁକ୍ତି ପାଇସାରିଥିଲେ । ସେମାନେ ହେଉଛନ୍ତି ଓଡ଼ିଆ ସାହିତ୍ୟର ବାଗ୍ମୀପୁରୁଷ ଶ୍ରୀ ଗୌରୀ କୁମାର ବ୍ରହ୍ମା ଓ ଓଡ଼ିଶାର ବିଶିଷ୍ଟ ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ । ଶ୍ରୀଧର ଦାସଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଯୋଗ ଦେଇଛନ୍ତି ପ୍ରଫେସର ପଠାଣି ପଟ୍ଟନାୟକ । ତେବେ ଅଧ୍ୟାପକ ଶ୍ରୀଧର ଦାସ ସେହି ମହାବିଦ୍ୟାଳୟରେ ଯୋଗଦେବା ବେଳକୁ ତାଙ୍କୁ ମିଶେଇ ସେଠାରେ ମାତ୍ର ତିନିଜଣ ଅଧ୍ୟାପକ ଥିଲେ, ଯେଉଁମାନେ କି ଆଜି ଓଡ଼ିଶାର ଗର୍ବ ଓ ଗୌରବ କହିଲେ ଅତ୍ୟୁକ୍ତି ହେବନାହିଁ ।

୧୯୪୮ ମସିହା ପୂର୍ବରୁ ଶ୍ରୀଧର ଦାସ ପବ୍ଲିକ୍ ସର୍ଭିସ୍ କମିଶନ୍ ଦ୍ୱାରା ଅଧ୍ୟାପକ ପଦ ପାଇଁ ନିର୍ବାଚିତ ହୋଇ ରେଭେନ୍‌ସା କଲେଜ୍‌ରେ ଛଅମାସ ପାଇଁ ଯୋଗ ଦେବାକୁ

ନିଯୁକ୍ତି ପତ୍ର ପାଇସାରିଥିଲେ । କିନ୍ତୁ ସେ ଏକ ବିଶେଷ କାରଣରୁ ସେହି ପଦକୁ ବାଧ୍ୟହୋଇ ପ୍ରତ୍ୟାଖ୍ୟାନ କରିଥିଲେ । ସେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି, "x x ମୁଁ ସେତେବେଳେ ଜଗତ୍‌ସିଂହପୁର ହାଇସ୍କୁଲରେ ଥିଲି । ଦେୱାନ୍ ବାହାଦୂର ମୋତେ ଛାଡ଼ିବାକୁ ଇଚ୍ଛୁକ ନଥିଲେ । ସେ ପ୍ରତ୍ୟକ୍ଷ ଓ ପରୋକ୍ଷ ଉଭୟ ଦିଗରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲେ । ଏଣେ ମୋତେ ରେଭେନ୍‌ସା କଲେଜ୍‌ରେ ଛଅମାସ ପାଇଁ ନିଯୁକ୍ତି ଦିଆଯାଇଥିଲା । ମୁଁ ସେତେବେଳେ ହେଡ୍‌ମାଷ୍ଟର ଭାବରେ ଦରମା ଓ ଭତ୍ତା ସହିତ ଦେଢ଼ଶହରୁ କମ୍ ପାଉନଥିଲି । ମାଗଣା ଘର ପାଇଥିଲି । କିନ୍ତୁ କଟକ ଆସିଲେ ମୋତେ ମାତ୍ର ୧୨୫ ଟଙ୍କା ମିଳିବ, ସେଥିରେ ଅନ୍ତତଃ ୨୦ ଟଙ୍କା ଘରଭଡ଼ା ଦେବାକୁ ପଡ଼ିବ । ନିଜେ ଚଳି ଘରକୁ ପଠାଇବି କ'ଣ ? ସର୍ବୋପରି ବିଚାର କରିବାକୁ ହେଲା ଛଅମାସ ପରେ କରିବି କଅଣ ? ରେଭେନ୍‌ସା କଲେଜ୍‌ରେ ଯୋଗ ଦେଇଥିଲେ ମୋତେ ଜଗତ୍‌ସିଂହପୁରରୁ ଇସ୍ତଫା ଦେବାକୁ ପଡ଼ିଥାନ୍ତା । ନିତାନ୍ତ ଅନିଶ୍ଚିତ ଭବିଷ୍ୟତ ଉପରେ ନିର୍ଭର ନକରି ଆପାତତଃ ନିଶ୍ଚିତ ଜଗତ୍‌ସିଂହପୁରରେ ହେଡ୍‌ମାଷ୍ଟର ପଦକୁ ଧରି ରହିଥିଲି ଓ କଲେଜ ଅଧ୍ୟାପକ ପଦ ପ୍ରତ୍ୟାଖ୍ୟାନ କରିଦେଇଥିଲି ।"[୬୬] ଶ୍ରୀଧର ଦାସ ଅତ୍ୟନ୍ତ ବାସ୍ତବବାଦୀ ଥିଲେ । ତେଣୁ ବାସ୍ତବତା ଦୃଷ୍ଟିକୋଣରୁ ଭବିଷ୍ୟତକୁ ବିଚାର କରି ସରକାରୀ ଚାକିରିର ପ୍ରତ୍ୟାଖ୍ୟାନ କେବେ ଅଯୌକ୍ତିକର ନହୋଇପାରେ । ବରଂ ଏହି କ୍ଷେତ୍ରରେ ଆମେ ଶ୍ରୀଧର ଦାସଙ୍କୁ ଅତ୍ୟନ୍ତ ପରିଣାମଦର୍ଶୀ ଓ ଦୂରଦୃଷ୍ଟି ସମ୍ପନ୍ନ ବୋଲି କହିପାରିବା ।

ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍‌ରେ ସେ ୧୯୪୮ ମସିହାରୁ ୧୯୬୮ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପନା କରିଥିଲେ । ପୂର୍ବ ଅଭିଜ୍ଞତା ଏହି କ୍ଷେତ୍ରରେ ଏକ ଭିନ୍ନ ରୂପ ଗ୍ରହଣ କଲା । ଦୀର୍ଘଦିନ ଶିକ୍ଷକତା କରିଥିବାରୁ ପ୍ରାଥମିକ ପର୍ଯ୍ୟାୟରେ ସେ ସେହି ଢାଞ୍ଚାରେ ମାତ୍ର ଅଧ୍ୟାପନା କରିଥିଲେ; ଯାହାକି ତତ୍କାଳୀନ ଛାତ୍ରମାନଙ୍କୁ ଆଦୌ ସନ୍ତୁଷ୍ଟ କରିପାରୁନଥିଲା । ପରେ ଅବଶ୍ୟ ଏହି ଅସୁବିଧାଟି ରହିଲା ନାହିଁ । ସେ ମହାବିଦ୍ୟାଳୟରେ ଛାତ୍ରମାନଙ୍କୁ କିପରି ପାଠପଢ଼ାରେ ସନ୍ତୁଷ୍ଟ କରାଯାଇପାରିବ, ସେହି କୌଶଳକୁ ସେ ଆୟତ୍ତ କରିପାରିଲେ ଓ ଅଚିରେ ଜଣେ ଆଦର୍ଶ ଅଧ୍ୟାପକ ହୋଇପାରିଲେ । ଅଧ୍ୟାପନାକାଳୀନ ଅତୀତ ସ୍ମୃତିକୁ ଅବତାରଣା କରିବାକୁ ଯାଇ ସେ କୁହନ୍ତି, "x x କଲେଜରେ ମାତୃଭାଷା ବା ଐଚ୍ଛିକ ଓଡ଼ିଆ ବା ଓଡ଼ିଆ ଅନର୍ସ କିପରି ପଢ଼ାଇବାକୁ ହୁଏ ବା ହେବା ଉଚିତ ସେ ସମ୍ବନ୍ଧରେ ମୋର ଧାରଣା ନଥିଲା । ପୁଣି ଦୀର୍ଘକାଳ ହାଇସ୍କୁଲରେ ଇଂରାଜୀ ବା ଓଡ଼ିଆ ପଢ଼ାଇବାରେ ଅଭ୍ୟସ୍ତ ହୋଇଥିବାରୁ

(୬୬) ସୁଅ ମୁହଁର ପଥର : ଶ୍ରୀଧର ଦାସ / ପୃ : ୨୫୩-୨୫୪

ଶବ୍ଦାର୍ଥ ବା ଭାବାର୍ଥ ଉପରେ ଗୁରୁତ୍ୱ ଦେଉଥିଲି; କିନ୍ତୁ ଛାତ୍ରମାନେ ତାହା ଦରକାର କରୁନଥିଲେ । ସେମାନେ ଚାହୁଁଥିଲେ ପାଠ୍ୟ ବିଷୟରେ ଗୋଟିଏ ସମାଲୋଚନା, ଯାହାକି ସେମାନଙ୍କୁ ପରୀକ୍ଷାରେ ସାହାଯ୍ୟ କରିବ । x x x ସ୍କୁଲରେ କୌଣସି ଶ୍ରେଣୀରେ ଅତି ବେଶୀ ହେଲେ ଚାଳିଶ ଯାଏ ପିଲା ଥାଆନ୍ତି । ପୁଣି ସେମାନେ ଅଳ୍ପ ବୟସ୍କ । ପ୍ରାୟ ପ୍ରତ୍ୟେକ ଛାତ୍ର ଉପରେ ଦୃଷ୍ଟି ରଖିହୁଏ । କେହି ଅନ୍ୟମନସ୍କ ହେଲେ ବା ଗୋଳମାଳ କଲେ ତାକୁ ଶାସନ କରିବା ସହଜ । କିନ୍ତୁ କଲେଜ୍‌ରେ ଗୋଟିଏ ଗୋଟିଏ ଶ୍ରେଣୀରେ ଦେଢ଼ଶହ ବା ତହିଁରୁ ଅଧିକ ଛାତ୍ର । ସେମାନେ ଅଧିକାଂଶ ପରିଣତ ବୟସର ଯୁବକ; କେହି କେହି ମୋର ସମବୟସ୍କ । ସେମାନେ ଗୋଳମାଳ କଲେ ଆଖି ଦେଖାଇ ଧମକ ଦେଇ ଶାସନ କରିବା ଏକବାରେ ଅସମ୍ଭବ ।"(୬୭) ତାହାରି ମଧ୍ୟରେ ସେ କହିଛନ୍ତି, "x x x କିଛିଦିନ ପରେ କ୍ଲାସ୍‌ରେ ଶୃଙ୍ଖଳା ରଖିବାର କାଇଦାଟା ଆୟତ୍ତ ହୋଇଗଲା । ସାର ଥାଉ ବା ନ ଥାଉ କୌଣସି ମତେ ବିଷୟକୁ ଛାତ୍ରମାନଙ୍କ ପକ୍ଷରେ ରୁଚିକର ବା Interesting କରିପାରିଲେ ହେଲା । କ୍ରମେ ଶିଖିଲି ଯେ ଖାଲି ସେତିକି କଲେ ଯଥେଷ୍ଟ ନୁହେଁ; କାରଣ କେତେକ ବୁଦ୍ଧିମାନ ପିଲାଙ୍କ ପାଖେ ଉପହାସ୍ୟାସ୍ପଦ ହେବାର ଭୟ ଥାଏ । ସେଥିପାଇଁ ଘରେ ପଢ଼ି ପ୍ରସ୍ତୁତ ହୋଇ କ୍ଲାସ୍ ନେବାକୁ ଗଲି ।"(୬୮)

ଥରେ ମାନସିକ ସ୍ତରରେ ଛାତ୍ରମାନଙ୍କର ମନସ୍ତତ୍ତ୍ୱକୁ ଉପଲବ୍ଧି କରି ଓ ପାଠ୍ୟ ପ୍ରସଙ୍ଗ ଉପରେ ବିଷଦ୍ ଭାବରେ ପ୍ରସ୍ତୁତ ହୋଇ ଅଧ୍ୟାପନା କରିବା ପରେ ସେ ଆଉ କୌଣସି ପ୍ରକାରର ଅସୁବିଧାର ସମ୍ମୁଖୀନ ହୋଇନାହାନ୍ତି କି ତାଙ୍କ ଶ୍ରେଣୀରେ କେବେ ଛାତ୍ର-ବିଶୃଙ୍ଖଳାଭାବ ବା ଛାତ୍ରମାନଙ୍କର ଅମନଯୋଗିତା ଭାବ ଦେଖାଯାଇନାହିଁ । ସେ ଅଚିରେ ସବୁ ଛାତ୍ରଙ୍କର ପ୍ରିୟ ଅଧ୍ୟାପକ ହୋଇପାରିଛନ୍ତି । ପ୍ରଫେସର ପଠାଣି ପଟ୍ଟନାୟକ, ଯିଏ କି ସେ ସମୟରେ ଜଣେ ତରୁଣ ଅଧ୍ୟାପକ ଭାବରେ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଯୋଗ ଦେଇଥିଲେ—ସେ ସମୟର ସ୍ମୃତିଚାରଣ ପୂର୍ବକ ଶ୍ରୀଧର ଦାସଙ୍କ ଅଧ୍ୟାପନା ଶୈଳୀ ସମ୍ପର୍କରେ ମତ ପୋଷଣ କରି କୁହନ୍ତି, "x x ଏ କଥାକୁ ଆଦୌ କେହି ବିଶ୍ୱାସ କରିବେ ନାହିଁ । x x ବର୍ତ୍ତମାନ ତ ନିୟମ ହୋଇଗଲାଣି ୧୨୮ ପିଲା କ୍ଲାସ୍ କରିବେ । ସେତେବେଳେ ତାହା ନଥିଲା । ଗୋଟିଏ ଗୋଟିଏ କ୍ଲାସ୍‌ରେ, ବିଶେଷକରି ଏମ୍.ଆଇ.ଏଲ୍ କ୍ଲାସ୍‌ରେ ପାଖାପାଖି ୨୦୦ ପିଲା ନାଁ ଲେଖାଉଥିଲେ । ଓଡ଼ିଆ ଅପସ୍‌ନାଲ କ୍ଲାସ୍‌ରେ ୧୦୦-୬୦ରୁ କମ୍ ପିଲା ନଥିଲେ । ଏବଂ ସେତେବେଳେ କ୍ଲାସ୍‌ରେ ଗ୍ୟାଲେରୀ ନଥିଲା । ଅଲଗା ହଲ ମଧ୍ୟ ନଥିଲା । ପ୍ରଥମେ ସେହିମାନେ ତ ଅଧ୍ୟାପକ

(୬୭) ସୁଅ ମୁହଁର ପତର : ଶ୍ରୀଧର ଦାସ / ପୃ : ୨୫୭-୨୫୮

(୬୮) ତତ୍ରୈବ / ପୃ : ୨୫୮

ଥିଲେ, ଓଡ଼ିଆ ପଢ଼ାଉଥିଲେ । ଚାକିରି କରୁଥିବା—ସବୁ ସିନିୟର ଲୋକଙ୍କୁ ସେ ବର୍ଷ ବର୍ଷ କାଳ ପଢ଼ାଇଛନ୍ତି । ପିନ୍‌ଡ୍ରପ୍ ସାଇଲେନ୍‌ସ । x x ଜଣେ ଭଲ ଅଧ୍ୟାପକର ତ ଏଇ ପରିଚିତି ।"(୬୯) ଅନୁରୂପ ଭାବରେ ପ୍ରଫେସର ଡକ୍ଟର କୃଷ୍ଣ ଚରଣ ବେହେରା ମଧ୍ୟ କୁହନ୍ତି ଯେ, ସେ ଥରେ କୌଣସି ଏକ କାମରେ ଖ୍ରୀଷ୍ଟ ମହାବିଦ୍ୟାଳୟକୁ ଯାଇଥିଲେ । ସେତେବେଳେ ଶ୍ରୀଧରବାବୁ କ୍ଲାସ୍ ନେଉଥାନ୍ତି । ବାହାରେ ଥାଇ ସେ ତାଙ୍କ ପାଠପଢ଼ାକୁ ଶୁଣିଛନ୍ତି । ସେତେବେଳେ ସେ ପ୍ରାଚୀନ ସାହିତ୍ୟ ପଢ଼ାଉଥିଲେ । ଚମତ୍କାର ତାଙ୍କର ବର୍ଣ୍ଣନା ଶୈଳୀ ଓ ପ୍ରସଙ୍ଗକୁ ବୁଝାଇବାର ଧାରା । ଶ୍ରୀଧରବାବୁଙ୍କ ପଢ଼ାଇବା ଶୈଳୀରେ ସେ ମୁଗ୍‌ଧ ହୋଇଛନ୍ତି ।(୭୦)

ସେତେବେଳେ ଶ୍ରୀଧର ଦାସ କଲେଜରେ ପ୍ରାଚୀନ ସାହିତ୍ୟ ପଢ଼ାଉଥିଲେ । କ୍ଲାସ୍‌ରେ ଶବ୍ଦର ବ୍ୟୁତ୍ପତ୍ତି ଓ ଅର୍ଥ ଉପରେ ମଧ୍ୟ ସେ ଗଭୀର ଗୁରୁତ୍ୱ ପ୍ରଦାନ କରୁଥିଲେ । ତେଣୁ ଅନେକ ସମୟରେ କ୍ଲାସ୍ ଶୁଷ୍କ ମନେ ହେଉଥିଲା । ଏ ସମ୍ପର୍କରେ ଓଡ଼ିଶାର ଲବ୍‌ଧ ପ୍ରତିଷ୍ଠିତ ଗାଳ୍ପିକ ଓ ଔପନ୍ୟାସିକ ବିଭୁତି ପଟ୍ଟନାୟକଙ୍କର ମତ ଏକାନ୍ତ ଭାବରେ ସ୍ମରଣୀୟ । ସେ କୁହନ୍ତି, "x x x ସାର୍ ଯେତେବେଳେ ଆମକୁ 'ରସ କଲ୍ଲୋଳ' ପଢ଼ାଉଥିଲେ ଏବଂ ପ୍ରତ୍ୟେକ ପଦରେ ଥିବା ଅଳଙ୍କାର, ବ୍ୟବହୃତ ଶବ୍ଦର ଉତ୍ପତ୍ତି ସମ୍ପର୍କରେ ଏତେ ବେଶୀ ଗୁରୁତ୍ୱ ଦେଉଥିଲେ ଯେ, କାବ୍ୟରେ ନିୟୋଜିତ ରସଧାରା ପ୍ରାୟ ଶୁଷ୍କ ମନେ ହେଉଥିଲା । x x କିନ୍ତୁ ତାଙ୍କର ପଢ଼ାଇବାର ଢଙ୍ଗ, ବୁଝାଇବାର ଠାଣୀରେ ଏପରି ମୌଳିକତା ଥିଲା ଯେ, କ୍ଲାସ୍‌ରେ ଅନ୍ୟମନସ୍କ ହେବା ପ୍ରାୟ ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା । ସେ ପ୍ରାୟ କ୍ଲାସ୍‌ର ଅଧିକାଂଶ ଛାତ୍ରଙ୍କୁ ବ୍ୟକ୍ତିଗତ ଭାବରେ ଚିହ୍ନି ରଖିଥିଲେ । ମଝିରେ ମଝିରେ ବୁଝିପାରୁଛ କି ନାହିଁ ବୋଲି ନାମ ଧରି ପଚାରିଦେଲେ, ଅନ୍ୟମନସ୍କ ଛାତ୍ରର ଛାତିରୁ ଅତଡ଼ା ଖସିପଡୁଥିଲା ।"(୭୧)

ଶ୍ରୀଧର ଦାସଙ୍କର ଅନ୍ୟ ଏକ ଛାତ୍ର ତଥା ଓଡ଼ିଶାର ବିଶିଷ୍ଟ ନାଟ୍ୟକାର ନାଟ୍ୟଭାରତୀ ଭଂଜ କିଶୋର ପଟ୍ଟନାୟକ ମଧ୍ୟ ତାଙ୍କ ଅଧ୍ୟାପନା ଶୈଳୀ ସମ୍ପର୍କରେ ମତ ପୋଷଣ କରି କୁହନ୍ତି, "x x ତାଙ୍କର ପାଠ ପଢ଼ାଇବାରେ ପୂରି ରହିଥିଲା ଶ୍ରଦ୍ଧା ଓ ଆନ୍ତରିକତା । ବିଶେଷତଃ ତାହାଙ୍କ କବିତା ଶିକ୍ଷାଦାନ ମୋତେ ଖୁବ୍ ପ୍ରଭାବିତ କରିଥିଲା । ସେ ନିଜସ୍ୱ

(୬୯) ଅଧ୍ୟାପକ ପ୍ରଫେସର ପଠାଣି ପଟ୍ଟନାୟକଙ୍କ ସହିତ ସାକ୍ଷାତକାର / ତା ୦୭.୦୧.୨୦୦୭

(୭୦) ପ୍ରଫେସର କୃଷ୍ଣ ଚରଣ ବେହେରାଙ୍କ ସହିତ ଏକ ବ୍ୟକ୍ତିଗତ ଆଳାପ ।

(୭୧) ଆଦର୍ଶ ମଣିଷ : ଡକ୍ଟର ବିଭୁତି ପଟ୍ଟନାୟକ / ଆଦର୍ଶ ମଣିଷ ଶ୍ରୀଧର ଦାସ : ସଂ - ଡକ୍ଟର ବିଭୁତି ପଟ୍ଟନାୟକ / ପୃ : ୯୨

ଶୈଳୀରେ ଶିକ୍ଷାଦାନ କରୁଥିଲେ । ପ୍ରଥମେ କବିତାଟିକୁ ପ୍ରାଞ୍ଜଳ ଭାବେ ଉଚ୍ଚସ୍ୱରରେ ଏକାଧିକବାର ଆବୃତ୍ତି କଲାପରେ ସେ କ୍ଲିଷ୍ଟ ଶବ୍ଦଗୁଡ଼ିକୁ ସରଳ ଓଡ଼ିଆ ଭାଷାରେ ଅର୍ଥ କରିଦେଉଥିଲେ । ତାହାପରେ କବିତାଟିର ସାରାଂଶ ସେ ଗଦ୍ୟରେ କହି ଦେଉଥିଲେ । x x ଶ୍ରେଣୀ ଗୃହରେ ସାର୍ ପାଠ ପଢ଼ାଉଥିବା ବେଳେ ମନେ ହେଉଥିଲା ସତେ ଯେପରି ସାହିତ୍ୟ ଏକ ମଧୁର ସର ଭଳି ଛାତ୍ରମାନଙ୍କ ହୃଦୟକୁ ପ୍ଲାବିତ କରୁଅଛି । କହିବାରେ ଅନର୍ଗଳ, ଅଦ୍‌ଭୁତ ଭଙ୍ଗୀ ସହିତ ଭାବ ଓ ଭାଷା ଏପରି ଇନ୍ଦ୍ରଜାଲ ସୃଷ୍ଟି କରୁଥିଲା ଯେ, ମୋର ମନେ ହେଉଥିଲା ପାଠ୍ୟ ପୁସ୍ତକର ଆବଶ୍ୟକତା ଆଉ ନାହିଁ ।"(୭୨)

ଅଧ୍ୟାପକ ଶ୍ରୀଧର ଦାସ ଥିଲେ ଜଣେ ରୂଢ଼ିବାଦୀ । ପ୍ରାଚୀନ ବ୍ୟାକରଣ ଧାରାରେ ସେ କୌଣସି ପ୍ରକାରରେ ବ୍ୟତିକ୍ରମକୁ ସହ୍ୟ କରିପାରୁ ନଥିଲେ । ଛାତ୍ର-ଛାତ୍ରୀମାନଙ୍କ ପାଇଁ ସେ ଯେଉଁ 'ସର୍ବସାର ବ୍ୟାକରଣ' ରଚନା କରିଥିଲେ; ତାହା ଅଧ୍ୟାପକମାନଙ୍କ ଦ୍ୱାରା ମଧ୍ୟ ଅନୁସୃତ ହେଉଥିଲା । ତେଣୁ ସେ ଛାତ୍ରମାନଙ୍କର ବ୍ୟାକରଣ ଜ୍ଞାନ କିପରି ପୁଷ୍ଟ ହେବ ସେ ଦିଗରେ ସେ ଖୁବ୍ ଯତ୍ନଶୀଳ ଥିଲେ । ଏପରିକି ଟିଉଟରିଆଲ୍ କ୍ଲାସ୍‌ରେ ମଧ୍ୟ ସେ ପ୍ରତ୍ୟେକଟି ଛାତ୍ରଙ୍କର ଖାତାକୁ ଦେଖୁଥିଲେ ଓ ଭୁଲ ସ୍ଥାନରେ ନାଲିଗାର ଟାଣି ତାକୁ ସଂଶୋଧନ କରୁଥିଲେ । ଏହିପରି ଏକ ଘଟଣାକୁ ମନେ ପକାଇଛନ୍ତି ଔପନ୍ୟାସିକ ବିଭୁତି ପଟ୍ଟନାୟକ ସେ କହିଛନ୍ତି, "x x ସଂସ୍କୃତ ବ୍ୟାକରଣ ନୀତି ନିୟମ କଡ଼ାକଡ଼ି ଭାବରେ ମାନି ଚଳିଲେ ଆଧୁନିକ ପାଠକର ଚେତନାରେ ଚମକ ସୃଷ୍ଟି କଲାଭଳି ବାକ୍ୟଗଠନ ଓ ନୂତନ ଶବ୍ଦ ଚୟନ କରିବା ସମ୍ଭବ ହେବନାହିଁ ବୋଲି ମୋର ସେତେବେଳେ ଏକପ୍ରକାର ଧାରଣା ବଦ୍ଧମୂଳ ହୋଇଥାଏ । ତେଣୁ କର୍ତ୍ତା-କର୍ମ-କ୍ରିୟାମାନଙ୍କୁ ବାକ୍ୟମାନଙ୍କର ଯେ କୌଣସି ସ୍ଥାନରେ ବସାଇବା କିମ୍ବା ବାଦ୍ ଦେବା-ମୋର ପ୍ରାୟ ଏକପ୍ରକାର ନିଶା ହୋଇଯାଇଥିଲା । x x ସେଥିପାଇଁ ସାର୍‌ଙ୍କ ପାଖରୁ ମୋତେ ଅନେକ ସମୟରେ ଗାଳି ଶୁଣିବାକୁ ପଡୁଥିଲା ।"(୭୩)

ଏହିସବୁ ଦୃଷ୍ଟିକୋଣରୁ ଅଧ୍ୟାପକ ଶ୍ରୀଧର ଦାସ ଯେ ଜଣେ ଆଦର୍ଶ ଅଧ୍ୟାପକ ହେବାର ଗୌରବ ଲାଭ କରିଥିଲେ, ଏଥିରେ ସନ୍ଦେହ ନାହିଁ । କେବଳ ଛାତ୍ର-ଛାତ୍ରୀଙ୍କ ନିକଟରେ ନୁହେଁ, ସହକର୍ମୀମାନଙ୍କ ନିକଟରେ ମଧ୍ୟ ସେ ଜଣେ ମେଳାପୀ ଓ ସ୍ନେହପ୍ରବଣ ଅଧ୍ୟାପକ ଥିଲେ, ଏଥିରେ ଦ୍ୱିମତ ନଥାଇପାରେ । ପ୍ରଫେସର ପଠାଣି ପଟ୍ଟନାୟକ ତାଙ୍କ

(୭୨) ପର ପାରିରେ ମୋ ସାର୍ : ନାଟ୍ୟ ଭାରତୀ ଭଞ୍ଜ କିଶୋର ପଟ୍ଟନାୟକ / ଶ୍ରୀଧର ସ୍ମରଣେ : ସଂ - ହେମନ୍ତ କୁମାର ପରିଡ଼ା / ପୃ : ୩୬

(୭୩) ଆଦର୍ଶ ମଣିଷ : ଡକ୍ଟର ବିଭୁତି ପଟ୍ଟନାୟକ / ଆଦର୍ଶ ମଣିଷ ଶ୍ରୀଧର ଦାସ : ସଂ - ବିଭୁତି ପଟ୍ଟନାୟକ / ପୃ : ୯୧-୯୨

ସହିତ ୧୯୫୧ ମସିହା ଠାରୁ ୧୯୬୮ ମସିହା (ଶ୍ରୀଧର ଦାସ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଅବସର ଗ୍ରହଣ କରିବା ସମୟ) ପର୍ଯ୍ୟନ୍ତ କାମ କରିଛନ୍ତି । ସେ ତାଙ୍କ ଠାରୁ ପିତୃସୁଲଭ ସ୍ନେହ ଲାଭ କରିଛନ୍ତି । ସେ ସେଦିନର ସ୍ମୃତିଚାରଣ କରି କୁହନ୍ତି ଯେ, ତାଙ୍କର ଓଡ଼ିଆ ଭାଷା-ସାହିତ୍ୟ ଛଡ଼ା ଇଂରାଜୀ, ବଙ୍ଗଳା, ହିନ୍ଦୀ ଓ ସଂସ୍କୃତ ଭାଷାରେ ଅପୂର୍ବ ପ୍ରବେଶ ଥିଲା । ସେ ନିଜେ ସବୁବେଳେ କିଛି ନା କିଛି ପଢୁଥିଲେ ଓ ଲେଖାଲେଖି କରୁଥିଲେ । ତରୁଣ ସହକର୍ମୀମାନଙ୍କୁ ମଧ୍ୟ ଉତ୍ସାହିତ କରି ପଢ଼ିବାକୁ ପ୍ରବର୍ତ୍ତାଉଥିଲେ । ସେ ସତର୍କ କରାଇ ଦେଉଥିଲେ ଯେ, ଖାଲି ଟେକ୍ସ ବହି ପଢ଼ି ବା ପାଠ୍ୟ ପ୍ରସଙ୍ଗକୁ ପଢ଼ାଇବା ପାଇଁ ପ୍ରସ୍ତୁତ ହୋଇ କ୍ଲାସ୍‌କୁ ଗଲେ ଜଣେ ଭଲ ଅଧ୍ୟାପକ ହୋଇପାରିବ ନାହିଁ । ଭଲ ଅଧ୍ୟାପକଟିଏ ହେବାପାଇଁ ପ୍ରଚୁର ପରିମାଣରେ ଅଧ୍ୟୟନ କରିବା ଓ ସାହିତ୍ୟ ପାଇଁ କିଛି ଲେଖାଲେଖି କରିବା ଦରକାର ବୋଲି ସେ କହୁଥିଲେ । ସବୁବେଳେ ତାଙ୍କର ମୁରବୀ ତୁଲ୍ୟ ଶ୍ରଦ୍ଧା, ସମ୍ମାନ ଓ ସହଯୋଗ ସମସ୍ତଙ୍କୁ ମିଳୁଥିଲା ।[୭୪]

ଶ୍ରେଣୀ ଗୃହରେ ଅଧ୍ୟାପନା କରିବା ଛଡ଼ା କଲେଜର ପ୍ରାୟ ଅନ୍ୟାନ୍ୟ କାମକୁ ମଧ୍ୟ ସେ ଅତ୍ୟନ୍ତ ନିଷ୍ଠାର ସହିତ କରୁଥିଲେ । ସେ ନିଜ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି, "ସେତେବେଳେ ପ୍ରିନ୍ସପାଲ ଥିଲେ ଶ୍ରୀ ବ୍ରହ୍ମାନନ୍ଦ ମହାନ୍ତି । x x ମୁଁ ପୂର୍ବରୁ ହେଡ୍‌ମାଷ୍ଟର ଥିବାରୁ କ୍ରମେ ସେ ଅଧିକରୁ ଅଧିକ Administrative କାର୍ଯ୍ୟର ଭାର ମୋତେ ଅର୍ପଣ କଲେ ଓ ମୋ କାର୍ଯ୍ୟରେ ସନ୍ତୁଷ୍ଟ ହେଲେ । ଥରେ ସେ ଯାହା ଉପରେ ଯେଉଁ ଭାର ଦେଉଥିଲେ ତାହା ପୂର୍ଣ୍ଣ ରୂପେ ତାକୁ ଛାଡ଼ି ଦେଉଥିଲେ ।[୭୫] ଏହି ସୂତ୍ରରେ ଖ୍ରୀଷ୍ଟ ମହାବିଦ୍ୟାଳୟର ସମସ୍ତ କାର୍ଯ୍ୟକୁ ସେ ଟିକିନିଖି କରି ଦେଖୁଥିଲେ ଓ ପ୍ରତ୍ୟେକଟି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକୁ ସେ ନିଷ୍ଠାର ସହିତ ସମ୍ପନ୍ନ କରୁଥିଲେ । ନିଜେ ଡ୍ରାଫ୍ଟ ଲେଖୁଥିଲେ ଓ ନିଜେ ମଧ୍ୟ ତାକୁ ଟାଇପ୍ କରି ଦେଉଥିଲେ । ଷ୍ଟାଫ୍ ମିଟିଙ୍ଗ୍‌ରେ ମଧ୍ୟ ତାଙ୍କର କ୍ରିୟାକଳାପ ଅନୁରୂପ । "Resolution dictation ଦେବେ ସେଇ, Resolution ପଢ଼ିବେ ସେଇ ଓ ତାକୁ ପୁଣି ଗୋଟି ଗୋଟି କରି ତର୍ଜମା କରି ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ସମସ୍ତ discussion open କରିବେ ସେଇ । ତା' ପୁଣି ସରଳ ସୁନ୍ଦର ସାବଲୀଳ ଇଂରାଜୀ ଭାଷାରେ ଏବଂ ଅନର୍ଗଳ ଭାବରେ ।"[୭୬] ବାସ୍ତବରେ ଗୋଟିଏ ମହାବିଦ୍ୟାଳୟର

(୭୪) ପ୍ରଫେସର ପଠାଣି ପଟ୍ଟନାୟକଙ୍କ ସହିତ ଶ୍ରୀଧର ଦାସଙ୍କ ସମ୍ପର୍କରେ ଏକ ବ୍ୟକ୍ତିଗତ ଆଲୋଚନା (ତା ୦୭.୦୧.୨୦୦୭)

(୭୫) ସୁଅ ମୁହଁର ପଥର : ଶ୍ରୀଧର ଦାସ / ପୃ : ୨୫୮

(୭୬) ଉର୍ମି କି ପାରଇ କଳି ସାଗରର କେତେ ଗଭୀରତା !! - ଶ୍ରୀ ପ୍ରଭାତ କୁମାର କର / ଶ୍ରୀଧର ସ୍ମରଣେ : ସଂ - ହେମନ୍ତ କୁମାର ପରିଡ଼ା / ପୃ : ୨୭

ଅଧ୍ୟାପକଟିଏ ହୋଇ ଅଧ୍ୟାପନା କରିବା ଛଡ଼ା ମହାବିଦ୍ୟାଳୟର ଉନ୍ନତି ପଥରେ ଅନେକ ବାକି ପଡ଼ିଥିବା କାମକୁ ସେ ଯେପରି କରିଥିଲେ, ସେଇଥିପାଇଁ ବା ସେହିଭଳି ଉଦ୍ୟମ ପାଇଁ ଆଜି ଖ୍ରୀଷ୍ଟ ମହାବିଦ୍ୟାଳୟ ଏକ ଶ୍ରେଷ୍ଠ କଲେଜ୍ ଭାବରେ ସୁନାମ ଅର୍ଜନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅଧ୍ୟାପକ ଭାବରେ ନିଜର ସ୍ଥାନ ଓ ଗାରିମାକୁ ନେଇ ସେ କେବେ ଗର୍ବିତ ନଥିଲେ । ବରଂ ସେ ନିଜର ସ୍ଥାନଭାରରେ ନମ୍ରରୁ ନମ୍ର ହୋଇ ଉଠିଥିଲେ । ନିଜର କନିଷ୍ଠ ସହକର୍ମୀଙ୍କୁ ସ୍ନେହ କରୁଥିଲେ । ତାଙ୍କର ଶିକ୍ଷା ସମ୍ବନ୍ଧୀୟ ସଂଶୟକୁ ବିନା ଦ୍ୱିଧାରେ ମୋଚନ କରୁଥିଲେ । ଏପରିକି ଅନ୍ୟାନ୍ୟ ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିବା ଅଧ୍ୟାପକମାନେ ମଧ୍ୟ ବେଳେବେଳେ ନିଜର ସଂଶୟକୁ ନେଇ ଶ୍ରୀଧର ଦାସଙ୍କ ପାଖକୁ ଚାଲି ଆସୁଥିଲେ ଓ ଶ୍ରୀଧର ଦାସ ଅକୁଣ୍ଠିତ ଚିତ୍ତରେ ସେମାନଙ୍କୁ ଶ୍ରଦ୍ଧାର ସହିତ ସେମାନଙ୍କର ସଂଶୟକୁ ମୋଚନ କରୁଥିଲେ । ଜ୍ଞାନର ତୁଙ୍ଗିମାକୁ ସ୍ପର୍ଶ କରିଥିବା ଏହି ଅଧ୍ୟାପକ ଆଜି ସମଗ୍ର ଅଧ୍ୟାପକ ସମାଜ ନିକଟରେ ଚିର ନମସ୍ୟ ହୋଇ ରହିବେ, ଏଥିରେ ଦ୍ୱିମତର ଅବକାଶ ନାହିଁ ।

## (ଗ) ଶିକ୍ଷାବିତ୍

ଶ୍ରୀଧର ଦାସ କେବଳ ଜଣେ ଶିକ୍ଷକ ବା ଅଧ୍ୟାପକ ଥିଲେ, ତାହା ନୁହେଁ; ଅଧିକନ୍ତୁ ସେ ଥିଲେ ଜଣେ ବିଶିଷ୍ଟ ଶିକ୍ଷାବିତ୍ । ଦୀର୍ଘକାଳ ଧରି ସେ ଶିକ୍ଷାକ୍ଷେତ୍ର ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ରହିବା ହେତୁ; ଶିକ୍ଷା ସମ୍ବନ୍ଧୀୟ ବିଭିନ୍ନ ନିୟମ, କାଇଦା-କଟକଣାଦିକୁ ସେ ଭଲ ଭାବରେ ଜାଣିଥିଲେ । ସେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ ବିଶ୍ୱନାଥପୁର ମି.ଇ. ସ୍କୁଲର ପ୍ରଧାନଶିକ୍ଷକତାରୁ । ଗତିପଥରେ ହୋଇଛନ୍ତି ମଧ୍ୟ ସହକାରୀ ଶିକ୍ଷକ, ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର, ଏଜୁକେସନ ଅଫିସର ଇତ୍ୟାଦି ଇତ୍ୟାଦି । ତେଣୁ ସବୁ ସ୍ତରରେ ତାଙ୍କର ଥିଲା ବିଚକ୍ଷଣ ଅଭିଜ୍ଞତା । ଶିକ୍ଷକ ଭାବରେ ଯେପରି ଶିକ୍ଷାଦାନ ଛଡ଼ା ଦୁର୍ବଳ ପିଲା ପାଇଁ ସେ ପ୍ରତିକାରାତ୍ମକ ବ୍ୟବସ୍ଥାକୁ ପ୍ରତିସ୍ଥାପନା କରୁଥିଲେ; ସେପରି ମଧ୍ୟ ଶିକ୍ଷାରେ ସଂସ୍କାର ଆଣିବା ପାଇଁ ବିଭିନ୍ନ ନିୟମ ପ୍ରଣୟନ କରିବା, ଶିକ୍ଷା କ୍ଷେତ୍ରରେ ଘଟୁଥିବା ଦୁର୍ନୀତିକୁ ରୋକିବା ପାଇଁ ବିଭିନ୍ନ ଅନୁଶାସନକୁ ପ୍ରଣୟନ କରିବା ଓ ବିଶେଷ ଭାବରେ ଅନ୍ୟ ଶିକ୍ଷକଙ୍କର ଶିକ୍ଷାଦାନ କ୍ଷେତ୍ରରେ ତ୍ରୁଟି-ବିଚ୍ୟୁତିକୁ ଲକ୍ଷ୍ୟକରି ସେଥିରେ ସଂଶୋଧନୀକରଣ କରିବା ଆଦିରେ ସେ ବିଶେଷ ଉତ୍ସାହ ପ୍ରଦର୍ଶନ କରିଥିଲେ । ତେବେ କେବେହେଲେ ମଧ୍ୟ ସେ ନିଜର ସୀମାକୁ ଲଙ୍ଘନ କରିବାକୁ ଉଦ୍ୟମ କରିନାହାନ୍ତି ।

ଯେତେବେଳେ ସେ ଯେଉଁ ପଦବୀରେ ଅବସ୍ଥାପିତ ହୋଇଛନ୍ତି, ସେତେବେଳେ ସେହି ପଦର ମର୍ଯ୍ୟାଦା ମଧ୍ୟରେ ରହି ସେ ନିଜର କ୍ଷମତା ପ୍ରଦର୍ଶନ କରିଛନ୍ତି । କ୍ଷମତାରେ ଅଛନ୍ତି ବୋଲି ତା'ର ପ୍ରଭାବରେ ମଧ୍ୟ ଅନ୍ୟଙ୍କୁ କେବେ ଅସମ୍ମାନିତ କରିନାହାନ୍ତି । ନିଜର ଆତ୍ମସମ୍ମାନ ପ୍ରତି ସେ ଥିଲେ ଯେତିକି ମାତ୍ରାରେ ସଚେତନ, ତତୋଽଧିକ ପରିମାଣରେ ଅନ୍ୟର ଆତ୍ମସମ୍ମାନ ପ୍ରତି ସେ ଥିଲେ ଶତତ ଜାଗ୍ରତ । ଏହିସବୁ ଘଟଣାରୁ ତାଙ୍କର ମହାନ ବ୍ୟକ୍ତିତ୍ୱର ପରିଚୟ ବେଶ୍ ସ୍ପଷ୍ଟ ହୋଇଉଠିଥାଏ । କେତୋଟି ଦୃଷ୍ଟାନ୍ତ ମାଧ୍ୟମରେ ତାଙ୍କର ଶିକ୍ଷା ବିଭାଗ ସଂକ୍ରାନ୍ତରେ ବିଶେଷ ଅନୁଚିନ୍ତା ଓ ଉଲ୍ଲେଖନୀୟ କୃତିକୁ ଆକଳନ କରାଯାଇପାରେ ।

ବଉଦ ଷ୍ଟେଟ୍‌ରେ କିଙ୍ଗ୍ ଏଡ୍‌ୱାର୍ଡ ସପ୍ତମ ମାଇନର ସ୍କୁଲରେ ପ୍ରଧାନଶିକ୍ଷକ ଥିବାବେଳେ ରାଜା ନରେନ୍ଦ୍ର ଦେବ ତାଙ୍କୁ ସେହି ସ୍କୁଲକୁ ହାଇସ୍କୁଲରେ ପରିଣତ କରିବା ପାଇଁ ଅନୁରୋଧ କରିବା ସହ ସେ ସଂକ୍ରାନ୍ତୀୟ ସମସ୍ତ କ୍ଷମତା ପ୍ରଦାନ କରିଥିଲେ । ଏହି ସୂତ୍ରରେ ଅଭିଜ୍ଞ ଶିକ୍ଷକ ଶ୍ରୀଧର ପ୍ରଥମେ ଅନୁସନ୍ଧାନ କରି ଜାଣିଲେ ଯେ, ରାଜାସାହେବଙ୍କର ହାଇସ୍କୁଲ ନିର୍ମାଣ ସଂକ୍ରାନ୍ତୀୟ ମନୋଭାବକୁ ଦେୱାନ ସାହେବ ଗ୍ରହଣ କରିପାରୁନାହାନ୍ତି; ଯଦିଓ ଦେୱାନ ସାହେବଙ୍କର ହାଇସ୍କୁଲ ନିର୍ମାଣ ଦିଗରେ ଥିବା ବିପକ୍ଷ ମତ ତତ୍କାଳୀନ ଆର୍ଥିକ ଦୃଷ୍ଟିକୋଣରୁ ବେଶ୍ ଯୁକ୍ତିଯୁକ୍ତ ଥିଲା । ତେଣୁ ସେ ଚତୁରତାର ସହିତ ଦେୱାନଙ୍କ ସହ ପରାମର୍ଶ ପୂର୍ବକ ହାଇସ୍କୁଲ ନିର୍ମାଣ ଦିଗରେ ହେବାକୁ ଥିବା ଖର୍ଚ୍ଚର ଏକ ଅଟକଳ ପ୍ରସ୍ତୁତ କରି ରାଜାସାହେବଙ୍କ ନିକଟକୁ ପଠାଇଥିଲେ । କେବଳ ଖର୍ଚ୍ଚର ଅଟକଳ ସେ ପ୍ରସ୍ତୁତ କରିନଥିଲେ; କରିଥିଲେ ମଧ୍ୟ ହାଇସ୍କୁଲ ସଂକ୍ରାନ୍ତରେ ଅନେକ ନିୟମ-କାନୁନ ଇତ୍ୟାଦି; ଯାହାକୁ କି ଆମେ ମୌଳିକ ତଥା ପ୍ରାଥମିକ ପର୍ଯ୍ୟାୟର ନିୟମାବଳୀ (ଡ୍ରାଫ୍‌ଟ) ବୋଲି କହିପାରିବା । ପରବର୍ତ୍ତୀ କାଳରେ ରାଜାଙ୍କ ଅନୁମୋଦନ ତଥା ଅନୁଗ୍ରହ କ୍ରମେ ଯେତେବେଳେ ହାଇସ୍କୁଲଟିଏ ନିର୍ମାଣ କରାଗଲା, ବସ୍ତୁତଃ ଶ୍ରୀଧର ଦାସଙ୍କ ଦ୍ୱାରା ପ୍ରସ୍ତୁତ ନିୟମାବଳୀ ଉପରେ ହିଁ ହାଇସ୍କୁଲର କାର୍ଯ୍ୟକାରିତା ପର୍ଯ୍ୟବସିତ ହୋଇଥିଲା ।

ଅନ୍ୟପକ୍ଷରେ ଯେତେବେଳେ ରାଜା ଷ୍ଟେଟ୍‌ରେ ଶିକ୍ଷାର ପୂର୍ଣ୍ଣାଙ୍ଗ ବିସ୍ତାର ପାଇଁ ଚିନ୍ତା କରି ଶ୍ରୀଧର ଦାସଙ୍କୁ ପ୍ରଧାନଶିକ୍ଷକ ପଦବୀରୁ ଆଣି ଷ୍ଟେଟ୍‌ର ଏଜୁକେସନ ଅଫିସର କରାଇଥିଲେ; ସେତେବେଳେ ମଧ୍ୟ ସେ ମାଗଣା ପ୍ରାଥମିକ ଶିକ୍ଷା ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଥିଲେ । ବାଧ୍ୟତାମୂଳକ ନିମ୍ନ ପ୍ରାଥମିକ ଶିକ୍ଷା ପ୍ରତି ମଧ୍ୟ ସେ ବିଶେଷ ଭାବରେ ଉତ୍ସାହ ପ୍ରଦାନ କରିବା ସହ ସେ ଦିଗରେ ବିଧିବଦ୍ଧ ପ୍ରଯତ୍ନକୁ ବଳବତ୍ତର ରଖିଥିଲେ ।

ପ୍ରଧାନଶିକ୍ଷକ ଭାବରେ ଓ ଏଜୁକେସନ୍ ଅଫିସର ଭାବରେ ଦୀର୍ଘଦିନ ରହି ସେ ଶିକ୍ଷା ଆଇନ୍ ବା ଏଜୁକେସନାଲ୍ କୋର୍ଡକୁ ଭଲଭାବରେ ବୁଝିଥିଲେ ଓ ସ୍ମରଣ ମଧ୍ୟ

ରଖୁଥିଲେ । ସମ୍ଭବତଃ ଏହି କାରଣରୁ ଯେତେବେଳେ ସେ ପରବର୍ତ୍ତୀ କାଳରେ ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍‌ରେ ଅଧ୍ୟାପକ ଭାବରେ କାର୍ଯ୍ୟ କଲେ, ସେତେବେଳେ ଶିକ୍ଷା ସମ୍ପର୍କୀୟ ଅବଧାରଣା ଓ ଶିକ୍ଷାନୀତି ସମ୍ପର୍କୀୟ ତାଙ୍କର ସ୍ପଷ୍ଟ ମତ ବେଶ୍ ଅନ୍ୟମାନଙ୍କ ଦ୍ୱାରା ଗୃହୀତ ହେଉଥିଲା । ଶ୍ରୀଧର ଦାସଙ୍କ ପ୍ରିୟତମ ସହକର୍ମୀ ତଥା ଅଧ୍ୟାପକ ପଠାଣି ପଟ୍ଟନାୟକ କୁହନ୍ତି, "ଏଜୁକେସନ କୋର୍ଡ ତ ତାଙ୍କର ମୁହେଁ ମୁହେଁ ଥିଲା, କୌଣସି କୌଣସି ସ୍ଥାନରେ ଅସୁବିଧା ହେଲେ ଏଜୁକେସନ କୋର୍ଡ ଖୋଲାଇବା ପୂର୍ବରୁ ସେ କୋର୍ଡକୁ ବର୍ଣ୍ଣନା କରିବା ସହ, ତାକୁ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇପାରୁଥିଲେ ।"(୭୭)

ନିଜ କ୍ଷମତାର ପରିସର ମଧ୍ୟରେ କେହି ଯଦି କୌଣସି ପ୍ରକାରର ତ୍ରୁଟି ବିଚ୍ୟୁତି କରନ୍ତି, ତେବେ ସେତେବେଳେ ସେ ନିଜ କ୍ଷମତାର ଅପପ୍ରୟୋଗ କରନ୍ତି ନାହିଁ କି ସେ ସମ୍ବନ୍ଧରେ ଉଚ୍ଚସ୍ତରୀୟ ଅଫିସରଙ୍କୁ ମଧ୍ୟ ଜଣାନ୍ତି ନାହିଁ । ବରଂ ନିଜ ସ୍ତରରେ ତାହାର ଏକ ସରଳ ସମାଧାନ କରିଥାନ୍ତି । ଯେପରି ସେଦିନ ହରିହରପୁର ଏକାଡେମୀ ସ୍କୁଲରେ ପିଅନର କାଗଜ ଚୋରି ଘଟଣାକୁ ସେ ନିଜ ପରିସରରେ ବିଚାର କରି ତାକୁ ତା'ର ଅପରାଧକୁ ସ୍ୱୀକାର ପୂର୍ବକ ଚୋରି କାଗଜର ପୂର୍ଣ୍ଣ ଅର୍ଥ ତା'ର ଆର୍ଥିକ ସମ୍ବଳକୁ ଲକ୍ଷ୍ୟକରି ମାସକୁ ତା'ର ଦରମାରୁ ଦୁଇଟଙ୍କା ଲେଖାଁଏ କାଟିବାକୁ ନିର୍ଦ୍ଦେଶ ଜାରି କରିଥିଲେ । ମାତ୍ର ଯେତେବେଳେ ବିଦ୍ୟାଳୟର ପୃଷ୍ଠପୋଷକ ଦେବାନ ବାହାଦୂର ଶ୍ରୀ କୃଷ୍ଣ ମହାପାତ୍ର, ଯିଏ କି ପୁଲିସ ବିଭାଗରୁ ଏସ୍.ପି. ଭାବରେ ଅବସର ଗ୍ରହଣ କରିଥିଲେ, ଏହି ଚୋରି ଘଟଣା ସମ୍ପର୍କରେ ଜାଣି ଯେତେବେଳେ ଶ୍ରୀଧରଙ୍କୁ ଏ ସଂକ୍ରାନ୍ତରେ ତାଙ୍କୁ କାହିଁକି ନ ଜଣାଗଲା ବୋଲି ପ୍ରଶ୍ନ କଲେ, ସେତେବେଳେ ଶ୍ରୀଧର ଦାସ ତା'ର ପ୍ରତ୍ୟୁତ୍ତରରେ କହିଥିଲେ, "ଆଠ ଦଶ ଟଙ୍କା ମୂଲ୍ୟର ଜିନିଷ ସ୍କୁଲର ଦପ୍ତରୀ ଚୋରାଇ ନେବା ଭଳି ସାମାନ୍ୟ ଘଟଣା ଆପଣଙ୍କୁ ଜଣାଇବା ମୁଁ ଉଚିତ ମନେକରିନଥିଲି । x x ପୁଲିସକୁ ଏତଲା ଦେଇଥିଲେ ସ୍କୁଲର ନିନ୍ଦା ହୋଇଥାନ୍ତା ଇତ୍ୟାଦି ।"(୭୮) ଠିକ୍ ସେହିପରି ବଉଦରେ ଥିବାବେଳେ ଯେଉଁ ଅଭିଭାବକମାନେ ନିଜ ପିଲାର ନାଁ ସ୍କୁଲରୁ ଉଠାଇ ଦେବାକୁ ଆସୁଥିଲେ, ସେମାନଙ୍କ ଠାରୁ ସଂପୃକ୍ତ ଶିକ୍ଷକ ଉତ୍କୋଚ ଗ୍ରହଣ କରୁଥିଲେ । ଏ ଦିଗରେ ମଧ୍ୟ ସେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରି ଶିକ୍ଷାକ୍ଷେତ୍ରରେ ଗତାନୁଗତିକ ଧାରାରେ ଚାଲି ଆସୁଥିବା ଦୁର୍ନୀତିକୁ ରୋକିବା ପାଇଁ କ୍ଷମ ହୋଇଥିଲେ ।(୭୯) ସ୍କୁଲର ଉନ୍ନତି କଳ୍ପେ ସେ

---

(୭୭) ଏକ ସାକ୍ଷାତକାରରେ ଅଧ୍ୟାପକ ପଠାଣି ପଟ୍ଟନାୟକ

(୭୮) ସୁଅ ମୁହଁର ପତର : ଶ୍ରୀଧର ଦାସ / ପୃ : ୨୩୫

(୭୯) ସୁଅ ମୁହଁର ପତର : ଶ୍ରୀଧର ଦାସ / ପୃ : ୧୪୭ ଦ୍ରଷ୍ଟବ୍ୟ

ଯେଉଁ ପଦକ୍ଷେପ ଗ୍ରହଣ କରୁଥିଲେ, ସେଥିରେ ଉପରିସ୍ଥ ହାକିମଙ୍କ ସହିତ ତାଙ୍କର ମତଦ୍ୱୈଧ ଘଟୁଥିଲେ ମଧ, ସେ ନିଜ ଯୁକ୍ତିରେ ଅଟଳ ରହୁଥିଲେ ଏବଂ ସାମାନ୍ୟ ଆତ୍ମସମ୍ମାନରେ ଆଞ୍ଚ୍ ଆସିଲେ, ସେ ଯଦିଓ ଖୁବ୍ ବେଶୀ ରାଗି ଯାଉଥିଲେ, ତେବେ ଅତି ସଂକ୍ଷିପ୍ତ ମନ୍ତବ୍ୟଟିଏ ଦେଇ ସେହି କର୍ମରୁ ନିବୃତ୍ତି ପାଇଁ ତତ୍କ୍ଷଣାତ୍ ଇସ୍ତଫାପତ୍ର ପ୍ରଦାନ କରି ସେଠାରୁ ନିଜକୁ ମୁକ୍ତ କରାଇ ନେଉଥିଲେ । ତେବେ ଏହିଭଳି ଏକ ପରିସ୍ଥିତି ଥରେ ହରିହରପୁର ଏକାଡେମୀରେ ଉପୁଜିଥିଲା; ଶ୍ରୀଧର ଦାସଙ୍କର କଣ୍ଟିଜେନ୍‌ସି ଖର୍ଚ୍ଚ ବାବଦକୁ ନେଇ ଦେଓ୍ୱାନ ସାହେବଙ୍କର ବିତର୍କରୁ । ସେଠାରେ ଅବଶ୍ୟ ଶ୍ରୀଧର ନିଜର ଇସ୍ତଫା ପ୍ରଦାନ କରିବା ପୂର୍ବରୁ ଖୋଦ୍ ଦେଓ୍ୱାନ ବାହାଦୂର ତାଙ୍କୁ ଡକାଇ ନିଜର ଦୋଷକୁ ପ୍ରକାରାନ୍ତେ ମାନିନେଇ ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ ।[୮୦]

ଶିକ୍ଷା ଦିଗରେ ତାଙ୍କର ବହୁ ଦର୍ଶିତାର ଅନ୍ୟ ଏକ ନମୁନା ମଧ ଏଠାରେ ଉପସ୍ଥାପିତ କରାଯାଇପାରେ । ହରିହରପୁର ଏକାଡେମୀର ସଂସ୍କୃତ ଶିକ୍ଷକ ଏକଦା ଦଶମ ଶ୍ରେଣୀରେ 'ଧର୍ମବ୍ୟାଧ ଉପାଖ୍ୟାନ' ପଢ଼ାଉଥିଲେ । ସେଥିରେ ଗୋଟିଏ ଶ୍ଳୋକ ଥିଲା, "ପକ୍ଷୀହାୟମିତ୍ୟୁକ୍ତ୍ୱା" । କିନ୍ତୁ ପଣ୍ଡିତ ମହାଶୟ ସେହି ଶ୍ଳୋକର ଭୁଲ ଅର୍ଥ କରି 'ପକ୍ଷୀ ହାୟ' ବୋଲି କହି ବୁଝାଉଥିବାର ଶ୍ରୀଧର ଦାସ ଶୁଣିପାରିଲେ । ତେଣୁ ସେ ଏହାକୁ ସହିନପାରି ଶ୍ରେଣୀ ମଧକୁ ପ୍ରବେଶ କରି ଶ୍ଳୋକର ପ୍ରକୃତ ଅର୍ଥକୁ ବୁଝାଇଦେବା ସହ ଶବ୍ଦଟିର ସନ୍ଧିବିଚ୍ଛେଦ କରାଇ ବିଷୟଟିକୁ ସୁଗମ ଓ ସରଳ କରାଇ ଦେଇଥିଲେ ।[୮୧]

ତେଣୁ ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଶିକ୍ଷକ ଶ୍ରୀଧର ଦାସ ବା ଅଧ୍ୟାପକ ଶ୍ରୀଧର ଦାସ କେବଳ ନିଜର ଅଧୟନ ଓ ଅଧ୍ୟାପନା ମଧରେ ନିଜକୁ ସୀମିତ ନରଖି ଜଣେ ପ୍ରକୃତ ଅଧ୍ୟବସାୟୀ ଭାବରେ ତଥା ସାହିତ୍ୟରେ ରୁଚି ରଖୁଥିବା ମଣିଷ ଭାବରେ ସାହିତ୍ୟର ପ୍ରତିଟି ବିଭବକୁ ଛୁଇଁଯିବା ସହିତ ଶିକ୍ଷାର ଧାରା, ଶିକ୍ଷାର ନିୟମ-କାନୁନ୍ ଓ କେଉଁଭଳି ଛାତ୍ରଙ୍କୁ କେଉଁ ପ୍ରକାରରେ ଶିକ୍ଷାଦାନ ଦିଆଯିବା କଥା, ତାହା କେବଳ ଜାଣିନଥିଲେ; ଅଧିକନ୍ତୁ ତାହାକୁ ନିଜ କାର୍ଯ୍ୟରେ ମଧ ଲଗାଉଥିଲେ । ଏହି କାରଣରୁ ସେ ଜଣେ ଆଦର୍ଶ ଶିକ୍ଷାବିତ୍ ଭାବରେ ଯେପରି ପରିଗଣିତ ହୁଅନ୍ତି, ତାହା ନିଶ୍ଚିତ ଭାବରେ ଗ୍ରହଣଯୋଗ୍ୟ ହୋଇ ରହିଛି ଓ ଆଗାମୀ କାଳ ପାଇଁ ତାଙ୍କର ଏହି ସ୍ଥିତି ଅକ୍ଷୁଣ୍ଣ ହୋଇ ରହିଥିବ ।

---

(୮୦) ସୁଅ ମୁହଁର ପଡର : ଶ୍ରୀଧର ଦାସ / ପୃ : ୨୪୦

(୮୧) ସୁଅ ମୁହଁର ପଡର : ଶ୍ରୀଧର ଦାସ / ପୃ : ୨୪୧

# (ଘ) ପ୍ରାବନ୍ଧିକ

ପଣ୍ଡିତ ଶ୍ରୀଧର ଦାସ ଯେ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଥିଲେ, ତାହା ନିର୍ବିବାଦରେ ସ୍ୱୀକାର କରାଯାଇପାରେ । ସେ ତାଙ୍କର ଆଦ୍ୟ ସାରସ୍ୱତ ସାଧନା ସେହି ପ୍ରବନ୍ଧ ସମାଲୋଚନା ବିଭାଗରୁ ହିଁ ଆରମ୍ଭ କରିଥିଲେ । ମାତ୍ର ତାଙ୍କର ଭାଗ୍ୟ ତାଙ୍କ ରୁଚିର ପ୍ରତିକୂଳରେ ଗତି କରିବାରୁ ସେ ଶେଷ ପର୍ଯ୍ୟନ୍ତ ଜଣେ ଉଚ୍ଚକୋଟୀର ବିଶିଷ୍ଟ ସମାଲୋଚକଟିଏ ହୋଇପାରିନଥିଲେ । ମାତ୍ର ଆଦ୍ୟ ସାଧନରେ ଯେଉଁ କେତୋଟି ମୌଳିକ କୃତିକୁ ସେ ନିଦର୍ଶନ ଭାବରେ ଛାଡ଼ି ଯାଇଛନ୍ତି, ତାହାର ଆକଳନ କରାଗଲେ ତାଙ୍କ ବିଦ୍‌ବତ୍ତାର ସ୍ପଷ୍ଟ ଚିତ୍ରକୁ ବେଶ୍ ଉପଲବ୍ଧି କରିହୁଏ ।

ଶ୍ରୀ ଦାସ ଯେତେବେଳେ ବଉଦ ଷ୍ଟେଟ୍‌ରେ ପ୍ରଧାନଶିକ୍ଷକ ହୋଇ ରହିଥିଲେ, ଠିକ୍ ସେତିକିବେଳେ ହିଁ ତାଙ୍କର ଏହି ସାରସ୍ୱତ ସାଧନା ଦିଗରେ ମନୋନିବେଶ ଘଟିଥିଲା । ବଉଦ ଷ୍ଟେଟ୍ ଥିଲା ଗଡ଼ଜାତ ଅଞ୍ଚଳ । ସେଠାକାର ଭାଷା ମଧ ଥିଲା କଟକର ମାନକ ଓଡ଼ିଆ ଭାଷା ଠାରୁ ଅନେକାଂଶରେ ଭିନ୍ନ । ତେଣୁ ସେଠାକାର ଅଧିବାସୀମାନଙ୍କ ଦ୍ୱାରା ବ୍ୟବହୃତ ଭାଷାକୁ ବୁଝିବାରେ ସେ ପ୍ରଥମେ କଷ୍ଟ ଅନୁଭବ କରୁଥିଲେ । ବିଶେଷକରି ସେ ଯେତେବେଳେ ସେଠାକାର ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷାର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ପରୀକ୍ଷା ପରିଚାଳନା କଲେ, ସେତେବେଳେ ସେ ଏହି ବଉଦର ପ୍ରଚଳିତ ଭାଷାକୁ ନେଇ ସମସ୍ୟାରେ ପଡ଼ିଲେ ଓ ମୌଖିକ ପରୀକ୍ଷା କାଳରେ ସ୍କୁଲର ହେଡ୍‌ପଣ୍ଡିତଙ୍କ ସାହଚର୍ଯ୍ୟରେ ପିଲାମାନଙ୍କ ଦ୍ୱାରା ବ୍ୟବହୃତ ଭାଷାକୁ ବୁଝିଲେ । ଉଦାହରଣ ସ୍ୱରୂପ : ମୁନ୍‌ଗା (ଶଜନା), ମାଖନ୍ (ବୋଇତ କଖାରୁ) ଇତ୍ୟାଦି । ଏହି କ୍ରମରେ ସେ ଏହି ପ୍ରକାର ନୂତନ ଭାଷାର ମୋହରେ ପଡ଼ି ଅନେକ ପ୍ରଚଳିତ କଥିତ ଶବ୍ଦକୁ ପ୍ରଥମେ ସଂଗ୍ରହ କରିବାକୁ ଲାଗିଲେ, ଯାହାକୁ କି ସେ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରଣେତାଙ୍କୁ ଦାନ କରିଥିଲେ ।[୮୨] ଏହି ନୂତନ ଭାଷାର ମୋହ ତାଙ୍କ ଭିତରେ ପୁଣି ଏତେ ବଳବତ୍ତର ହେଲା ଯେ, ସେ ଏହି ଭାଷାକୁ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ବିବେଚନା କରି ଲେଖିଥିଲେ ତାଙ୍କର ପ୍ରଥମ ସାରସ୍ୱତ ପ୍ରବନ୍ଧ : "ବଉଦର ଭାଷା" ।[୮୩]

ଶ୍ରୀଧର ଦାସ ସେହି 'ବଉଦର ଭାଷା' ପ୍ରବନ୍ଧରେ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଥିଲେ ଯେ, "ଏଠାରେ ଏପରି କେତେଗୁଡ଼ିଏ ଶବ୍ଦ ବ୍ୟବହୃତ ହୁଏ, ଯାହାକି

(୮୨) ସୁଅ ମୁହଁର ପତର : ଶ୍ରୀଧର ଦାସ / ପୃ : ୧୫୩

(୮୩) ବଉଦର ଭାଷା / ସହକାର – ୧୧ଶ ଓ ୧୨ଶ ସଂଖ୍ୟା (ଫାଲ୍‌ଗୁନ-ଚୈତ୍ର) ୧୩୩୮
ପୃ : ୫୨୪-୫୨୬

ମୋଗଲବନ୍ଦୀରେ ଆଦୌ ଶୁଣାଯାଏ ନାହିଁ । ଯଥା : ମାଖନ (ବୋଇତ କଖାରୁ), କୁଲିହା (ବିଲୁଆ), ଚାଣ୍ଡି (ପିମ୍ପୁଡ଼ି), ଚାବିବା (କାମୁଡ଼ିବା), ନୁନି (ଝିଅ), ଘିଚିବା (ଟାଣିବା) ଇତ୍ୟାଦି ।"[୮୪] ସେ ବିଭିନ୍ନ ଉଦାହରଣ ମାଧ୍ୟମରେ ଉପସ୍ଥାପିତ କରିଥିଲେ ଯେ ସେଠାକାର ଶିକ୍ଷିତ ବର୍ଗମାନେ କିପରି ନିଷେଧାର୍ଥକ ବାକ୍ୟରେ ପ୍ରଧାନ କ୍ରିୟାର ପରେ 'ନାହିଁ' ଶବ୍ଦର ବ୍ୟବହାର ନକରି ପୂର୍ବରେ ବ୍ୟବହାର କରିଥାନ୍ତି । ବା ବର୍ତ୍ତମାନ କାଳରେ 'ଛନ୍ତି'ର ବ୍ୟବହାର ପରିବର୍ତ୍ତେ କିପରି 'ସନ' ବ୍ୟବହାର କରାଯାଏ । ଉଦାହରଣ : ଯାଇଛନ୍ତି ହୁଏ ଯାଇସନ, ଖାଉଛନ୍ତି ହୁଏ ଖାଉସନ ଇଦ୍ୟାଦି । ସେ ପୁନଶ୍ଚ ସୂଚାଇଥିଲେ ଯେ କିପରି ସେମାନେ ପ୍ରଶ୍ନବାଚକ ବାକ୍ୟରେ ବା ଅନୁଜ୍ଞାସୂଚକ ବାକ୍ୟରେ 'ବୋ'ର ପ୍ରଚଳନ କରିଥାନ୍ତି ଇତ୍ୟାଦି । ସେ ଅତ୍ୟନ୍ତ ସ୍ପଷ୍ଟ ଭାବରେ ବଉଦର ଭାଷା ସମ୍ପର୍କରେ ମତ ପ୍ରଦାନ କରି କହିଛନ୍ତି ଯେ, "ଶବ୍ଦଗତ ପାର୍ଥକ୍ୟ ଅପେକ୍ଷା ବାକ୍ୟ ମଧ୍ୟରେ ଶବ୍ଦମାନଙ୍କର ଉଚ୍ଚାରଣଗତ ପାର୍ଥକ୍ୟ ଅନେକ ସମୟରେ ବଉଦର ଭାଷାକୁ ମୋଗଲବନ୍ଦୀର ଓଡ଼ିଆ ଠାରୁ ବେଶୀ ବିଭିନ୍ନ କରିଦିଏ । କେବଳ ଶବ୍ଦମାନଙ୍କର ଅର୍ଥ ଜାଣିଲେ ଭାଷା ବୁଝିବା ସହଜ ନୁହେଁ, କାରଣ ବାକ୍ୟରେ ଥିବା ବିଭିନ୍ନ ଶବ୍ଦମାନେ ଉଚ୍ଚାରଣ ସମୟରେ ମିଳିତ ହୋଇ ଅନ୍ୟ ଶବ୍ଦ ପରି ବୋଧ ହୋଇପାରନ୍ତି । ତେଣୁ କେତେକ ସ୍ଥଳରେ ବଉଦ ଭାଷାର ପ୍ରଚଳିତ ଶବ୍ଦ ଜ୍ଞାତ ଥିଲେ ହେଁ ବାକ୍ୟ ବୁଝିବା କଷ୍ଟକର ହୋଇଥାଏ ।"[୮୫] ସବୁଠାରୁ ବଡ଼ କଥା ହେଉଛି ଯେ, ବଉଦର ଭାଷାକୁ ଆଲୋଚନା କରୁ କରୁ ସମୟ କ୍ରମରେ ପରିବର୍ତ୍ତିତ ଓଡ଼ିଆ ଭାଷା ସମ୍ପର୍କରେ ମତ ଦେବା ପୂର୍ବକ ଉକ୍ତ ପ୍ରବନ୍ଧ ରଚନାର ମୁଖ୍ୟ ଉଦ୍ଦେଶ୍ୟକୁ ଏହିପରି ଭାବରେ ପ୍ରକାଶ କରିଛନ୍ତି, "x x ଓଡ଼ିଆ ଭାଷା ଯେ ବିଭିନ୍ନ ସ୍ଥାନରେ ପ୍ରତିବେଶିନୀ ଭାଷାମାନଙ୍କ ଦ୍ୱାରା ପ୍ରଭାବିତ ହୋଇ କ୍ରମଶଃ କିପରି ଅଦ୍ଭୁତ ଆକାର ଧାରଣ କରିଅଛି ଓ କରୁଅଛି; ତାହା ଦେଖାଇବା ହିଁ ଏ ପ୍ରବନ୍ଧର ଉଦ୍ଦେଶ୍ୟ ।"[୮୬]

ତେବେ ବିଶେଷ କଥା ହେଉଛି ଯେଉଁ ଅଦମ୍ୟ ଉତ୍ସାହ ନେଇ ଶ୍ରୀଧର ଦାସ ଉକ୍ତ ପ୍ରବନ୍ଧଟି ଲେଖିଥିଲେ, ସେ ଉତ୍ସାହ ବେଶୀ ସମୟ ରହିଲା ନାହିଁ । ଏହି ପ୍ରବନ୍ଧଟି ହିଁ ତାଙ୍କୁ ବଉଦ ଷ୍ଟେଟ୍‌ର ଲୋକମାନଙ୍କ ଠାରେ ଅପ୍ରିୟ କରାଇଦେଲା । ସେଠାକାର ପାଠପଢୁଆ ଲୋକେ 'ବଉଦର ଭାଷା'ରେ ଥିବା ଭାଷାତାତ୍ତ୍ୱିକ ଚର୍ଚ୍ଚାକୁ ବୁଝିବା ପରିବର୍ତ୍ତେ

---

(୮୪) ସହକାର / ୧୧ଶ-୧୨ଶ ସଂଖ୍ୟା / ପୃ : ୫୨୪-୫୨୫

(୮୫) ତତ୍ରୈବ / ପୃ : ୫୨୫-୫୨୬

(୮୬) ସହକାର ୧୧ଶ ଓ ୧୨ଶ ସଂଖ୍ୟା / ପୃ : ୫୨୬

କଟକିଆ ଲୋକ ବଉଦର ଭାଷାକୁ ଉପହାସ କରୁଛନ୍ତି ବୋଲି ପ୍ରଚାର କରାଇଦେଲେ । ସ୍ଥାନୀୟ ଲୋକଙ୍କର ଅହେତୁକ ପ୍ରତିକ୍ରିୟାକୁ ଲକ୍ଷ୍ୟକରି ସେ ନିଜ ମନ ମଧ୍ୟରେ ସେହି ପ୍ରବନ୍ଧଟିର ଯେଉଁ ଦ୍ୱିତୀୟ ଭାଗ ଲେଖିବା ପାଇଁ ପରିକଳ୍ପନା କରିଥିଲେ, ତାହାକୁ ବାଧ୍ୟହୋଇ ତ୍ୟାଗ କଲେ ।

'ବଉଦର ଭାଷା' (ଦ୍ୱିତୀୟ ଭାଗ) ପ୍ରବନ୍ଧଟି ଲେଖିବାର ପରିକଳ୍ପନାକୁ ସିନା ସେ ମନରୁ ତ୍ୟାଗ କରିଦେଲେ, ତେବେ ପ୍ରବନ୍ଧ ଲେଖିବାର ପ୍ରଚେଷ୍ଟାରୁ ଦୂରେଇ ଯାଇନଥିଲେ । ତେଣୁ ବୋଧହୁଏ ସେ ସେତେବେଳେ ଏହି ପ୍ରବନ୍ଧ ଲେଖିବାର ଉପକ୍ରମକୁ ନେଇ ନିଶ୍ଚିତ ଭାବରେ ଏକ ଦ୍ୱନ୍ଦ୍ୱରେ ପଡ଼ିଥିବେ । ଭାବୁଥିବେ ନିଜର ଅଭିଳାଷକୁ ଚରିତାର୍ଥ କରିବେ କିପରି ? ହୁଏତ ଏହିଭଳି ଏକ ପରିସ୍ଥିତିରେ ସେ 'ଅନୁବାଦ କଳା'ର ଏକ ନିଶ୍ଚିତ ସାହାଯ୍ୟକୁ ଗ୍ରହଣ କରିଥିବେ । ତେଣୁ ସେ ନିଜର ଦ୍ୱିତୀୟ ପ୍ରଚେଷ୍ଟାକୁ ଆରମ୍ଭ କରନ୍ତି 'ଅନୁବାଦ ପ୍ରବନ୍ଧ' ମାଧ୍ୟମରେ । ଏହି କ୍ରମରେ ଶ୍ରୀଧର ଦାସ ନିଜର ଅନ୍ୟ ଏକ ପ୍ରବନ୍ଧ 'ଭାରତର ସନ୍ଧାନ'କୁ ପ୍ରକାଶ କରନ୍ତି ।[୮୭] ଏହି ପ୍ରବନ୍ଧଟି ମୂଳତଃ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଦ୍ୱାରା ୧୯୪୫ ମସିହାରେ ଲେଖା ଯାଇଥିଲା । ଏହା ସୈନ୍ଧବ ଉପତ୍ୟକା ସଭ୍ୟତା ଉପରେ ଆଧାରିତ ଥିଲା । ନେହେରୁ ଏହି ମହେଞ୍ଜୋଦାରୋକୁ ୧୯୩୧ ମସିହାରେ ଓ ୧୯୩୬ ମସିହାରେ, ଦୁଇଥର ବୁଲିବାକୁ ଯାଇଥିଲେ । ଦ୍ୱିତୀୟ ଥର ବୁଲିବାକୁ ଗଲାବେଳେ ଭୂଗର୍ଭରୁ ଖୋଦିତ ଅନେକ ଗୃହ, ବୃଷ୍ଟି ଓ ରୌଦ୍ର ଦ୍ୱାରା ନଷ୍ଟ ହୋଇଯିବାର ଦେଖି ବହୁତ ଦୁଃଖ ପ୍ରକାଶ କରିଥିଲେ । ସେ ମହେଞ୍ଜୋଦାରୋ ଓ ହରପ୍ପା ଠାରେ ଆବିଷ୍କୃତ ତଥା ଭୂଗର୍ଭରୁ ଖୋଦିତ ସହର ଦ୍ୱୟରେ ଯେ ସେତେବେଳେ ଧର୍ମନିରପେକ୍ଷତା ଭାବ ରହିଥିଲା, ତାହା ସେ ସୂଚାଇଛନ୍ତି । ତେଣୁ ଯେତେବେଳେ ଶ୍ରୀଧର ଏହିଭଳି ଏକ ଉଚ୍ଚକୋଟୀର ପ୍ରବନ୍ଧଟିକୁ ଦେଖିଲେ ସେତେବେଳେ ସେ ଓଡ଼ିଆ ଭାଷା ମାଧ୍ୟମରେ ସେହି ପ୍ରବନ୍ଧଟିକୁ ଅନୁବାଦ କରି ଲୋକସାଧାରଣଙ୍କୁ ପଣ୍ଡିତ ନେହେରୁଙ୍କ ଭାବନା ସହିତ ଏକାତ୍ମ କରିଦେବାକୁ ଚାହିଁଲେ । ଏହିଭଳି ଏକ ଅନନ୍ୟ ଉଦ୍ୟମ ତାଙ୍କୁ ସେତେବେଳେ ନିଶ୍ଚିତ ଭାବରେ ଅନେକ ଉତ୍ସାହ ପ୍ରଦାନ କରିଥିବ ଏବଂ ସେ ଅତୀତର ହତୋତ୍ସାହକୁ ଏହି ସଦ୍ୟ ଉତ୍ସାହ ମାଧ୍ୟମରେ ପରିପୂର୍ଣ୍ଣ କରିଥିବେ ।

ପରବର୍ତ୍ତୀ କାଳରେ ଏହି ଉତ୍ସାହର ବଶବର୍ତ୍ତୀ ହୋଇ ସେ ଅନୁବାଦ ମାଧ୍ୟମରେ ଆଉ କିଛି ନୂତନ କର୍ମ କରିବା ପାଇଁ ପ୍ରଚେଷ୍ଟା କରିଥିବେ ନିଶ୍ଚୟ । ତେଣୁ ପରବର୍ତ୍ତୀ

---

(୮୭) ଭାରତର ସନ୍ଧାନ / ପ୍ରଜାତନ୍ତ୍ର - ସେପ୍ଟେମ୍ବର ୨୪/୨୫, ୧୯୫୦

କାଳରେ ଆମେ ପାଉ ଶ୍ରୀଧର ଦାସ ଓ ଜାନକୀ ବଲ୍ଲଭ ମହାନ୍ତିଙ୍କର ଏହି ଦିଗରେ ଏକ ନୂତନ ଯୁଗଳବନ୍ଦୀ । "ପିଲାଙ୍କ ଶେକ୍ସପିୟର ଗଳ୍ପ" (୧ମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ) । ପ୍ରଥମ ଖଣ୍ଡର ପ୍ରକାଶ କାଳ ଥିଲା ୧୯୫୬ ମସିହା । ପୁସ୍ତକଟିକୁ ସେ ନିଜେ ସମସ୍ତ ଖର୍ଚ୍ଚକୁ ବହନ କରି ମୁଦ୍ରିତ କରାଇଥିଲେ । ଆର୍ଥିକ ଦୃଷ୍ଟିକୋଣରୁ ଅବଶ୍ୟ ପୁସ୍ତକଟି ତାଙ୍କୁ ବିଶେଷ ଲାଭ ପ୍ରଦାନ କରିନଥିଲା; ମାତ୍ର ସେ ଏହିଥିରୁ ବିପୁଳ ପରିମାଣରେ ପରମାର୍ଥିକ ଆନନ୍ଦ ଓ ତୃପ୍ତିଲାଭ କରିଥିଲେ । ତେଣୁ ପରବର୍ତ୍ତୀ କାଳରେ ସେ ନିଜକୁ ପୂର୍ଣ୍ଣମାତ୍ରାରେ ଅନୁବାଦ କଳା ମଧ୍ୟରେ ନିମଗ୍ନ ରଖିଛନ୍ତି; ଏହାହିଁ ଚିରନ୍ତନ ସତ୍ୟ । ତେବେ ପ୍ରବନ୍ଧ ଲେଖିବାର ଅଭିଳାଷକୁ ସେ ପୂର୍ଣ୍ଣମାତ୍ରାରେ କେବେ ତ୍ୟାଗ କରିପାରିନାହାନ୍ତି । ଉତ୍କଳ ଖ୍ରୀଷ୍ଟିଆନ କଲେଜ୍‌ରେ ଅଧ୍ୟାପକ ଭାବରେ ଯୋଗଦେବା ପରେ ଯେତେବେଳେ ସେ ଭିନ୍ନ ପାଠ୍ୟପୁସ୍ତକକୁ ସଂପାଦନା କରିଥିଲେ, ସେତେବେଳେ ତା'ର ଟୀକା ଓ ମୁଖବନ୍ଧ ଇତ୍ୟାଦିର ରଚନା କାଳରେ ତାଙ୍କର ସେହି ପ୍ରବନ୍ଧ ଲେଖିବାର କାମନା ଚରିତାର୍ଥ ହୋଇଅଛି । ସେହିସବୁ ସମ୍ପାଦିତ ଗ୍ରନ୍ଥଗୁଡ଼ିକୁ ଅନୁଧ୍ୟାନ କଲେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଗଭୀର ମନନ, ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ଓ ସୁଚିନ୍ତିତ ମନ୍ତବ୍ୟର ଉପସ୍ଥାପନକୁ ବେଶ୍ ଉପଲବ୍ଧି କରିହୁଏ ।

ମୋଟ ଉପରେ କହିବାକୁ ଗଲେ ଅଧ୍ୟାପକ ଶ୍ରୀଧର ଦାସଙ୍କର ପ୍ରବନ୍ଧ ପରିମାଣାତ୍ମକ ଦୃଷ୍ଟିକୋଣରୁ ପ୍ରଚୁର ନଥିଲେ ହେଁ, ଗୁଣାତ୍ମକ ଦୃଷ୍ଟିକୋଣରୁ ବେଶ୍ ସମୃଦ୍ଧ ଓ ସମୁଜ୍ଜ୍ୱଳ । ତାହା ଯେତିକି ପ୍ରାଣବନ୍ତ, ସେତିକି ମଧ୍ୟ ରସାଣିତ । ତେଣୁ ପ୍ରାବନ୍ଧିକ ଭାବରେ ତାଙ୍କ କୃତିର ମୂଲ୍ୟାୟନ ନିଶ୍ଚିତ ଭାବରେ ପ୍ରାସଙ୍ଗିକ ଓ ସମୟୋଚିତ ମଧ୍ୟ ।

## (୬) କବି ଓ ନାଟ୍ୟକାର

ମାନସିକ ଆବେଗର ଅସାଧାରଣ ବିକାଶ ହିଁ ପ୍ରତ୍ୟେକ ସୃଜନଶୀଳ ସ୍ରଷ୍ଟାକୁ ସୃଜନାତ୍ମକ ସୃଷ୍ଟି ମଧ୍ୟରେ ବାନ୍ଧି ରଖିବାକୁ ଉଦ୍ୟମ କରେ ଏବଂ ଏହାର ମାଧ୍ୟମ ବୋଧହୁଏ ଆଦ୍ୟସ୍ତରରେ କବିତା–ଏହା ସବୁ କାଳରେ, ସବୁ ସମୟରେ ଓ ପ୍ରତ୍ୟେକ ସୃଜନଶୀଳ ସ୍ରଷ୍ଟାଙ୍କ ଠାରେ ଚିରନ୍ତନ ସତ୍ୟ । ଏହି ସୂତ୍ରରେ ସେଦିନ ଛାତ୍ର ଶ୍ରୀଧର ମଧ୍ୟ ନିଜ ଆବେଗର ପରିପ୍ରକାଶ ପାଇଁ କବିତାର ପଥକୁ ବାଛି ନେଇଥିବା ସ୍ୱାଭାବିକ । ନିଜ ସମ୍ବନ୍ଧରେ ତାଙ୍କର ସ୍ୱୀକାରୋକ୍ତିକୁ ଏହି କ୍ଷେତ୍ରରେ ସ୍ମରଣ କରାଯାଇପାରେ । ସେ ନିଜ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି, "ହାଇସ୍କୁଲରେ ପଢ଼ିବା ବେଳୁ ଜଣେ କବି ହେବାର ଆଶା ଥିଲା । ସରସ୍ୱତୀ ପୂଜା ସମୟରେ କେତେକ ଥର ଗୋଟିଏ ଲେଖାଏଁ କବିତା ରଚନା କରିଥିଲି ।

ସେଗୁଡ଼ିକ ଛପା ଯାଇଥିଲା । ଏପରିକି ଥରେ ସଂସ୍କୃତରେ ଗୋଟିଏ କବିତା ଲେଖି ତାହାକୁ ପଣ୍ଡିତ ଜଗନ୍ନାଥ ରଥଙ୍କ ଦ୍ୱାରା ସଂଶୋଧନ କରାଇଥିଲି ଓ ତାହା ଛପା ଯାଇଥିଲା । 'ସହକାର' ଏବଂ ଅନ୍ୟ ମାସିକ ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା ।"(୮୮) ସେତେବେଳେ ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସଂପାଦନାରେ ପ୍ରକାଶ ପାଉଥାଏ 'ସହକାର' ଓ ଛାତ୍ର ଶ୍ରୀଧର ଲକ୍ଷ୍ମୀନାରାୟଣ ସାହୁଙ୍କର ଅତ୍ୟନ୍ତ ପ୍ରିୟ ଥାନ୍ତି । ତାଙ୍କରି ନିର୍ଦ୍ଦେଶନାମାରେ ସେ ଅନେକ ସମୟରେ ଓଡ଼ିଆ ଖବରକାଗଜରୁ ଦୁର୍ଭିକ୍ଷ ବିଷୟକ ସମ୍ବାଦ ଇଂରାଜୀରେ ଅନୁବାଦ କରୁଥିଲେ । ଲକ୍ଷ୍ମୀନାରାୟଣବାବୁ ତାହାକୁ ପରବର୍ତ୍ତୀ ପର୍ଯ୍ୟାୟରେ ସଂଶୋଧନ କରି ଟାଇପ୍ କରି 'ହିତବାଦ', 'ସର୍ଚ୍ଚ ଲାଇଟ୍' ପ୍ରଭୃତି ପତ୍ରିକାମାନଙ୍କୁ ପଠାଇ ପ୍ରକାଶ କରୁଥିଲେ । ଏହି ସୂତ୍ରରେ ଛାତ୍ର ଶ୍ରୀଧରଙ୍କର କିଛି କବିତା ସହକାର ପୃଷ୍ଠାରେ ପ୍ରକାଶ ଲାଭ କରିଥିବ ନିଶ୍ଚୟ ଓ ନିଜ କୃତିର ମୁଦ୍ରିତ ରୂପ ଦେଖି ସେ ଆନନ୍ଦିତ ହୋଇଥିବେ ମଧ୍ୟ ।

ଛାତ୍ର ଶ୍ରୀଧରଙ୍କର ଇଂରାଜୀ ଜ୍ଞାନ ଅତ୍ୟନ୍ତ ପ୍ରଖର ଥିଲା । ଏହି କାରଣରୁ ସେ ଲକ୍ଷ୍ମୀନାରାୟଣ ସାହୁଙ୍କ ପାଇଁ ଓଡ଼ିଆ ସମ୍ବାଦକୁ ଇଂରାଜୀରେ ରୂପ ଦେଉଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀଧର ନିଶ୍ଚିତ ଭାବରେ ଏହାର ବିପରୀତ ଦିଗଟିକୁ ବିଚାରକୁ ନେଇଥିବେ । ଇଂରାଜୀ ସାହିତ୍ୟକୁ ଓଡ଼ିଆରେ ରୂପାନ୍ତରିତ କଥାଟି ତାଙ୍କ ମନକୁ ଛୁଇଁଥିବ । ତେଣୁ ସେ ପ୍ରାଥମିକ ସ୍ତରରେ ଇଂରେଜୀ କବି ସ୍କଟଙ୍କର Lady of the Lakeକୁ ଓଡ଼ିଆରେ ଅନୁବାଦ କରି ନାମ ଦେଇଥିଲେ, "ସରସୀ ସୁନ୍ଦରୀ" । କବିତାଟିର କେତେକାଂଶ ସହକାର ପୃଷ୍ଠାରେ ମଧ୍ୟ ବାହାରିଥିଲା । ଏତେବେଳକୁ ସହକାରଟି ଆଉ ସମବାୟ ପତ୍ରିକା ଭାବରେ ନରହି ସାହିତ୍ୟ ପତ୍ରିକାରେ ରୂପାନ୍ତରିତ ହୋଇସାରିଥାଏ ଓ ବାଳକୃଷ୍ଣ କରଙ୍କର ସଂପାଦନାରେ କଟକରୁ ପ୍ରକାଶ ପାଉଥାଏ । ଏହି ସମୟରେ ସେହି ସ୍କଟଙ୍କର Lady of the Lake ର କାବ୍ୟାନୁବାଦ ଆଉ ଜଣେ କେହି ପ୍ରସ୍ତୁତ କରି ପ୍ରକାଶ କଲେ, ତାହାର ନାମ ହେଲା, "ସରସୁନ୍ଦରୀ" । କବି ଶ୍ରୀଧର ଏଥର କିନ୍ତୁ ନିଜେ ନିଜର କଷଟି ପଥର ହୋଇ ନିଜ କାବ୍ୟାନୁବାଦକୁ ତୁଳନାତ୍ମକ ଭିତ୍ତିରେ ମୂଲ୍ୟାୟନ କରି ନିଜ କବିତାର ନିରସତାକୁ ଉପଲବ୍ଧି କରିପାରିଲେ । ତାଙ୍କ ଭାଷାରେ ନିଜ ମୂଲ୍ୟାୟନର ମନ୍ତବ୍ୟଟି ହେଉଛି ଏହିପରି : "x x ବାସ୍ତବରେ 'ସରସୁନ୍ଦରୀ' ଅନୁବାଦଟି ମୋ ଅନୁବାଦ ଅପେକ୍ଷା ଉଚ୍ଚକୋଟୀର ଥିଲା । ମୋର ପଦ୍ୟ ଲେଖାଗୁଡ଼ିକ ନିମ୍ନସ୍ତରର ବୋଲି ମୁଁ ଅନୁଭବ କରିଥିଲି । ଏହାପରେ କବିତା ଲେଖା ଏକବାରେ ଛାଡ଼ି

(୮୮) ସୁଅ ମୁହଁର ପଥର : ଶ୍ରୀଧର ଦାସ / ପୃ : ୨୯୯

ଦେଉଥିଲି ।"[୮୯] ଶ୍ରୀଧର ଦାସ ଏହା ପରେ ପରେ ବାସ୍ତବରେ କବିତା ଲେଖିବାରୁ କ୍ଷାନ୍ତ ହୋଇ ଗଦ୍ୟ ରଚନାରେ ନିଜର ମନୋନିବେଶ କରିଥିଲେ ।

ସଚେତନ ଭାବରେ କବିତା ବା କାବ୍ୟାନୁବାଦ କ୍ଷେତ୍ରରୁ ଦୂରେଇ ଗଲେ ମଧ୍ୟ, ମନ ମଧ୍ୟରେ ଥିବା କାବ୍ୟିକ ଆବେଗରୁ ସେ କେବେ ମୁକ୍ତ ହୋଇପାରିନାହାନ୍ତି । ତେଣୁ ସମୟ ସମୟରେ ସେ ପୁଣି କବିତା ବା କାବ୍ୟାନୁବାଦ ସ୍ତରକୁ ଫେରିଯାଇଛନ୍ତି । ଏହି ମର୍ମରେ ଓଡ଼ିଆ ବାଣୀ ଭଣ୍ଡାର ପାଇଛି ସଂସ୍କୃତ ହଂସଦୂତ କାବ୍ୟର କାବ୍ୟାନୁବାଦ ବା ଆର୍ଣ୍ଣଓଲ୍ଡଙ୍କର 'Shorab and Rustam'ର କାବ୍ୟାନୁବାଦ 'ସୋରାବ ଓ ରୁସ୍ତମ' । ଏହି 'ସୋରାବ ଓ ରୁସ୍ତମ'ର କାବ୍ୟାନୁବାଦ ବେଶ୍ ଉଚ୍ଚକୋଟୀର ଥିଲା । ଅନ୍ୟପକ୍ଷରେ ଏହି ପୁସ୍ତକଟି ମଧ୍ୟ ପାଠକ ମହଲରେ ବେଶ୍ ଆଦୃତ ହୋଇଉଠିଥିଲା । ଏହି କାରଣରୁ ପରବର୍ତ୍ତୀ କାଳରେ ଏହି ପୁସ୍ତକର ଦ୍ୱିତୀୟ ମୁଦ୍ରଣ ମଧ୍ୟ ସଂପାଦିତ ହୋଇଅଛି ।

ତାଙ୍କର ଅନ୍ୟାନ୍ୟ କବିତାଗୁଡ଼ିକ ମଧ୍ୟରେ ୧୯୨୯ ମସିହା ସହକାରର ୫ମ ସଂଖ୍ୟାରେ ପ୍ରକାଶିତ 'ରେଣୁ' କବିତା ବା 'ଶ୍ରୀମାନ୍ ରାଜା ଶ୍ରୀ ନାରାୟଣ ପ୍ରସାଦ ଦେବଙ୍କ ସିଂହାସନ ପ୍ରାପ୍ତିର ଅଷ୍ଟମ ବାର୍ଷିକ ଉତ୍ସବ ଉପଲକ୍ଷେ' ଲେଖିଥିବା କବିତା ବା 'ବଉଦ ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ଉଦ୍‌ଘାଟନ ଉପଲକ୍ଷେ' ଲେଖିଥିବା ଆବାହନ ଗୀତିକା ପ୍ରଭୃତି ଅନ୍ୟତମ । ଏହି କବିତାଗୁଡ଼ିକୁ ପାଠକଲେ କବିତାର ସରଳତା ଓ ସ୍ୱଚ୍ଛତା ବେଶ୍ ପରିଲକ୍ଷିତ ହୋଇଥାଏ । ଏପରିକି ଜୀବନର ଶେଷ ମୁହୂର୍ତ୍ତରେ ସେ ରଚନା କରୁଥିଲେ କଠୋପନିଷଦ୍‌ର କାବ୍ୟାନୁବାଦ, ତାହା ପୁଣି ଭାଗବତର ନବାକ୍ଷରୀ ବୃତ୍ତରେ । ଏହିଥିରୁ ତାଙ୍କ ହୃଦୟର କବିସତ୍ତାକୁ ବେଶ୍ ଆକଳନ କରାଯାଇପାରେ ।

ଶ୍ରୀଧର ଦାସ ଯେପରି କବିତା ଲେଖିବାକୁ ଯାଇ ଶେଷରେ କବିତା ରାଜ୍ୟରୁ ନିଜକୁ ମୁକ୍ତ କରାଇ ଗଦ୍ୟ ବା ଅନୁବାଦ ରାଜ୍ୟରେ ନିଜକୁ ନିମଗ୍ନ ରଖିଲେ, ଠିକ୍ ସେହିପରି ଭାବରେ ଗଦ୍ୟ ରଚନା କରୁ କରୁ କେବେ ମଧ୍ୟ ନାଟକ ରଚନାରେ ନିଜର ଲେଖନୀକୁ ଚାଳନା କରାଇ ଦେଇଛନ୍ତି । ଏକଦା ସେ ଯେତେବେଳେ ଜଗତ୍‌ସିଂହପୁର ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ, ସେତେବେଳେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' ଉପନ୍ୟାସଟିକୁ ନାଟ୍ୟ ରୂପ ପ୍ରଦାନ କରିଥିଲେ ଓ ତାହାକୁ ସ୍କୁଲର ଛାତ୍ର-ଛାତ୍ରୀଙ୍କ ଦ୍ୱାରା ମଞ୍ଚସ୍ଥ କରାଇଥିଲେ; ଯାହାକି ପରବର୍ତ୍ତୀ କାଳରେ ନାଟ୍ୟକାର ପ୍ରାଣବନ୍ଧୁ କରଙ୍କ

(୮୯) ସୁଅ ମୁହଁର ପଥର : ଶ୍ରୀଧର ଦାସ / ପୃ : ୨୯୯

ଦ୍ୱାରା ନାଟ୍ୟ ରୂପାୟିତ ହୋଇଥିଲା ।[୯୦] ଅବଶ୍ୟ ଏହାପରେ ସେ କେବେ ନାଟକ ରଚନା କରିଛନ୍ତି ବୋଲି କୌଣସି ଠାରେ ପ୍ରମାଣ ମିଳେନାହିଁ । ତେବେ ପ୍ରଥମ କରି ସେ ଯେ ଗୋଟିଏ ପ୍ରସିଦ୍ଧ ଉପନ୍ୟାସକୁ ନାଟ୍ୟରୂପ ପ୍ରଦାନ କରିଛନ୍ତି ଓ ତାକୁ ମଞ୍ଚସ୍ଥ ମଧ କରାଇପାରିଛନ୍ତି; ଏହାଠାରୁ ବଡ଼କଥା ଆଉ କ'ଣ ଥାଇପାରେ ?

## (ଚ) ଶିଶୁ ଓ କିଶୋର ସାହିତ୍ୟିକ

ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ କର୍ମମୟ ଜୀବନର ଅଧିକାଂଶ ସମୟ ଶିକ୍ଷକତାରେ ହିଁ କଟାଇଛନ୍ତି । ଏହି କାରଣରୁ ଶିଶୁ ଓ କିଶୋରମାନଙ୍କର ମନସ୍ତତ୍ତ୍ୱକୁ ସେ ଯେତେ ପରିମାଣରେ ବୁଝିଥିବେ, ହୁଏତ ଅନ୍ୟକେହି ବୁଝିଥିବେ କି ନାହିଁ—ତାହା ଠିକ୍ ଭାବରେ କହିହେବ ନାହିଁ । ତେଣୁ ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ସବୁବେଳେ ଚାହୁଁଥିଲେ ଛାତ୍ର-ଛାତ୍ରୀମାନେ ଅଧିକା ଅଧିକା ପଢ଼ନ୍ତୁ ଓ କିଛି କିଛି ନୂଆ କଥା ଜାଣନ୍ତୁ । ଦେଶ-ବିଦେଶର କାହାଣୀ ଓ ବଡ଼ ବଡ଼ ଶ୍ରେଷ୍ଠ ଗ୍ରନ୍ଥକୁ ବୁଝନ୍ତୁ । ମାତ୍ର ସ୍ୱଳ୍ପ ବୟସରେ ଏହା ସମ୍ଭବ ହେବ କିପରି ? ଏହି କାରଣରୁ ଶ୍ରୀଧର ଦାସ ଅନୁବାଦକୁ ସେହି ସମାଧାନର ଉତ୍କୃଷ୍ଟ ପନ୍ଥା ଭାବରେ ବିବେଚନା କରିଛନ୍ତି ଓ ସେହି ଦିଗରେ ଗଭୀର ମନୋନିବେଶ କରିଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶର ଯେତେସବୁ କ୍ଲାସିକ୍ ସୃଷ୍ଟି ରହିଛି, ଯେତେସବୁ ମନଛୁଆଁ କାହାଣୀ ରହିଛି, ତାକୁ ସେ ପ୍ରଥମେ ଅଧ୍ୟୟନ କରିଛନ୍ତି ଓ ପରବର୍ତ୍ତୀ କାଳରେ ତାହାର ମର୍ମାନୁବାଦ ଅତି ସଂକ୍ଷିପ୍ତରେ, ସରଳ ଭାଷାରେ ଓ ବୋଧଗମ୍ୟ ଶୈଳୀରେ ଉପସ୍ଥାପନା କରିଛନ୍ତି । ରାଶି ରାଶି ଅନୁବାଦ ମାଧ୍ୟମରେ ଆମ ଓଡ଼ିଶାର ପିଲାମାନେ ଯେତେଶୀଘ୍ର ବିଶ୍ୱ ସାହିତ୍ୟ ସହିତ ପରିଚିତ ହୁଅନ୍ତି; ବୋଧହୁଏ ଆଉ କେଉଁ ଭାଷାରେ ସେପରି ହେଉନଥିବ । ଏବଂ ଏହି ପ୍ରକ୍ରିୟା ପଛରେ ଯେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଗଭୀର ନିଷ୍ଠା ଓ ମନନଶୀଳତା ରହିଛି, ତାହା ବେଶ୍ ଅନୁମାନ କରାଯାଇପାରେ । ଏହି ମର୍ମରେ ସେ ପ୍ରାୟ ୮୩ ଖଣ୍ଡ ଦେଶ-ବିଦେଶର ଗ୍ରନ୍ଥକୁ ମର୍ମାନୁବାଦ କରିଛନ୍ତି ।

କେବଳ ଶିଶୁ ଓ କିଶୋରଙ୍କୁ ଦେଶ-ବିଦେଶର ସାହିତ୍ୟ ସହିତ ପରିଚିତ କରାଇବା ପାଇଁ ସେ ଯେ କେବଳ ପୁସ୍ତକ ଉପରେ ପୁସ୍ତକର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଅନୁବାଦ କ୍ରିୟାରେ ଲିପ୍ତ ରହିଛନ୍ତି, ତାହା ନୁହେଁ; ଅଧିକନ୍ତୁ ସେ ମଧ ଶିଶୁ ଓ କିଶୋରଙ୍କ ମନସ୍ତତ୍ତ୍ୱକୁ ଠିକ୍ ଭାବରେ ଉପଲବ୍ଧି କରି ଅନେକ ପାଠ୍ୟପୁସ୍ତକର ପ୍ରଣୟନ ମଧ କରିଛନ୍ତି ।

---

(୯୦) ଗଳ୍ପ ପତ୍ରିକା (ଉପନ୍ୟାସ ବିଶେଷାଙ୍କ) / ପୂଜା : ୨୦୦୫ / ପୃ : ୨୫୫
(ପ୍ରବନ୍ଧ : କଥା-କବିତାର ନାଟ୍ୟରୂପ / ପ୍ରାବନ୍ଧିକ : ଶ୍ରୀମନ୍ତ ମହାନ୍ତି)

ସେ କେବଳ ସାହିତ୍ୟର ପାଠ୍ୟ ପୁସ୍ତକ ରଚନା କରିନଥିଲେ, ସେ ମଧ୍ୟ ରଚନା କରିଥିଲେ ଭୂଗୋଳ, ଇତିହାସ ପ୍ରଭୃତି ବିଭିନ୍ନ ପାଠ୍ୟ ଉପଯୋଗୀ ରଚନା ସମୂହ । ଶିଶୁ ଓ କିଶୋରମାନଙ୍କର ଇଂରାଜୀ ଜ୍ଞାନକୁ ଦୃଢ଼ କରିବା ପାଇଁ ସେ ରଚନା କରିଥିଲେ ଟ୍ରାନ୍ସଲେସନ ପୁସ୍ତକ । ରଚନା କରିଥିଲେ ମଧ୍ୟ ଅଭିଧାନ, ବିବିଧକୋଷ ପ୍ରଭୃତି ଅନେକ ଉପାଦେୟ ପୁସ୍ତକ । ଓଡ଼ିଆ ଓ ସଂସ୍କୃତର ଜ୍ଞାନକୁ ପରିବର୍ଦ୍ଧିତ କରାଇବା ପାଇଁ ସେ ମଧ୍ୟ ଲେଖିଥିଲେ ଲଘୁ ବ୍ୟାକରଣ, ସଂସ୍କୃତ ବ୍ୟାକରଣ ପ୍ରବେଶ, ମଧ୍ୟ ବ୍ୟାକରଣ, ସରଳ ଓଡ଼ିଆ ବ୍ୟାକରଣ, ମୌଳିକ ଲଘୁ ବ୍ୟାକରଣ ପ୍ରଭୃତି ଅନେକ ମୂଲ୍ୟବାନ ତଥା ଉପାଦେୟ ପୁସ୍ତକ । ବିଶେଷକରି ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହିତ ତାଙ୍କର ଯୁଗଳବନ୍ଦୀ ଭାବରେ 'ସର୍ବସାର ବ୍ୟାକରଣ' ଦୀର୍ଘଦିନ ଧରି ପାଠ୍ୟପୁସ୍ତକ ଭାବରେ ବ୍ୟବହୃତ ହୋଇଛି ଓ ଆଜି ମଧ୍ୟ ସାହିତ୍ୟ ଛାତ୍ର ଓ ଅଧ୍ୟାପକଙ୍କର ଏକ ଅମୂଲ୍ୟ ପୁସ୍ତକ ଭାବରେ ପରିଗଣିତ ହେଉଛି । ଏତେସବୁ କର୍ମ ପଛରେ ତାଙ୍କର ଗୋଟିଏ ମାତ୍ର ଉଦ୍ଦେଶ୍ୟ ନିହିତ ଥିଲା ଯେ, ଶିଶୁ ଓ କିଶୋର ଛାତ୍ର-ଛାତ୍ରୀମାନେ ସଂସ୍କୃତ, ଇଂରାଜୀକୁ ଭଲଭାବରେ ଜାଣି ସେହି ଜ୍ଞାନ ମାଧ୍ୟମରେ ଦେଶ-ବିଦେଶର ତଥା ବିଶ୍ୱର ସାରସ୍ୱତ ଜଗତ ସହିତ ପରିଚିତ ହୁଅନ୍ତୁ । ଏହି ମର୍ମରେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଶିଶୁ ଓ କିଶୋରମାନଙ୍କର ମନନଶୀଳତାକୁ ଉପଲବ୍ଧି କରିବାର ଗଭୀର ଅନ୍ୱେଷା ବୋଧକୁ ବେଶ୍ ଜାଣିହୁଏ ।

ଶ୍ରୀଧର ଦାସ ମଧ୍ୟ ଶିଶୁ ଓ କିଶୋରମାନଙ୍କ ପାଇଁ ସଂପୂର୍ଣ୍ଣ ମୌଳିକ ଗଳ୍ପ ରଚନା କରୁଥିଲେ । ସେହି ଗଳ୍ପଗୁଡ଼ିକ ସେତେବେଳେ 'ମନପବନ' ନାମକ ଏକ ଶିଶୁ ଓ କିଶୋର ପତ୍ରିକାରେ ପ୍ରକାଶ ପାଉଥିଲା । ସେହି ଗଳ୍ପଗୁଡ଼ିକରେ ଶିଶୁ ମନସ୍ତତ୍ତ୍ୱକୁ ଏତେ ପ୍ରାଞ୍ଜଳ ଭାବରେ ପ୍ରକାଶ କରାଯାଇଛି, ତାହାର ଇୟତ୍ତା ନାହିଁ । ସେହି ଗଳ୍ପଗୁଡ଼ିକ ମଧ୍ୟରୁ 'କବାଟ ସେପଟେ କିଏ ?', 'ଶୁଆର ଉପଦେଶ', 'ମୁଲ୍ଲା ନାସିରୁଦ୍ଦିନ' ବା 'ସାହେବଙ୍କ ହସ୍ତାକ୍ଷର' ପ୍ରଭୃତି ଅନ୍ୟତମ । 'ସାହେବଙ୍କ ହସ୍ତାକ୍ଷର' (ମନପବନ-ମାର୍ଚ୍ଚ ୧୯୮୧/ ପୃଷ୍ଠା ୩୭) ଗଳ୍ପଟି ତାଙ୍କର ବ୍ୟକ୍ତିଗତ ଅନୁଭୂତି ସମ୍ବଳିତ ଗଳ୍ପ । ଏହି ଗଳ୍ପଟିରେ ସାହେବମାନେ କିପରି ନିଜର ଜ୍ଞାନୀପଣକୁ ଦେଖାଇବାକୁ ଯାଇ ବିଭିନ୍ନ କଥା ଲେଖୁଥିଲେ, ଯାହାକୁକି କେବେ ପଢ଼ି ହେଉନଥିଲା ଓ ସେହି ପଢ଼ି ହୋଇପାରୁନଥିବା ଅକ୍ଷରକୁ କିପରି ଅନ୍ୟମାନେ ବିଚିତ୍ର ରୀତିରେ ପଢ଼ନ୍ତି, ତାହାକୁ ଏକ ହାସ୍ୟରସାତ୍ମକ ରୀତିରେ ଏହି ଗଳ୍ପଟିରେ ପରିବେଷଣ କରାଯାଇଛି ମାତ୍ର । ସେହି ଗଳ୍ପରେ ବର୍ଣ୍ଣିତ ସାହେବଙ୍କ ନାମ ପାଟ୍ରିସ୍ । ଲୋକେ ତାଙ୍କୁ ପାତି ବୋଲି ଡାକୁଥିଲେ । ତାଙ୍କ ହାତ ଅକ୍ଷରକୁ ବସ କଣ୍ଡକ୍ଟରଙ୍କ ଠାରୁ ଆରମ୍ଭ କରି କେତେ କେତେ ଲୋକ ପଢ଼ିବାକୁ ଯାଇ ବିଫଳ ହେଲେ । ଶେଷରେ

କମ୍ପାଉଣ୍ଡରଙ୍କ ନିକଟକୁ ଯିବାରୁ, ସେ ନାଲି ପାଣିର ଏକ ଔଷଧ ବଢ଼ାଇଦେଲେ । ଏହି ଗଳ୍ପଟି ଅପରିଷ୍କାର ହସ୍ତାକ୍ଷର କିପରି ଅନ୍ୟମାନଙ୍କୁ ଅସୁବିଧାରେ ପକାଏ ତାହାକୁ ଦର୍ଶାଇ ଦିଆଯାଇଛି । 'ଶୁଆର ଉପଦେଶ' (ମନପବନ / ନଭେମ୍ବର - ୧୯୮୦ / ପୃଷ୍ଠା : ୪୧) ମଧ୍ୟ ଏକ ଉପଦେଶାତ୍ମକ ଗଳ୍ପ । ଅନେକ ନୀତିବାଣୀକୁ ଆମେ ଜାଣୁ ମାତ୍ର ଠିକ୍ ସମୟରେ ତାକୁ କାର୍ଯ୍ୟରେ ବିନିଯୋଗ ନ କରିପାରିବା ଦ୍ୱାରା ଆମେ କିପରି ହଇରାଣ ହେଉ, ତାହାକୁ ଏହି ଗଳ୍ପଟିରେ ଦର୍ଶାଇ ଦିଆଯାଇଛି ମାତ୍ର । ଶ୍ରୀଧର ଦାସଙ୍କର ଆଉ ଗୋଟିଏ ଗଳ୍ପ ମଧ୍ୟ ରହିଛି, ଯାହାକି ତାଙ୍କ ବ୍ୟକ୍ତିଗତ ଅନୁଭୂତି ସମ୍ବଳିତ ଗଳ୍ପ । ତାହା ହେଉଛି, 'କବାଟ ସେପଟେ କିଏ ?'[୯୧] ତତ୍କାଳୀନ ସମାଜରେ ଜଣେ ମୁସ୍‌ଲିମ୍ ଛାତ୍ରୀ ବୃତ୍ତି ପରୀକ୍ଷାଟିଏ ଦେଉଛି । ଅଥଚ ସେ ବାହାରକୁ ଆସିବ ନାହିଁ ଓ ତେଣୁ ସେ କବାଟ ସେପଟେ ରହିଛି ଓ ପରୀକ୍ଷକ କବାଟର ଅନ୍ୟପଟେ ରହିଛନ୍ତି । ପରୀକ୍ଷକଙ୍କ ପ୍ରଶ୍ନ ଉତ୍ତର ସେ ଛାତ୍ରୀ ଦେଇଛି କବାଟ ସେପଟରୁ । ଛାତ୍ରୀକୁ ପ୍ରତ୍ୟେକ୍ଷ ଭାବରେ ନଦେଖି ମଧ୍ୟ ତାକୁ ପରୀକ୍ଷାରେ ଉତୀର୍ଣ୍ଣ କରାଯାଇଛି ଓ ସେ ବୃତ୍ତି ପାଇଛି । ହାସ୍ୟରସାତ୍ମକ ଶୈଳୀରେ ଗଳ୍ପଟି ବର୍ଣ୍ଣିତ ହୋଇଥିଲେ ମଧ୍ୟ ସମକାଳୀନ ଶିକ୍ଷା ପଦ୍ଧତିରେ ଥିବା ଅବ୍ୟବସ୍ଥାକୁ ଉକ୍ତ ଗଳ୍ପରେ ସେ ସୂଚାରୁ ରୂପରେ ବର୍ଣ୍ଣନା କରିଛନ୍ତି ।

ଏହିସବୁ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଶିଶୁ ଓ କିଶୋର ସାହିତ୍ୟ ଆମ ଓଡ଼ିଆ ବାଣୀ ଭଣ୍ଡାରର ନିଶ୍ଚିତ ଭାବରେ ଅମୂଲ୍ୟ ସମ୍ପଦ । ଏହି ମର୍ମରେ ପ୍ରଫେସର ବିଭୁତି ପଟ୍ଟନାୟକଙ୍କର ମନ୍ତବ୍ୟ ଯଥାର୍ଥ ବୋଲି ମନେ ହୋଇଥାଏ । ସେ କହିଛନ୍ତି, "x x ଓଡ଼ିଆ ଭାଷାରେ କିଶୋର ସାହିତ୍ୟ ଅବହେଳିତ ଅବସ୍ଥାରେ ରହିଥିବା ବେଳେ ତାଙ୍କର ଏ ଆନ୍ତରିକ ଉଦ୍ୟମ କେବଳ ଖାଲି ତାଙ୍କର ସାହିତ୍ୟ ପ୍ରୀତି ନୁହେଁ; କିଶୋର ପାଠକମାନଙ୍କ ପ୍ରତି ଜଣେ ଆଦର୍ଶ ଶିକ୍ଷକ ଭାବରେ ତାଙ୍କର ମହାନ କର୍ତ୍ତବ୍ୟବୋଧର ପରିଚୟ ବହନ କରିଛି ।"[୯୨] ବାସ୍ତବରେ ଜଣେ ଶିକ୍ଷକ ଭାବରେ ଶିଶୁ ଓ କିଶୋରମାନଙ୍କର କୋମଳ ମନକୁ ଶୃଙ୍ଖଳିତ କରିବା ଦିଗରେ

(୯୧) 'ମନ ପବନ'ର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ଶ୍ରୀଧର ଦାସଙ୍କ ଗଳ୍ପଗୁଡ଼ିକ ବିଶିଷ୍ଟ ଶିଶୁ ସାହିତ୍ୟିକ ତଥା ମନ ପବନର ସମ୍ପାଦକ ପ୍ରଫେସର ଡକ୍ଟର ମହେଶ୍ୱର ମହାନ୍ତିଙ୍କ ଠାରୁ ସଂଗୃହୀତ । ଦୁଷ୍ପ୍ରାପ୍ୟ ଗଳ୍ପ 'କବାଟ ସେପଟେ କିଏ'ର କଥାବସ୍ତୁକୁ ମଧ୍ୟ ଡକ୍ଟର ମହେଶ୍ୱର ମହାନ୍ତି ଅତ୍ୟନ୍ତ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛନ୍ତି ଅତୀତ ସ୍ମୃତିକୁ ରୋମନ୍ଥନ କରିବା ଅବକାଶରେ ।

(୯୨) ଆଦର୍ଶ ମଣିଷ : ଡକ୍ଟର ବିଭୁତି ପଟ୍ଟନାୟକ / ଆଦର୍ଶ ମଣିଷ ଶ୍ରୀଧର ଦାସ : ସଂ-ଡକ୍ଟର ବିଭୁତି ପଟ୍ଟନାୟକ / ପୃ : ୯୬

ସାହିତ୍ୟ ମାଧ୍ୟମ ଦେଇ ସେ ଯେଉଁ ସାଧନା କରିଯାଇଛନ୍ତି; ସେଥିଲାଗି ସେ ନିଶ୍ଚିତ ଭାବରେ ଅମର ହୋଇ ରହିବେ ।

## (ଛ) ପାଠ୍ୟ-ପୁସ୍ତକ ରଚୟିତା

ଶ୍ରୀଧର ଦାସଙ୍କ ବ୍ୟକ୍ତିଗତ ଜୀବନକୁ ଲକ୍ଷ୍ୟ କଲେ ଜାଣିହୁଏ ଯେ, ସେ ଯେତିକି ପଢ଼ିବାକୁ ଭଲପାଆନ୍ତି; ତତୋଽଧିକ ମାତ୍ରାରେ ଆହରଣ କରିଥିବା ଜ୍ଞାନକୁ ନିଜର ମୌଳିକ ଲେଖା ମାଧ୍ୟମରେ ପ୍ରକାଶ କରିବାକୁ ଉତ୍ସାହିତ ରୁହନ୍ତି । ଏହି କାରଣରୁ ସେ ଯେପରି ଶିଶୁ ଓ କିଶୋରମାନଙ୍କ ପାଇଁ ଲେଖିଥିଲେ ଶିଶୁ ଓ କିଶୋର ସାହିତ୍ୟ; ଠିକ୍ ସେହିପରି ଭାବରେ ମଧ୍ୟ ଛାତ୍ର-ଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ ଅନେକ ପାଠ୍ୟ-ପୁସ୍ତକ । ତେବେ କଲେଜରେ ଅଧ୍ୟାପନା କରିବା ପରେ ସେ ଛାତ୍ର-ଛାତ୍ରୀଙ୍କ ପାଇଁ ପାଠ୍ୟ-ପୁସ୍ତକ ଲେଖାରେ ନିଜର ମନୋନିବେଶ କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । ତାଙ୍କର ଉକ୍ତିଟି ଏହିପରି—"କଲେଜରେ ଅଧ୍ୟାପକ ରୂପେ ନିଯୁକ୍ତ ହେବା ପରେ ମୁଁ କେତେଖଣ୍ଡି ପାଠ୍ୟ-ପୁସ୍ତକ ଲେଖିବାରେ ପ୍ରୟାସୀ ହୋଇଥିଲି । କବିବର ରାଧାନାଥଙ୍କର 'ଚିଲିକା', 'ଦରବାର', 'ଚନ୍ଦ୍ରଭାଗା', ଶିଶୁଶଙ୍କରଙ୍କର 'ଭାଷାଭିଳାଷ', ଦୀନକୃଷ୍ଣଙ୍କର 'ରସକଲ୍ଲୋଳ', ଅଭିମନ୍ୟୁଙ୍କର 'ବିଦଗଧ ଚିନ୍ତାମଣି', ଭକ୍ତଚରଣଙ୍କର 'ମଥୁରା ମଙ୍ଗଳ' ପ୍ରଭୃତି କଲେଜ ପାଠ୍ୟ-ପୁସ୍ତକ ଥିଲା । ମୁଁ ଟୀକା ଓ ମୁଖବନ୍ଧ ସହିତ ଏଗୁଡ଼ିକ ସଂପାଦନା କରିଥିଲି । ତାହାଛଡ଼ା ଖଣ୍ଡିଏ କଲେଜ ଉପଯୋଗୀ ଅଳଙ୍କାର ପୁସ୍ତକ ମଧ୍ୟ ଲେଖିଥିଲି । ଏହି ସମୟରେ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ସାହଚର୍ଯ୍ୟରେ ଅଷ୍ଟମ ଶ୍ରେଣୀ ପାଇଁ ଖଣ୍ଡିଏ ସାହିତ୍ୟ ପୁସ୍ତକ (ନୂତନ ସାହିତ୍ୟ ସଂଗ୍ରହ) ଓ କଲେଜ ପାଇଁ ଖଣ୍ଡିଏ ପ୍ରବନ୍ଧ ପୁସ୍ତକ ସଂପାଦନା କରିଥିଲି ।"[୯୩] ଏଇଥିରୁ ସ୍ପଷ୍ଟ ଜଣାପଡ଼େ ଯେ, କଟକର ରହଣୀ ପର୍ଯ୍ୟନ୍ତ ସେ ନିଜର ସାରସ୍ୱତ ସାଧନା ପାଇଁ ବିଶେଷ ସୁଯୋଗ ପାଇପାରିନାହାନ୍ତି, ଯାହାକି ପାଇଛନ୍ତି, ତାହା ପୁଣି ବଉଦ ଷ୍ଟେଟ୍‌ରେ । ତେଣୁ ତାଙ୍କ ସାରସ୍ୱତ ଜୀବନ ବିକାଶ ଭୂମିକୁ କଟକ ବୋଲି ଅଭିହିତ କଲେ ଆଦୌ ଭୁଲ ହେବନାହିଁ ।

ବାସ୍ତବରେ କଟକ ହିଁ ହେଉଛି ସାରସ୍ୱତ ସାଧନାର ପୀଠଭୂମି । ଏଠାରେ ସାରସ୍ୱତ ସାଧନା ପାଇଁ ସମସ୍ତ ପରିବେଶ ଅତ୍ୟନ୍ତ ଅନୁକୂଳ । ସାହିତ୍ୟ ପତ୍ରିକାର ପ୍ରକାଶନ ଠାରୁ ସାହିତ୍ୟ ସଭାରେ ମିଳନ ପର୍ଯ୍ୟନ୍ତ, ପ୍ରକାଶକଙ୍କ ଠାରୁ କବି, ଗାଳ୍ପିକ, ନାଟ୍ୟକାର ଓ ସମାଲୋଚକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଭିଡ଼ ଏହି କଟକ ସହରରେ । ସେହି କାରଣରୁ

(୯୩) ସୁଅ ମୁହଁର ପତର / ପୃ : ୨୮୧-୨୮୨

ସମ୍ଭବତଃ ସେ କଟକସ୍ଥ ଦେଉଳସାହି ଠାରେ ପ୍ରଥମେ ଖଣ୍ଡିଏ ଜାଗା କିଣି ନିଜ ଘରଟିଏ ନିର୍ମାଣ କରିଛନ୍ତି । ସାହିତ୍ୟିକ ମହଲରେ ନିଜକୁ ପ୍ରଥମେ ସାମିଲ କରାଇ ନେଇଛନ୍ତି । ଏବଂ ପରେ ପରେ ନିକାଞ୍ଚନରେ ଗୃହରେ ବସି ନିଜର ସାରସ୍ୱତ ସାଧନାରେ ମଗ୍ନ ରହିଛନ୍ତି । ପ୍ରକାଶକ ବନ୍ଧୁ ଭାବରେ ଗ୍ରନ୍ଥମନ୍ଦିର, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ ଷ୍ଟୁଡେଣ୍ଟ ଷ୍ଟୋର୍, ଦାସ ବ୍ରଦର୍ସ ପ୍ରଭୃତିର ମାଲିକମାନଙ୍କର ସାନିଧ, ଲେଖକ-ସାହିତ୍ୟିକ ବନ୍ଧୁ ପଣ୍ଡିତ ନାରାୟଣ ମହାପାତ୍ର, କବି ଜୟକୃଷ୍ଣ ମିଶ୍ର ପ୍ରମୁଖଙ୍କ ଆନ୍ତରିକତାରେ ବାନ୍ଧିହୋଇ ସେ ନିମଗ୍ନ ରହିବାକୁ ଚାହିଁଛନ୍ତି ସାରସ୍ୱତ ସୃଷ୍ଟି ବଳୟ ମଧ୍ୟରେ । ଆର୍ଥିକ ଦୃଷ୍ଟିକୋଣରୁ ସେ କେବେ ଲାଭ-କ୍ଷତିର ବିଚାର କରି ତଦ୍ୱାରା ନିଷ୍କାସିତ ମାର୍ଗରେ ଗତି କରିନାହାନ୍ତି । ସାରସ୍ୱତ ସାଧନାରେ ମାତ୍ର ବ୍ରତୀ ରହିଛନ୍ତି ।

ଶ୍ରୀଧର ଦାସ ଜଣେ ବାସ୍ତବବାଦୀ ଲୋକ ଥିଲେ । ଏବଂ ବାସ୍ତବତାରେ ହିଁ ପୂର୍ଣ୍ଣ ବିଶ୍ୱାସ ରଖୁଥିଲେ । ତେଣୁ ସେ କେବେ ମାନସିକ ସ୍ତରରେ ଲାଭର ଆଶା କରି 'ପିଲାଙ୍କ ଶେକ୍ସପିୟର ଗଳ୍ପ' ରଚନା କରିଛନ୍ତି ତ, କେବେ କିଛି ଅନୁବାଦ କ୍ରିୟାରେ ନିଜର ଲେଖନୀ ଚାଳନା କରିଛନ୍ତି । ମାତ୍ର ଯେତେବେଳେ କ୍ଷତି ସହିଛନ୍ତି, ତାହା ହୃଦୟକୁ କଷ୍ଟ ଦେଇଛି ଅବଶ୍ୟ, ହେଲେ ତାଙ୍କ ସାଧନା ସେହି ଆର୍ଥିକ କ୍ଷତିରେ ବାଧାଗ୍ରସ୍ତ ହୋଇନାହିଁ । ବରଂ ତାଙ୍କର ସାରସ୍ୱତ ସାଧନା ପୂର୍ବବତ୍ ବଳବତ୍ତର ରହିଛି । ପୁସ୍ତକ ଲେଖାରୁ ସେତେ ଆଶାନୁରୂପ ଲାଭ ବା ସାଧାରଣ ମାତ୍ର ପାରିଶ୍ରମିକ ନପାଇ ସେ ଯେପରି ଭାବରେ ନିଜର ଦୁଃଖକୁ ପ୍ରକାଶ କରିଛନ୍ତି, ତାହା ଏଠାରେ ଅତ୍ୟନ୍ତ ପ୍ରାସଙ୍ଗିକ ଭାବରେ ପ୍ରଣିଧାନଯୋଗ୍ୟ । ସେ ନିଜ ଆତ୍ମଜୀବନୀରେ ଲେଖିଛନ୍ତି, "ଷ୍ଟୁଡେଣ୍ଟସ୍ ଷ୍ଟୋର ଭାଙ୍ଗିଯିବା ବେଳେ ତାହାଠାରୁ ଯାହା ପ୍ରାପ୍ୟ ଥିଲା, ତାହା ମିଳିନଥିଲା । ସାଧାରଣତଃ ରୟାଲିଟିର ହିସାବ ପ୍ରାୟ ମିଳେନାହିଁ । ହିସାବ ମିଳିଲେ ମଧ୍ୟ ଟଙ୍କା ମିଳେନାହିଁ । କଟକ ଟ୍ରେଡିଂ କମ୍ପାନୀରୁ ମୋର ପ୍ରାପ୍ୟ କେତେ ହଜାର ଟଙ୍କା ମୁଁ ହରାଇଅଛି । ପାଠ୍ୟ-ପୁସ୍ତକ ଜାତୀୟକରଣ ହେବା ପରେ ଆଉ ରୟାଲିଟିର ପ୍ରଶ୍ନ ରହିଲା ନାହିଁ । x x"(୯୪) ଅନ୍ୟପକ୍ଷରେ ଯେତେବେଳେ ଏହି ସାରସ୍ୱତ ସାଧନାରୁ କିଛି ଆଶାନୁରୂପ ଅର୍ଥ ଲାଭ କରିଛନ୍ତି; ସେତେବେଳେ ମଧ୍ୟ ଅତ୍ୟନ୍ତ ଖୁସିରେ ସେହି ଅର୍ଥ ପ୍ରାପ୍ତି ଘଟଣାକୁ ନିଜ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଦୃଷ୍ଟାନ୍ତଟିଏ ଦେଖାଯାଉ । ସେ ଲେଖିଛନ୍ତି—"United States of Information Service ପକ୍ଷରୁ ଅନେକ ଇଂରାଜୀ ପୁସ୍ତକ ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରାଯାଇଥାଏ । ଓଡ଼ିଶାର ସ୍ୱର୍ଗତ ଗୋଲକ ଚନ୍ଦ୍ର ଧଳ, ଚିନ୍ତାମଣି

(୯୪) ସୁଅ ମୁହଁର ପଥର / ପୃ : ୨୮୩

ମିଶ୍ର, ଲାଲା ନଗେନ୍ଦ୍ର ନାଥ ରାୟ ପ୍ରଭୃତି ଲେଖକମାନେ ଏହିପରି ଅନେକ ପୁସ୍ତକ ଓଡ଼ିଆରେ ଅନୁବାଦ କରିଅଛନ୍ତି । ମୁଁ ମଧ୍ୟ ୬/୭ ଖଣ୍ଡି ପୁସ୍ତକ ଅନୁବାଦ କରିଥିଲି ଓ ଏହାର ପାରିଶ୍ରମିକ ସ୍ୱରୂପ ସାତ ଆଠ ହଜାର ଟଙ୍କା ପାଇଥିଲି ।"[୯୫]

ତେବେ ଯେତେଦୂର ପର୍ଯ୍ୟନ୍ତ ପାଠ୍ୟ-ପୁସ୍ତକର ସଂରଚନାର ପ୍ରଶ୍ନ ଉଠେ, ସେତେବେଳେ ଆମେ ଦେଖିବା ଯେ, ସେ ମୋଟ ଉପରେ ୨୪ ଖଣ୍ଡ ପାଠ୍ୟ-ପୁସ୍ତକ ସଂକ୍ରାନ୍ତୀୟ ପୁସ୍ତକ ରଚନା କରିଥିଲେ । ତନ୍ମଧ୍ୟରୁ ୧୧ଟି କେବଳ ପାଠ୍ୟ-ପୁସ୍ତକ ଓ ଅନ୍ୟ ୧୩ ଗୋଟି ଅନ୍ୟାନ୍ୟ ପାଠ୍ୟ-ପୁସ୍ତକ ଭାବରେ ସେ ସେଗୁଡ଼ିକ ଦି' ଭାଗରେ ବିଭକ୍ତ କରିଛନ୍ତି । ସମ୍ଭବତଃ ସେହି ୧୧ ଖଣ୍ଡି ସେ ସମୟର ସ୍କୁଲ ପାଠ୍ୟକ୍ରମ ଉପରେ ପର୍ଯ୍ୟବସିତ ଥିବାବେଳେ ଅବଶିଷ୍ଟ ୧୩ ଖଣ୍ଡି ପାଠ୍ୟକ୍ରମର ସହାୟତା ପାଇଁ ଉଦ୍ଦିଷ୍ଟ ରହିଥିବ । ପୁନଶ୍ଚ ଅନ୍ୟାନ୍ୟ ପାଠ୍ୟ-ପୁସ୍ତକଗୁଡ଼ିକ ମଧ୍ୟରୁ ସାତଖଣ୍ଡ ମଞ୍ଜୁର ପ୍ରାପ୍ତ ହୋଇଥିବା ବେଳେ ପାଠ୍ୟ-ପୁସ୍ତକ ଶ୍ରେଣୀରେ ରହିଥିବା ୧୧ ଖଣ୍ଡିରୁ ମାତ୍ର ୧ ଖଣ୍ଡ ମଞ୍ଜୁର ପ୍ରାପ୍ତ ହୋଇଥିଲା । ଅବଶିଷ୍ଟ ସେତେବେଳେ ମଞ୍ଜୁର ପ୍ରାପ୍ତ ହୋଇନଥିଲେ ମଧ୍ୟ ତାହାର ମୂଲ୍ୟବୋଧ କିନ୍ତୁ ଥିଲା ଅତ୍ୟନ୍ତ ଉଚ୍ଚକୋଟୀର । ତେବେ ସେହିସବୁ ପୁସ୍ତକଗୁଡ଼ିକ ମଧ୍ୟରୁ ଜୀବନୀ ବର୍ତ୍ତିକା, ପଞ୍ଚପ୍ରଦୀପ, ଆମ ଦେଶର ଇତିହାସ ଗପ (ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ), Tales of Utkal ଓ ଅଳଙ୍କାର ମଞ୍ଜରୀ ପ୍ରଭୃତି ପୁସ୍ତକଗୁଡ଼ିକ ତା'ର ମୂଲ୍ୟାୟନ ଦୃଷ୍ଟିକୋଣରୁ କାଳୋତ୍ତୀର୍ଣ୍ଣ ହୋଇଉଠିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏବଂ ସେହି ଦୃଷ୍ଟିରୁ ଅଧ୍ୟାପକ ଶ୍ରୀଧର ଦାସ ଜଣେ ପାଠ୍ୟ-ପୁସ୍ତକ ରଚୟିତା ଭାବରେ ସାରସ୍ୱତ ଜଗତରେ ଏକ ବିଶେଷ ସ୍ଥାନ ଅଧିକାର କରିବେ, ଏଥିରେ ସନ୍ଦେହ ନାହିଁ ।

## (ଜ) ବ୍ୟାକରଣ

ଶ୍ରୀଧର ଦାସ ସର୍ବାନ୍ତକରଣରେ ଜଣେ ବିଶିଷ୍ଟ ବୈୟାକରଣ ଭାବରେ ଆମ ସମାଜରେ ପ୍ରତିଷ୍ଠିତ । ସେ ମୋଟ ଉପରେ ୧୧ ଖଣ୍ଡ ବ୍ୟାକରଣ ପୁସ୍ତକ ରଚନା କରିଛନ୍ତି, ଯଦିଓ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହିତ ତାଙ୍କର ସାରସ୍ୱତ ଯୁଗଳବନ୍ଦୀ 'ସର୍ବସାର ବ୍ୟାକରଣ' ତାଙ୍କୁ ଅଶେଷ ସମ୍ମାନ ଓ ଖ୍ୟାତି ଆଣିଦେଇଛି । ହୁଏତ ଏତେ ସମ୍ମାନ ଓ ଖ୍ୟାତି ସେ ଅନ୍ୟ ସାରସ୍ୱତ ବିଭାଗରୁ ପାଇନଥିବେ । ସାରସ୍ୱତ ଜୀବନରେ ବ୍ୟାକରଣ ରଚନା ପ୍ରତି ତାଙ୍କର ମନୋନିବେଶ ହେବା ବାସ୍ତବରେ ଏକ କୌତୁକପ୍ରଦ ଅଧ୍ୟାୟ ।

(୯୫) ସୁଅ ମୁହଁର ପଥର / ପୃ : ୨୮୩-୨୮୪

ଶିକ୍ଷକତାରୁ ନିଜର ବୃତ୍ତିଗତ ଜୀବନକୁ ଆରମ୍ଭ କରିଥିବା ଶ୍ରୀଧର ଦାସ ବାସ୍ତବ ଜୀବନରେ ବ୍ୟାକରଣର ଭୂମିକାକୁ ନିଶ୍ଚିତ ଭାବରେ ଉପଲବ୍ଧି କରିଥିବେ । ତେଣୁ ଇଂରାଜୀ ହେଉ ବା ଓଡ଼ିଆ ହେଉ, ପ୍ରତିଟି ବ୍ୟାକରଣକୁ ସେ ପ୍ରଥମେ ଆତ୍ମସ୍ଥ କରି ପରବର୍ତ୍ତୀ କାଳରେ ନିଜର ଉତ୍ତର ପୁରୁଷ ଭାବରେ ବିକ୍ଷିପ୍ତ ହୋଇ ରହିଥିବା ଅଗଣିତ ଛାତ୍ର-ଛାତ୍ରୀମାନଙ୍କ ପାଇଁ ଶିକ୍ଷାଦାନ କରିଥିବେ । ବାଣପୁର ହାଇସ୍କୁଲରେ ଥିବାବେଳେ ସେ ସତ୍ୟବାଦୀର ଜଣେ ଅନ୍ୟତମ ତଥା ବିଶିଷ୍ଟ ଶିକ୍ଷକ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ ସମ୍ପର୍କ ରଖୁଥିଲେ । ସେତେବେଳେ ପଣ୍ଡିତ ନୀଳକଣ୍ଠ ଖଣ୍ଡିଏ ବ୍ୟାକରଣ ପୁସ୍ତକ କେବଳ ଶିକ୍ଷକମାନଙ୍କ ପାଇଁ ରଚନା କରିଥାନ୍ତି । ଥରେ କଥା ପ୍ରସଙ୍ଗରେ ଶ୍ରୀଧର ଦାସ ସେହି ବ୍ୟାକରଣ ପୁସ୍ତକଟିର କଥା ଉଠାଇବାରୁ ଶ୍ରୀଧର ଦାସ ଯେ ସେହି ପୁସ୍ତକ ଖଣ୍ଡିକ ଅଧ୍ୟୟନ କରିଛନ୍ତି ତାହା ଜାଣି ନୀଳକଣ୍ଠ ନିଜର ଆନନ୍ଦକୁ ପ୍ରକାଶ କରିଥିଲେ । ସେହି ବ୍ୟାକରଣ ପୁସ୍ତକଟି ବାସ୍ତବରେ ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ ଆଲେଖ୍ୟରେ ପରିପୂର୍ଣ୍ଣ ଥିଲା । ଶିକ୍ଷକମାନେ କିପରି ବ୍ୟାକରଣ ପାଠକୁ ପଢ଼ାଇବେ ସେ ସଂକ୍ରାନ୍ତରେ ପଣ୍ଡିତ ନୀଳକଣ୍ଠ ଯାହା ଲେଖିଥିଲେ, ପରବର୍ତ୍ତୀ କାଳରେ ସେ ସେହିଥିରୁ ପ୍ରେରଣା ସଂଗ୍ରହ କରିଥିବେ ଅନ୍ୟ ଏକ ବ୍ୟାକରଣ ପୁସ୍ତକ ଲେଖିବା ପାଇଁ । ଅନ୍ୟପକ୍ଷରେ ସେ ସମୟରେ ପ୍ରଚଳିତ ବ୍ୟାକରଣ ପୁସ୍ତକ; ଉଭୟ ସଂସ୍କୃତ ଓ ବଙ୍ଗଳା ବ୍ୟାକରଣ ପରିବର୍ତ୍ତେ ଖଣ୍ଡିଏ ଶୁଦ୍ଧ ଓଡ଼ିଆ ଭାଷାର ବ୍ୟାକରଣ ପୁସ୍ତକର ଆବଶ୍ୟକତାକୁ ଲକ୍ଷ୍ୟ କରି ସେ ତତ୍କାଳୀନ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହିତ ନିଜର ଶ୍ରେଷ୍ଠ ଯୁଗଳବନ୍ଦୀ 'ସର୍ବସାର ବ୍ୟାକରଣ'କୁ ଓଡ଼ିଆ ସାରସ୍ୱତ ଜଗତରେ ଅବସ୍ଥାପିତ କରନ୍ତି । ଯେତେଦୂର ମନେହୁଏ ଏହି ବ୍ୟାକରଣ ପୁସ୍ତକର ନାମକରଣ ପାଇଁ ସେ ବଙ୍ଗଳାର ପ୍ରସିଦ୍ଧ ପଣ୍ଡିତ ନିମାଇଁ ବଲ୍ଲଭ ବିଦ୍ୟାସାଗରଙ୍କର 'ସର୍ବସାର ବ୍ୟାକରଣ'କୁ ଅନୁକରଣ କରିଥିବେ । ତେବେ ଏହି ବ୍ୟାକରଣ ପୁସ୍ତକର ମୌଳିକତା ଓ ଅନନ୍ୟତା ହିଁ ତାକୁ ଯଥେଷ୍ଟ ଗୌରବ ପ୍ରଦାନ କରିଥିଲା । ଏହି ପୁସ୍ତକଟି ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ଏକ ପାଠ୍ୟ-ପୁସ୍ତକ ଭାବରେ ମଧ୍ୟ ସ୍ୱୀକୃତ ହୋଇଥିଲା ।

କେବଳ ସର୍ବସାର ବ୍ୟାକରଣ ନୁହେଁ, ଏହି ବ୍ୟାକରଣ ପୁସ୍ତକଟିକୁ ଛାଡ଼ି ମଧ୍ୟ ସେ ଲେଖିଛନ୍ତି ମୋଟ ଉପରେ ୧୧ ଖଣ୍ଡ ପୁସ୍ତକ । ସର୍ବସାର ବ୍ୟାକରଣର ପୂର୍ବରୁ ମଧ୍ୟ ଲେଖିଛନ୍ତି, ପରେ ମଧ୍ୟ ଲେଖିଛନ୍ତି । ତେବେ ସର୍ବସାର ବ୍ୟାକରଣ ପରି ପ୍ରସିଦ୍ଧି ଅର୍ଜିବାର ଅବଶ୍ୟ କାହାରି ଭାଗ୍ୟରେ ଜୁଟିନାହିଁ । ବ୍ୟାକରଣକୁ ଛାଡ଼ିଦେଲେ ଶ୍ରୀଧର ଦାସ ଲେଖିଛନ୍ତି ମଧ୍ୟ 'ନବ ଅଭିଧାନ', 'ବିବିଧ କୋଷ' ପ୍ରଭୃତି ଅନେକ ଉପାଦେୟ ଗ୍ରନ୍ଥ । ତେବେ

ଶେଷ ପର୍ଯ୍ୟନ୍ତ ସେ ଜଣେ ଶ୍ରେଷ୍ଠ ବୈୟାକରଣ ହୋଇ ରହିଛନ୍ତି । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ତାଙ୍କୁ ପ୍ରକାରାନ୍ତରେ ଯେପରି 'ଚଳନ୍ତି ଶବ୍ଦକୋଷ' ବୋଲି କୁହାଯାଉଥିଲା, ତାହା ତାଙ୍କର ବ୍ୟକ୍ତିତ୍ୱର ମୂଲ୍ୟାୟନ ଦିଗରେ କେତେ ସତ୍ୟ ଓ ସ୍ୱଚ୍ଛ ତାହା ଅନୁମାନ କରାଯାଇପାରେ ।

## (୯) ଅଭିଧାନ ସଂକଳକ

ଶ୍ରୀଧର ଦାସ ଦୀର୍ଘଦିନ ଧରି ଶିକ୍ଷକତା କରିଥିବା ବେଳେ ଗୋଟିଏ ଦିଗକୁ ସେ ନିଶ୍ଚିତ ଭାବରେ ଉପଲବ୍ଧି କରିଥିବେ ଯେ, ଯେଉଁ ଛାତ୍ରର ଶବ୍ଦ ଭଣ୍ଡାର ଅତ୍ୟନ୍ତ ପ୍ରତ୍ୟୂଳ, ସେହି ଛାତ୍ର ନିଜର ବକ୍ତବ୍ୟ ଉପସ୍ଥାପନ କରିବାରେ ସେତେ ସିଦ୍ଧହସ୍ତ ଓ ସୁପରିଣତ । ନିଜେ ମଧ୍ୟ ଛାତ୍ରାବସ୍ଥାରେ ଅଭିଜ୍ଞତା ଅର୍ଜନ କରିଛନ୍ତି ଯେ, ଇଂରାଜୀରେ ଦୃଢ଼ ନହେଲେ ଭବିଷ୍ୟତକୁ ଛୁଇଁହେବ ନାହିଁ । ଏହି କାରଣରୁ ସେ ଇଂରାଜୀ ଓ ମାତୃଭାଷା ଉପରେ ଯଥେଷ୍ଟ ଗୁରୁତ୍ୱାରୋପ କରିଛନ୍ତି । ବ୍ୟକ୍ତିଗତ ଭାବରେ ତାଙ୍କର ପ୍ରଚେଷ୍ଟା ମଧ୍ୟ କିଛି କମ୍ ନୁହେଁ ।

ବଡ଼ଦ ଷ୍ଟେଟ୍‌ରେ ଥିବାବେଳେ ସେ ସେଠାରେ ପ୍ରଚଳିତ ଶବ୍ଦକୁ ନେଇ ଏକ ଅହେତୁକ ଆଗ୍ରହରେ ମୋହାବିଷ୍ଟ ହୋଇପଡ଼ିଥିଲେ । ଅନେକ ଶବ୍ଦକୁ ସଂଗ୍ରହ କରିଥିଲେ ମଧ୍ୟ । ମାତ୍ର ସେତେବେଳେ ବଡ଼ଦ ଷ୍ଟେଟ୍‌ର ରାଜାଙ୍କୁ ନିଜର ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ମୁଦ୍ରଣ ପାଇଁ ସାହାଯ୍ୟ ଭିକ୍ଷା କରିବାକୁ ଆସିଥିବା ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ଅତ୍ୟନ୍ତ ଉତ୍ସାହରେ ସେ ସବୁକୁ ପ୍ରଦାନ କରିଦେଇଥିଲେ । କିନ୍ତୁ ଏହି ଶବ୍ଦ ସଂଗ୍ରହ କରିବାର ମନୋବୃତ୍ତି କିନ୍ତୁ ଏହିଠାରେ ଯେ ସମାଧି ଲଭିଥିବ, ତାହା ନୁହେଁ । ଥରେ ଶବ୍ଦର ଯାଦୁକାରୀ ଶକ୍ତି ମଧ୍ୟରେ ଖେଳି ସାରିଲା ପରେ ସେଥିରୁ ନିଜକୁ ମୁକ୍ତି କରିଦେବା ଆଉ ସହଜସାଧ୍ୟ ବ୍ୟାପାର ନୁହେଁ । ତେଣୁ ସେ ପୁନଶ୍ଚ ଏହି ଶବ୍ଦ ସଂଗ୍ରହ କରିବାରେ ନିଜକୁ ମଗ୍ନ ରଖିଥିବେ ଓ ସମୟ କ୍ରମେ ଗୋଟିଏ ଅଭିଧାନ ପ୍ରଣୟନ କରିବାର ସ୍ୱପ୍ନ ଦେଖିଥିବେ; ଯେଉଁ ସ୍ୱପ୍ନର ସାକାର ରୂପ ଭାବରେ ଆମେ ପାଉ 'ନବ ଅଭିଧାନ', 'ବିବିଧ କୋଷ' ପ୍ରଭୃତି ମହାନ ମହାନ ଗ୍ରନ୍ଥମାନ । ଲେଖିଛନ୍ତି ମଧ୍ୟ ଇଂରାଜୀରୁ ଓଡ଼ିଆ ରୂପାନ୍ତରର ଅଭିଧାନ (Students English Oriya Dictionary) । ଓଡ଼ିଆ ଶବ୍ଦର ଅର୍ଥ ଓଡ଼ିଆରେ ବୁଝିବା ଯେତିକି ଦରକାର ସେତିକି ମଧ୍ୟ ତା'ର ଇଂରାଜୀ ରୂପାନ୍ତରକୁ ଜାଣିବା ଆବଶ୍ୟକ । ଅନ୍ୟପକ୍ଷରେ ପ୍ରତ୍ୟେକଟି କ୍ଲିଷ୍ଟ ଇଂରାଜୀ ଶବ୍ଦର ଓଡ଼ିଆ ଅର୍ଥ ନ ଜାଣିଲେ ଇଂରାଜୀ ଭାଷା ସାହିତ୍ୟ ମଧ୍ୟକୁ ପ୍ରବେଶ କରିବା ମଧ୍ୟ ସହଜସାଧ୍ୟ ହୋଇପାରିବ ନାହିଁ । ଏଇ ସୂତ୍ରରେ

ଶ୍ରୀଧର ଦାସ ନିଜର ଉତ୍ତରପିଢ଼ିଙ୍କ ପାଇଁ ସୃଷ୍ଟି କରିଚାଲିଛନ୍ତି ଏପରି ଅଭିଧାନ, ଯାହା ମାଧ୍ୟମରେ ନିଜ ଭାଷାରୁ ଇଂରାଜୀ ଭାଷାକୁ ବୁଝିଲା ପରି ଇଂରାଜୀ ଭାଷାକୁ ମଧ୍ୟ ନିଜ ଭାଷାରେ ବୁଝିହେବ ।

ଶ୍ରୀଧର ଦାସ ନିଜେ ପ୍ରଚୁର ପରିମାଣରେ ପାଶ୍ଚାତ୍ୟ ଅନୁବାଦଗୁଡ଼ିକ ପଢ଼ିଛନ୍ତି ଓ ତାକୁ ଅନୁବାଦ ମାଧ୍ୟମରେ ମଧ୍ୟ ଉପଲବ୍ଧି କରିଛନ୍ତି । ତେଣୁ ସେ ସିଦ୍ଧାନ୍ତ ନେଇଛନ୍ତି ଯେ, ଏହି ଅନୁବାଦ କଳା ପାଇଁ ଆବଶ୍ୟକ ଥିବା ଏକାନ୍ତ ଉପାଦେୟ ଅଭିଧାନକୁ ପ୍ରଥମେ ସଂକଳନ କରାଇବା ପାଇଁ । ତାଙ୍କର ଏହିପରି ସତ୍ ଉଦ୍ୟମ କେବେ ବିଫଳ ହେବାର ନୁହେଁ । ଆଜି ତାଙ୍କର ଉତ୍ତରପିଢ଼ି ସେହିସବୁ ପୁସ୍ତକଗୁଡ଼ିକ ମାଧ୍ୟମରେ ବୈଦେଶିକ ଭାବନାକୁ ଯେପରି ଉପଲବ୍ଧି କରୁଛନ୍ତି; ଟ୍ରାନ୍ସଲେସନ ମାଧ୍ୟମରେ ମଧ୍ୟ ନିଜ ଭାଷା ଓ ସାହିତ୍ୟକୁ ପାଶ୍ଚାତ୍ୟ ଭାବନାରେ ରୂପାନ୍ତରିତ କରିପାରୁଛନ୍ତି ।

ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଅଧ୍ୟାପକ ଶ୍ରୀଧର ଦାସ ଯେ ଜଣେ ଉଚ୍ଚକୋଟୀର ସଂକଳକ, ତାହାକୁ ସ୍ୱୀକାର ନକରି ରହିହୁଏ ନାହିଁ ।

## (ଙ) ସମାଜସେବୀ

ଅଧ୍ୟାପକ ଶ୍ରୀଧର ଦାସ ପୂର୍ଣ୍ଣମାତ୍ରାରେ ଜଣେ ଦରଦୀ ତଥା ମାନବବାଦୀ ମଣିଷ ଥିଲେ । ମଣିଷକୁ ସେ ଭଲ ପାଉଥିଲେ । ନିଜେ ହୁଏତ ଅତ୍ୟନ୍ତ ସରଳ ହୋଇଥିବାରୁ ସମସ୍ତଙ୍କୁ ସେ ସରଳ ବୋଲି ଭାବିନେଉଥିଲେ । ମାତ୍ର ଅନ୍ୟମାନେ ଶ୍ରୀଧରଙ୍କୁ ଅନୁରୂପ ଭାବରେ ତା'ର ମୂଲ୍ୟ ଦେଇନାହାନ୍ତି । ନିଜ ଲୋକଙ୍କ ଠାରୁ ଆରମ୍ଭ କରି ବାହାର ଲୋକଙ୍କ ପର୍ଯ୍ୟନ୍ତ, ଅନେକଙ୍କ ଠାରୁ ସେ ପ୍ରତାରଣା ପାଇଛନ୍ତି ମାତ୍ର । ପ୍ରତାରଣା ଅବଶ୍ୟ ଦୁଃଖ ଦେଇଛି । ହେଲେ ସେ କେବେ ସେହି ପ୍ରତାରଣା ପାଇଁ ପ୍ରତିହିଂସା ପରାୟଣ ହୋଇନାହାନ୍ତି । ବରଂ ନିଜର ବିଶାଳ ବ୍ୟକ୍ତିତ୍ୱକୁ ଆହୁରି ସଂପ୍ରସାରିତ କରି ଅନ୍ୟାୟ ଆଚରଣ କରୁଥିବା ସେହି ଅମଣିଷମାନଙ୍କୁ କ୍ଷମା କରିଦେଇଛନ୍ତି ଓ ପ୍ରତିବଦଳରେ ଯଥାସମ୍ଭବ ସାହାଯ୍ୟ କରି ନିଜ ଉଦାର ଭାବନାକୁ ଆହୁରି ବଳିଷ୍ଠ କରିଛନ୍ତି । କେବଳ ବ୍ୟକ୍ତିଗତ ସ୍ତରରେ ନୁହେଁ, ସାମାଜିକ ସ୍ତରରେ ମଧ୍ୟ ତାଙ୍କର ସାହାଯ୍ୟର ହସ୍ତ ବହୁ ଦୂରକୁ ପ୍ରଲମ୍ବିତ ହୋଇଯାଇଛି । କେତୋଟି ଦୃଷ୍ଟାନ୍ତ ମୂଳକ ଉଦାହରଣକୁ ଲକ୍ଷ୍ୟ କଲେ ଉକ୍ତିର ଯଥାର୍ଥତା ବେଶ୍ ସ୍ପଷ୍ଟ ହୋଇଉଠିବ ।

ଜଗତ୍‌ସିଂହପୁର ଠାରେ ଚାକିରି କରୁଥିବାବେଳେ ସ୍କୁଲ ପାଇଁ କେତେକ ଜମିର ଆବଶ୍ୟକତା ଉପଲବ୍ଧି ହେଲା ଏବଂ ସେଠାକାର ଗୋଟିଏ ମଠର ପ୍ରଚୁର ଜମି ଥିବାରୁ

ଶ୍ରୀ କୃଷ୍ଣ ମହାପାତ୍ରଙ୍କ କଥାରେ ସେ ମଠର ମହନ୍ତଙ୍କୁ କହି ନିଜ ନାମରେ କିଛି ଜମି ଆଣି ପରବର୍ତ୍ତୀ କାଳରେ ସ୍କୁଲକୁ ଦେଇଦେବା କଥାରେ ରାଜି ହୋଇ ସେହି ମର୍ମରେ କାର୍ଯ୍ୟ କରିଥିଲେ । ମାତ୍ର ଦେଓ୍ୱାନଙ୍କର ମୃତ୍ୟୁ ହେବାରୁ ସେ ଆଉ ଆଗକୁ ନ ବଢ଼ି ସ୍ଥିର ରହିଗଲେ । ମାତ୍ର ପରେ ଜଣେ ସ୍ଥାନୀୟ ଭଦ୍ରବ୍ୟକ୍ତି ଭଗତଚରଣ ମହାନ୍ତି ପୁନଶ୍ଚ ତାଙ୍କୁ ସେହି ଦିଗରେ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଇଲେ ଓ ଜମି ପଟ୍ଟା କରିଦେବା ପରେ ତାଙ୍କୁ ଜମି ଦେଇଦେବାକୁ ବୁଝାଇଲେ । ମାତ୍ର ପରବର୍ତ୍ତୀ କାଳରେ ସେହି କଥା ବାସ୍ତବ ରୂପ ନେବାବେଳକୁ ରେଜେଷ୍ଟ୍ରି ପରେ ସେ ଯେପରି ଟଙ୍କା ନଦେଇ ଧୋକ୍କା ଦେଲେ ତାହା କଳ୍ପନାତୀତ । ଶ୍ରୀଧର ଦାସଙ୍କ ଭାଷାରେ ତାଙ୍କର ସେତେବେଳର ଦୁଃଖ ଏହିପରି : "ଭଗତବାବୁଙ୍କ ସହ ଦୀର୍ଘ ଦିନ ଧରି ମୋର ସୌହାର୍ଦ୍ଦ୍ୟ ଥିଲା । ତାଙ୍କୁ ବିଶ୍ୱାସ କରି ମୁଁ ଏହି ବ୍ୟବହାର ପାଇଥିଲି ।"[୯୬]

ନିଜ ଭାଇକୁ ବିଶ୍ୱାସ କରି ଗ୍ରାମର ସମ୍ପତ୍ତିରୁ ସେ ବେଦଖଲ ହୋଇ ଯାଇଥିଲେ । ପରେ ସେ କଥା ଜାଣି ଅବଶ୍ୟ ତାଙ୍କ ମନରେ କ୍ରୋଧ ହୋଇଅଛି ଓ ସେ ସହସ୍ରାଧିକ ଟଙ୍କା ଖର୍ଚ୍ଚ କରି କାଗଜପତ୍ରର ନକଲ ବାହାର କରି ତା'ର ବିପକ୍ଷରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି । ମାତ୍ର ଯେତେବେଳେ ପୁଣି ସେମାନେ ନିଜର ଭୁଲକୁ ବୁଝିପାରି କ୍ଷମା ଭିକ୍ଷା କରିବା ସହ ସେ ଜମିରେ ମାଲିକାନା ପାଇଁ ଆଉ ଦାବୀ ନ କରିବାକୁ ପ୍ରାର୍ଥନା କରିଛନ୍ତି; ସେତେବେଳେ ସେ କିଛି ବିଚାର ନକରି ତାଙ୍କୁ କ୍ଷମା କେବଳ ଦେଇନାହାନ୍ତି; ସମସ୍ତ ଚଞ୍ଚକତାକୁ ଜାଣି ମଧ୍ୟ ସେମାନଙ୍କ ଇଚ୍ଛାରେ ଦାନପତ୍ର କରିଦେଇଛନ୍ତି । ନିଜ ସରଳ ବିଶ୍ୱାସର ଯାହା ଫଳ ସେ ପାଇଛନ୍ତି ।[୯୭]

କଟକର ରହଣୀ କାଳରେ ପ୍ରଥମେ ସେ ଦେଉଳସାହିର ଯେଉଁ ସ୍ଥାନରେ ବସବାସ କରି ରହିଥିଲେ, ତାଙ୍କର ପଡ଼ୋଶୀ ତାଙ୍କ ସହିତ ପ୍ରତାରଣା କରିବାରୁ ସେ ସେହି ବ୍ୟକ୍ତି ସହ ଆଉ ଗଣ୍ଡଗୋଳ ନକରିବାକୁ ଇଚ୍ଛା କରି, ସେ ଜମିକୁ ବିକ୍ରି କରି ପୁନଶ୍ଚ ସେହି ସାହିରେ ଅନ୍ୟତ୍ର ଖଣ୍ଡିଏ ଜମି କିଣିକରି ଘର ବନାଇ ରହିଥିଲେ ।

ସ୍ଥାନୀୟ ଦେଉଳସାହିରେ ଯେତେବେଳେ ଶିକ୍ଷାର ପ୍ରସାର ପାଇଁ ଯୋଜନା ହେଲା, ସେତେବେଳେ ଅଧ୍ୟାପକ ଶ୍ରୀଧର ଦାସ ମଧ୍ୟ ଯତ୍‌ପରୋନାସ୍ତି ନିଜର ସାହାଯ୍ୟର ହସ୍ତକୁ ସଂପ୍ରସାରିତ କରିଦେଇଛନ୍ତି । ରଘୁନାଥଜୀଉ ବିଦ୍ୟାପୀଠ ପାଇଁ ସେ ପ୍ରଥମେ ନିୟମ କାନୁନ୍ ବା ନିୟମ ଧାରା ପ୍ରଣୟନ କରିଛନ୍ତି । ପରିଚାଳନା ସମିତିରେ ମଧ୍ୟ ହୋଇଛନ୍ତି

(୯୬) ସୁଅ ମୁହଁର ପତର / ପୃ : ୨୫୧

(୯୭) ସୁଅ ମୁହଁର ପତର / ପୃ : ୨୯୦-୨୯୧

ଅନ୍ୟତମ ସକ୍ରିୟ କର୍ମୀ । ରଘୁନାଥଜୀଉ ବିଦ୍ୟାପୀଠରେ ପ୍ରତିଷ୍ଠା ମୂଳରେ ତାଙ୍କର ଅବଦାନ ସମ୍ପର୍କରେ ଆଲୋକପାତ କରି ତତ୍କାଳୀନ ପରିଚାଳନା ସମିତିର ସମ୍ପାଦକ ତଥା ବର୍ତ୍ତମାନର ରଘୁନାଥଜୀଉ ମହାବିଦ୍ୟାଳୟର ପରିଚାଳନା ସମିତିର ସମ୍ପାଦକ ଶ୍ରୀଯୁକ୍ତ ନୃସିଂହ ଚରଣ ପାତ୍ର କୁହନ୍ତି, "ପ୍ରାୟ ୧୯୭୮ ମସିହା ବେଳକୁ ଶ୍ରୀଧର ସାର ଆମ ଦେଉଳସାହିରେ ଘର ଖଣ୍ଡିଏ କରି ରହିଥାନ୍ତି । ଏହି ସମୟରେ ମୁଁ, ଚିନ୍ତାଭାଇ (ସ୍ୱର୍ଗତ ଚିନ୍ତାମଣି ନାୟକ) ପ୍ରଭୃତିଙ୍କ ନଈ ଗାଧୁଆ ବେଳର ବିଭିନ୍ନ କଥାବାର୍ତ୍ତାରୁ ଆମ ଅଞ୍ଚଳରେ ଏକ ସ୍କୁଲ କରିବାର ପରିକଳ୍ପନା ଜନ୍ମନେଲା । ଆଖି ଆଗରେ ଭାସି ଉଠିଲେ ଶ୍ରୀଧର ସାର । ଆମେ ତାଙ୍କ ସହିତ ପରାମର୍ଶ କଲୁ । ବିଦ୍ୟାଳୟ ଗଠନ ପାଇଁ ସମସ୍ତ ପ୍ରକାର ପ୍ରାଥମିକ ପାଠ୍ୟକ୍ରମଗୁଡ଼ିକ ପ୍ରସ୍ତୁତ କରାଗଲା । ବିଦ୍ୟାଳୟ ଗଠନ କମିଟିର ସେ ହେଲେ ପ୍ରଥମ ସଭାପତି । ସଂପାଦକ ହେଲି ମୁଁ ।"(୯୮) ପୁଣି ମଧ୍ୟ ସେ କୁହନ୍ତି, "x x ସ୍କୁଲ ନିର୍ମାଣରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସବୁ କର୍ମକୁ ତନ୍ନ ତନ୍ନ କରି ଦେଖନ୍ତି । ନିଜେ ସବୁ ଡ୍ରାଫଟ୍ ଲେଖନ୍ତି । ସ୍କୁଲ ନିର୍ମାଣ ପରେ ସ୍କୁଲ ପାଇଁ ମଧ୍ୟ ଏକ ସମ୍ବିଧାନ ସେ ପ୍ରସ୍ତୁତ କରନ୍ତି, ମୋହିତବାବୁଙ୍କ ସହାୟତାରେ । x x x ସ୍କୁଲଟି ନିର୍ମାଣ ହୋଇଗଲା । ଆଜି ଏଇ ଦେଉଳସାହିର ଉପକଣ୍ଠରେ ଥିବା ରଘୁନାଥଜୀଉ ବିଦ୍ୟାପୀଠ ହେଉଛି ସେହି ସ୍କୁଲ, ତା'ରି କଥା ମୁଁ କହୁଛି । ସେ ମୃତ୍ୟୁ ସମୟ ପର୍ଯ୍ୟନ୍ତ ଏହି ବିଦ୍ୟାଳୟ ପରିଚାଳନା କମିଟିର ସଭାପତି ଥିଲେ ।"(୯୯)

କେବଳ ଦେଉଳସାହିର ରଘୁନାଥଜୀଉ ବିଦ୍ୟାପୀଠ ନୁହେଁ, ମହାବିଦ୍ୟାଳୟ ନିର୍ମାଣ ଦିଗରେ ମଧ୍ୟ ତାଙ୍କର ଅବଦାନ ପ୍ରତୁଳ । ରଘୁନାଥଜୀଉ ମହାବିଦ୍ୟାଳୟ ନିର୍ମାଣର ପରିକଳ୍ପନା କରାଗଲାବେଳକୁ ତାଙ୍କର ବୟସ ଅଧିକ ହୋଇଯାଇଥିଲା । ଏହି କାରଣରୁ ସେ ତା'ର ପରିଚାଳନା କମିଟିର ସଦସ୍ୟ ହୋଇପାରିଲେ ନାହିଁ । ମାତ୍ର ତାଙ୍କର ମନୋବଳ ଏତେ ସୁଦୃଢ଼ ଥିଲା ଯେ, ସେ ଏହି ଅନୁଷ୍ଠାନର ପ୍ରତିଟି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ଯେତେବେଳେ ଯିଏ ତାଙ୍କର ସାହାଯ୍ୟ ଲୋଡ଼ିଛନ୍ତି; ସେ ତାଙ୍କୁ ଅକୁଣ୍ଠ ଚିତ୍ତରେ ସମସ୍ତ ପ୍ରକାର ସାହାଯ୍ୟ ପ୍ରଦାନ କରୁଥିଲେ; ଉତ୍ସାହିତ କରୁଥିଲେ ଓ ପ୍ରଗତି ମାର୍ଗରେ ଆଗେଇ ଯିବା ପାଇଁ ଅନୁପ୍ରେରଣା ଯୋଗାଇ ଦେଉଥିଲେ । ଏ ସଂକ୍ରାନ୍ତରେ ମଧ୍ୟ ରଘୁନାଥଜୀଉ ମହାବିଦ୍ୟାଳୟର ସମ୍ପାଦକ ଶ୍ରୀଯୁକ୍ତ ନୃସିଂହଚରଣ ପାତ୍ରଙ୍କ ମନ୍ତବ୍ୟ ଏକାନ୍ତ ଭାବରେ ସ୍ମରଣଯୋଗ୍ୟ । ସେ କୁହନ୍ତି, "x x ସେ କଲେଜ ନିର୍ମାଣ କମିଟିର ସଦସ୍ୟ ହୋଇପାରିଲେ ନାହିଁ । ମାତ୍ର ତାଙ୍କର ମନୋବଳ ଖୁବ୍ ସୁଦୃଢ଼ ଥିଲା । ଅନ୍ତିମ ଅବସ୍ଥା ପର୍ଯ୍ୟନ୍ତ ଯେତେବେଳେ ଯେଉଁଠି ଆମେ ଝୁଣ୍ଟି ପଡ଼ିବାର ଆଶଙ୍କା କରିଛୁ, ସେତେବେଳେ ସେ ଆମକୁ ତାଙ୍କର ଉଚିତ

---

(୯୮) ଶ୍ରୀଧର ସ୍ମରଣେ / ସଂ - ହେମନ୍ତ କୁମାର ପରିଡ଼ା / ପୃ : ୧୬

(୯୯) ଶ୍ରୀଧର ସ୍ମରଣେ / ସଂ - ହେମନ୍ତ କୁମାର ପରିଡ଼ା / ପୃ : ୧୭

ପରାମର୍ଶ ଦେଇଛନ୍ତି । ତାଙ୍କ ପରାମର୍ଶର ସଫଳ ରୂପାୟନ ମଧ୍ୟ ଆଜି ଏହି ଅଞ୍ଚଳରେ ମୁଣ୍ଡ ଟେକି ଠିଆ ହୋଇଛି । ତାହା ହେଉଛି ରଘୁନାଥଜୀଉ ମହାବିଦ୍ୟାଳୟ ।(୧୦୦)

କେବଳ ରଘୁନାଥଜୀଉ ବିଦ୍ୟାପୀଠ ବା ରଘୁନାଥଜୀଉ ମହାବିଦ୍ୟାଳୟ ନିର୍ମାଣ ଦିଗରେ ନୁହେଁ; ଅଧିକନ୍ତୁ ସାହିର ଉନ୍ନତି କକ୍ଷେ ତାଙ୍କର ଅବଦାନ କେବେ ବିସ୍ମୃତ ହେବାର ନୁହେଁ । ଦେଉଳସାହିରେ ସେ ସ୍ୱ-ଉପାର୍ଜିତ ଧନରେ ଯେଉଁ ସମ୍ପତ୍ତି କ୍ରୟ କରିଥିଲେ, ସେହି ଜମିରୁ ମଧ୍ୟ କିଛି ସାହିକୁ ଦାନ କରିଛନ୍ତି; ଯେଉଁଠି ଆଜି ଦେବୀଘର (ଦୁର୍ଗାଘର) ନିର୍ମାଣ କରାଯାଇଛି ।

ସମାଜସେବା କ୍ଷେତ୍ରରେ ଅଧ୍ୟାପକ ଶ୍ରୀଧର ଦାସଙ୍କର ଆଉ ଏକ ବିଶେଷ ଅବଦାନକୁ ମଧ୍ୟ ଏହି କ୍ଷେତ୍ରରେ ସ୍ମରଣ କରାଯାଇପାରେ । ଯେତେବେଳେ ଓଡ଼ିଶାର ପ୍ରଖ୍ୟାତ ରାଜନୀତିଜ୍ଞ ଡକ୍ଟର ହରେକୃଷ୍ଣ ମହତାବ୍ ତାଙ୍କର History of Orissa ଗ୍ରନ୍ଥଟିକୁ ରଚନା କରୁଥିଲେ, ସେତେବେଳେ ଶ୍ରୀ ଦାସ ତାଙ୍କୁ ସେହି ଦିଗରେ ଯଥେଷ୍ଟ ସାହାଯ୍ୟ ପ୍ରଦାନ କରିଥିଲେ । ଡକ୍ଟର ମହତାବଙ୍କ ସ୍ୱୀକାରୋକ୍ତିଟି ଏହିପରି : "x x I am deeply indebted to Professor Shridhar Das of the Utkal Christian College who kindly rendered me ungrunding assistance in compilling this book for publication. But for his help it would have been well-high impossible for me to have this work published."(୧୦୧) ସେହିପରି ମଧ୍ୟ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପ୍ରସ୍ତୁତି କାଳରେ ଅଧ୍ୟାପକ ଶ୍ରୀ ଦାସ ବଉଦ ଅଞ୍ଚଳରୁ ସଂଗ୍ରହ କରିଥିବା ଅନେକ ଶବ୍ଦ ସମୂହକୁ ତାହାର ମୁଖ୍ୟ ସଂକଳକ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ଅର୍ପଣ କରିଥିଲେ, ଯାହାର ବିଷଦ୍ ଆଲୋଚନା ଏହି ପୁସ୍ତକରେ ଅନ୍ୟତ୍ର କରାଯାଇଅଛି । ଆହୁରି ମଧ୍ୟ ଓଡ଼ିଶାରେ ଗ୍ରନ୍ଥାଗାର ଓ ସଂଗ୍ରହାଳୟର ଅନ୍ୟତମ ପୁରୋଧା ଦାଶରଥି ପଟ୍ଟନାୟକଙ୍କୁ ସେ ଏକଦା ବଉଦର ଏକ ଏଲ୍.ପି. ସ୍କୁଲରେ ଶିକ୍ଷକ ଚାକିରି କରାଇଦେବାରେ ନିଜର ଅକୁଣ୍ଠିତ ସାହାଯ୍ୟ କରିବା ସହ ପରବର୍ତ୍ତୀ କାଳରେ ସେ ଯେତେବେଳେ ଗ୍ରନ୍ଥାଗାର ପ୍ରତିଷ୍ଠା କରିବା ଦିଗରେ ନିଜର ମନୋନିବେଶ କଲେ, ସେତେବେଳେ ମଧ୍ୟ ଶ୍ରୀଧର ଦାସ ତାଙ୍କ ପାଇଁ ଗ୍ରନ୍ଥାଗାରର ଏକ ନିୟମାବଳୀ ପ୍ରସ୍ତୁତ କରିଦେଇଥିଲେ ।(୧୦୨)

---

(୧୦୦) ତତ୍ରୈବ / ପୃ : ୧୭-୧୮

(୧୦୧) History of Orissa-Dr. Harekrishna Mahatab / Introduction - P. 2

(୧୦୨) ଦାଶରଥି ପଟ୍ଟନାୟକ - ଅଧ୍ୟାପକ ଗୌରାଙ୍ଗ ଚରଣ ଦାଶ । ଠେକା ଓ ଠେଙ୍ଗାର ମଣିଷ / ପୃ : ୧୩ ଓ ୧୫

ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଅଧ୍ୟାପକ ଶ୍ରୀଧର ଦାସଙ୍କର ସମାଜସେବୀ ମନୋଭାବ ହେତୁ ଯେ ଆମ ସମାଜର ବହୁ ବ୍ୟକ୍ତିବିଶେଷ ଓ ବିଶେଷକରି ତାଙ୍କର ନିଜ ସାହି, ଦେଉଳସାହି ଉପକୃତ ହୋଇପାରିଥିଲେ, ଏଥିରେ ସନ୍ଦେହ ନାହିଁ ।

ଏଇ ସମାଜରେ ତାଙ୍କର ଶହ ଶହ ଛାତ୍ର ରହିଛନ୍ତି । ସମସ୍ତଙ୍କ ପ୍ରତି ତାଙ୍କର ଅକୁଣ୍ଠିତ ସ୍ନେହ । ବାଟରେ ଦେଖାହେଲେ, ସମସ୍ତଙ୍କ ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାରରେ ସେ ଅନ୍ୟର ହୃଦୟକୁ କିଣି ନେଉଥିଲେ । ଆଉ ଛାତ୍ରଙ୍କ ସହିତ ଦେଖାହେବା ମାତ୍ରେ ପ୍ରଥମ ପ୍ରଶ୍ନ ଉଠେ ସମକାଳୀନ ସାହିତ୍ୟ ପାଇଁ କ'ଣ ଲେଖା ଚାଲିଛି ବୋଲି । ସାହିତ୍ୟରେ ସେ ନିଜର ମନନକୁ ଯେପରି ନିମଗ୍ନ ରଖିଥାନ୍ତି; ଛାତ୍ର-ଛାତ୍ରୀଙ୍କୁ ମଧ୍ୟ ଠିକ୍ ସେହିପରି ନିମଗ୍ନ ରହିବାକୁ ପରାମର୍ଶ ଦେଇଥାନ୍ତି । ସାହିତ୍ୟ ଲେଖାଲେଖି କରି କିଛି ଅର୍ଥ ଉପାର୍ଜନ କରିବାକୁ ସେ ସବୁବେଳେ ସବୁ ଛାତ୍ରଙ୍କୁ ପରାମର୍ଶ ଦେଇଛନ୍ତି । ଅଯଥା ସମୟକୁ ନଷ୍ଟ କରିବାରେ ସେ ଥିଲେ ସମ୍ପୂର୍ଣ୍ଣ ପକ୍ଷପାତୀ । ଆଜିକାଲିର ସମାଜରେ ଲୋକମାନଙ୍କ ଠାରେ ସମୟ ଅତିକ୍ରମ କରିବା (Time pass) ର ଯେଉଁ ବିଶେଷ କଳାଟି ଦେଖାଯାଏ, ତାହା ତାଙ୍କ ଠାରେ ଆଦୌ ନଥିଲା । ପୁସ୍ତକ ହେଲା ତାଙ୍କର ସମୟ ଅତିକ୍ରମ କରିବାର ମହାନ୍ ସେତୁ ଓ ନିଜର ସୃଜନ କର୍ମ ଥିଲା ମଧ୍ୟ ସମୟ ଅତିକ୍ରାନ୍ତର ଅନ୍ୟଏକ ହେତୁ । ସେ କୌଣସି ମୁହୂର୍ତ୍ତକୁ ସଚେତନ ଭାବରେ ନଷ୍ଟ ହେବାକୁ ଦେଇନାହାନ୍ତି । ବ୍ୟକ୍ତିଗତ ଭାବରେ ହେଉ, ପରୋକ୍ଷ ଭାବରେ ହେଉ ବା ସାହିତ୍ୟ ସାଧନାର ମାଧ୍ୟମରେ ହେଉ; ସେ କେବଳ ସମାଜର ସେବା କରିଆସିଛନ୍ତି । ମୌଳିକ ସୃଜନ କର୍ମ ମଧ୍ୟରେ ଏକ ଶାଶ୍ୱତ ପୃଥିବୀର ପରିକଳ୍ପନା କରିଛନ୍ତି । ତାଙ୍କର ଶାଶ୍ୱତ ଚିନ୍ତାଧାରା ନିଶ୍ଚିତ ଭାବରେ ଆଗାମୀ ପୃଥିବୀ ପାଇଁ ଆଲୋକର ଉତ୍ସ ହୋଇ ରହିଥିବ, ଏଥିରେ ଦ୍ୱିମତ ନଥାଇପାରେ ।

***

# ଅଭ୍ୟୁଦୟ ସାହିତ୍ୟ ସମାଜ ସହିତ ସମ୍ପର୍କ

ଅଭ୍ୟୁଦୟ ସାହିତ୍ୟ ସମାଜ ବାସ୍ତବରେ ଶ୍ରୀଧର ଦାସଙ୍କର ପ୍ରିୟ ସହକର୍ମୀ ପଠାଣି ପଟ୍ଟନାୟକଙ୍କର ମାନସ ସନ୍ତାନ । ସେ ଯେତେବେଳେ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ନିଯୁକ୍ତ ହେଲେ, ସେତିକିବେଳେ ସେ ଗୋଟିଏ ସାହିତ୍ୟ ସଂସଦ ଗଠନ କରିବାକୁ ମନସ୍ଥ କରିଥିଲେ । ପ୍ରଥମେ ସେ କେତେକ ଛାତ୍ରଙ୍କୁ ନେଇ ଗୋଟିଏ ସାହିତ୍ୟ ସଂସଦ ଗଠନ କରିଥିଲେ ଓ ତା'ର ନାମକରଣ କରିଥିଲେ 'ଅଭ୍ୟୁଦୟ ସାହିତ୍ୟ ସମାଜ' ଭାବରେ । ଏହି ସଂଗଠନର ପ୍ରମୁଖ କାର୍ଯ୍ୟ ରହିଲା ଓଡ଼ିଆ ସାହିତ୍ୟର ଅନାଲୋଚିତ ଦିଗ ଉପରେ ଆଲୋକପାତ କରିବା । ତାଙ୍କର ପ୍ରଥମ ଚାକିରିଟି ସାମୟିକ କାଳ ପାଇଁ ଉଦ୍ଦିଷ୍ଟ ଥିଲା । ତେଣୁ ଚାକିରି କାଳର ପରିସମାପ୍ତି ପରେ ସେ ପୁଣି ସାହିତ୍ୟ ସମାଜକୁ ନିଜର ମନ ମଧ୍ୟରେ ଚାପିଦେଲେ । କାରଣ ସେତେବେଳେ ସାହିତ୍ୟାଲୋଚନାର ପରିସର ଆଦୌ ଅନୁକୂଳ ନଥିଲା ।

ପରେ ପୁଣି ଖ୍ରୀଷ୍ଟ ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ପତ୍ର ପାଇ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦେଲା ପରେ, ମନ ମଧ୍ୟରେ ସୁପ୍ତ ସାହିତ୍ୟ ସମାଜର ଚେତନାଟି କ୍ରମଶଃ ଜାଗ୍ରତ ହୋଇଉଠିଲା । ଏହି ସମୟର ପରିବେଶରେ ସେହି ଅଭ୍ୟୁଦୟ ସାହିତ୍ୟ ସମାଜ ଏକ ନବ ବିଭାରେ ଦୀପ୍ତିବାନ୍ ହୋଇଉଠିଲା । ସାହିତ୍ୟ ସେବା ପାଇଁ ମଧ୍ୟ ମିଳିଲେ ଅତ୍ୟନ୍ତ ନିଷ୍ଠାପର ଓ ସାହିତ୍ୟପ୍ରାଣ ପ୍ରିୟ ଛାତ୍ରବୃନ୍ଦ । ସହଯୋଗୀ ଭାବରେ ମଧ୍ୟ ମିଳିଲେ ସମବୟସ୍କ ଓ ବରିଷ୍ଠ ଅଧ୍ୟାପକବୃନ୍ଦ । ବରିଷ୍ଠ ସହକର୍ମୀ ଶ୍ରୀ ଶ୍ରୀଧର ଦାସ, ବାନାମ୍ବର ଆଚାର୍ଯ୍ୟ ଓ ଶ୍ରୀନିବାସ ମିଶ୍ର ପ୍ରମୁଖ ଜ୍ଞାନୀ, ଗୁଣୀ ତଥା ବିଦ୍ୱାନମାନଙ୍କର ଆଶୀର୍ବାଦରେ ଏହି ସାହିତ୍ୟ ସମାଜଟି ବେଶ୍ ଗତିମୁଖର ହୋଇଉଠିଥିଲା ।

ଶ୍ରୀଧର ଦାସ ଅନେକ ଥର ଅନେକ ବିଦ୍ୱାନ ସାହିତ୍ୟିକମାନଙ୍କ ସହ ଏହି ଅନୁଷ୍ଠାନର କାର୍ଯ୍ୟକ୍ରମରେ ଯୋଗଦାନ କରିଛନ୍ତି । ଅଧ୍ୟାପକ ପଠାଣି ପଟ୍ଟନାୟକ ଏ ସଂକ୍ରାନ୍ତରେ ନିଜର ସ୍ମୃତିଚାରଣ କରି କୁହନ୍ତି, "x x ବେଳେବେଳେ ଆମର ଏହି ସତୀଚଉରା ବୈଠକକୁ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଅଧ୍ୟାପକ ଶ୍ରୀଧର ଦାସଙ୍କୁ ନିମନ୍ତ୍ରଣ କରାଯାଉଥିଲା ଭାଷଣ ଦେବାପାଇଁ ।"[୧୦୩] ଶ୍ରୀଧର ଦାସ ଯେହେତୁ ବ୍ୟକ୍ତିଗତ ଜୀବନରେ ଖୁବ୍ ବାସ୍ତବବାଦୀ ଥିଲେ, ସେହି ଦୃଷ୍ଟିକୋଣରୁ ସେ ନିଜର କନିଷ୍ଠ ସହକର୍ମୀ ପଠାଣିଙ୍କୁ ସାହିତ୍ୟ ଅନୁଷ୍ଠାନରେ ନିବିଷ୍ଟ ହେବା ଅପେକ୍ଷା ସାରସ୍ୱତ ସଂରଚନାରେ ମନୋନିବେଶ କରିବାକୁ ଅଧିକ ପରାମର୍ଶ ଦେଉଥିଲେ ।

ଅଧ୍ୟାପକ ଶ୍ରୀଧର ଦାସ ନିଜ ଜୀବନରେ ଅର୍ଥର ଆବଶ୍ୟକତାକୁ ଉପଲବ୍ଧି କରିଛନ୍ତି ଓ ସେହି କାରଣରୁ ନିଜ ପିଲାମାନଙ୍କୁ ଓ ସନ୍ତାନତୁଲ୍ୟ ଛାତ୍ର-କନିଷ୍ଠ ସହକର୍ମୀ-ସମସ୍ତଙ୍କୁ ଅର୍ଥର ବାସ୍ତବତା ସହିତ ମୁହାଁମୁହିଁ ହୋଇ ପରିସ୍ଥିତିକୁ କିପରି ମୁକାବିଲା କରିବାକୁ ହେବ, ସେ ସମ୍ପର୍କରେ ମଧ୍ୟ ସଚେତନ କରାଇ ଦେଇଛନ୍ତି ।

ଅଭ୍ୟୁଦୟ ସାହିତ୍ୟ ସମାଜ ସହିତ ତାଙ୍କର ସମ୍ପର୍କ କେବଳ ସାହିତ୍ୟସ୍ତରୀୟ ଓ ଛାତ୍ର ପ୍ରତି ଗୁରୁର ବା କନିଷ୍ଠଙ୍କ ପ୍ରତି ଗୁରୁଜନଙ୍କର ଯେଉଁ ମମତ୍ୱବୋଧର ସମ୍ପର୍କ, ଠିକ୍ ସେହି ସ୍ତରୀୟ । ସେ ପ୍ରତ୍ୟକ୍ଷ ଭାବରେ ସେଥିରେ କେବେ ଜଡ଼ିତ ନଥିଲେ କି ବ୍ୟକ୍ତିଗତ ଜୀବନରେ କେବେ ସାହିତ୍ୟାନୁଷ୍ଠାନ ଗଢ଼ିବାକୁ ସିଦ୍ଧାନ୍ତ ନେଇନଥିଲେ । ମାତ୍ର ସାହିତ୍ୟ ସମାଜର ନିମନ୍ତ୍ରଣକୁ କେବେ ଉପେକ୍ଷା କରିନାହାନ୍ତି, ବରଂ ତା'ର ନିମନ୍ତ୍ରଣକୁ ରକ୍ଷା କରି ସେଠାକୁ ଯାଇଛନ୍ତି । ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି, ସ୍ମୃତିରକ୍ଷାରେ ଫଟୋଉତ୍ତୋଳନ କାଳରେ ମଧ୍ୟ ଯୋଗ ଦେଇଛନ୍ତି । ଆଜି ବି ସେ ଫଟୋ ଦେଖିଲେ ପଠାଣି ପଟ୍ଟନାୟକଙ୍କର ଭାବନାରେ ଯେଉଁ ତରଙ୍ଗ ଖେଳିଯାଏ, ତାହାକୁ ଦେଖିଲେ ମନେହୁଏ ଅଧ୍ୟାପକ ଶ୍ରୀଧର ଦାସ ସତେ ଯେପରି ଆଜି ଜୀବନ୍ତ ହୋଇଉଠିଛନ୍ତି । ତେଣୁ ଅଧ୍ୟାପକ ଶ୍ରୀଧର ଦାସଙ୍କର 'ଅଭ୍ୟୁଦୟ ସାହିତ୍ୟ ସମାଜ'ରେ ଛାଡ଼ି ଯାଇଥିବା ଅପୂର୍ବ ସାରସ୍ୱତ ସ୍ମୃତିରେ ସେ ଚିରକାଳ ଅମର ହୋଇ ରହିବେ, ଏଥିରେ ସନ୍ଦେହ ନାହିଁ ।



(୧୦୩) ଜନସୁଧା / ଜାନୁୟାରୀ - ୨୦୦୭ ପୃ : ୧୪

# ସେମାନଙ୍କ ଦୃଷ୍ଟିରେ ଅଧ୍ୟାପକ ଶ୍ରୀଧର ଦାସ

୧. "x x x ଶ୍ରୀଧର ଦାସ (୧୯୦୧-୧୯୮୮) ଥିଲେ ଏକାଧାରରେ ଜଣେ ବିଶିଷ୍ଟ ଶିକ୍ଷକ, ଶିକ୍ଷାବିତ୍, ବୟାକରଣିକ, ସାହିତ୍ୟିକ ଏବଂ ଅନୁବାଦକ; ସର୍ବୋପରି ଜଣେ ଆଦର୍ଶ ମଣିଷ । ତାଙ୍କର ଜୀବନ ଥିଲା ସଂଘର୍ଷମୟ । ପ୍ରତିକୂଳ ପରିବେଶ ସହିତ ଲଢ଼େଇ କରି ଜୀବନରେ ସେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ ।"

*ବିଭୁତି ପଟ୍ଟନାୟକ : ଆଦର୍ଶ ମଣିଷ ଶ୍ରୀଧର ଦାସ / ସଂପାଦକୀୟ ପୃଷ୍ଠା*

୨. "ପଣ୍ଡିତ ଶ୍ରୀଧର ଦାସ ଭାଷା ବିଜ୍ଞାନୀ ନଥିଲେ । କିନ୍ତୁ ସେ ଥିଲେ ଜଣେ ସାର୍ଥକ ଭାଷା ଶିକ୍ଷକ । ଭାଷା ଜ୍ଞାନର ମୂଳଦୁଆ ମନରେ ପକାଇଦେବା ପାଇଁ ସେ କିଶୋର ଓ ତରୁଣ ଛାତ୍ରମାନଙ୍କୁ ଆଗରେ ରଖି ବ୍ୟାକରଣ ଓ ଅଭିଧାନ ପ୍ରଣୟନରେ ଆଗ୍ରହ ରଖିଥିଲେ ।"

*ପ୍ରଫେସର ଖଗେଶ୍ୱର ମହାପାତ୍ର : ଭାଷା ଶିକ୍ଷକ ପଣ୍ଡିତ ଶ୍ରୀଧର ଦାସ,*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ : ୧୩*

୩. "ଶ୍ରୀଧରବାବୁ ଥିଲେ ନିରବଚ୍ଛିନ୍ନ ଅନୁସନ୍ଧିତ୍ସା ଓ ଅକ୍ଲାନ୍ତ ଜ୍ଞାନ ପିପାସା ପ୍ରଣୋଦିତ କଠୋର ସାଧନାବ୍ରତୀ ଏକ ନିରଳସ କର୍ମଯୋଗୀ । ତାଙ୍କ ପାଇଁ କର୍ମ ଜୀବନର ନାମାନ୍ତର ମାତ୍ର, କର୍ମହୀନତା ଓ ମୃତାବସ୍ଥା ଏକ ଏବଂ ଅଭିନ୍ନ । ପୂଜା ଆରାଧନା କରି ଦେବାଶୀର୍ବାଦ ଓ ବରପ୍ରାପ୍ତି ପର୍ଯ୍ୟନ୍ତ ଅପେକ୍ଷା କରି ରହିବା ପାଇଁ ତାଙ୍କର ଧୈର୍ଯ୍ୟ ନଥିଲା । ତାଙ୍କ ପାଇଁ କର୍ମ ହିଁ ଥିଲା ଆରାଧନା । କର୍ମ ହିଁ ଇହଲୋକରେ ଆଜୀବ୍ୟ ଓ ପରଲୋକରେ ମୁକ୍ତିର ମାର୍ଗ ।"

*ଅଧ୍ୟାପକ ନିତ୍ୟାନନ୍ଦ ଦର୍ଜୀ : ବନ୍ଧୁ, ଦାର୍ଶନିକ ଓ ପଥ ପ୍ରଦର୍ଶକ*
*ଶ୍ରୀଧର ସ୍ମରଣେ : ପୃ-୨୦*

୪. "x x x ସେ ଥିଲେ ଏକାନ୍ତ ନିରଳସ । x x x ପିଲାମାନଙ୍କୁ ଦେଖିଲେ ସରଳ ଜୀବନ ଯାପନ କରି ଉଚ୍ଚ ଚିନ୍ତା କରିବା ପାଇଁ ପରାମର୍ଶ ଦେଉଥିଲେ । x x x ଶିକ୍ଷକ ଜୀବନର ମହନୀୟତା ପ୍ରତି ସେ ଥିଲେ ସଚେତନ ।"

*ପ୍ରଫେସର ଗୌରୀକୁମାର ବ୍ରହ୍ମା : ଅର୍ଦ୍ଧ ଶତାବ୍ଦୀର ବରିଷ୍ଠ ସାଧକ*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ-୧୫*

୫. "ପୁରୁଷାକାର ଓ ଈଶ୍ୱର ନିର୍ଭରତା, ଏହି ଦୁଇଟି ଉପାଦାନରେ ଶ୍ରୀଧରବାବୁଙ୍କ ଜୀବନ ନିୟନ୍ତ୍ରିତ ହୋଇଥିଲା । ଏହି ଦୁଇଟି ଉପାଦାନ ଅଥବା ପ୍ରବୃତ୍ତିର ଯେଉଁଠି ସମନ୍ୱୟ ଘଟିଥାଏ, ଜୀବନ ସେଠାରେ ଚମତ୍କାର ଭାବରେ ବଞ୍ଚିପାରେ । ସେଠାରେ ଜୀବନର ଛୋଟ ଛୋଟ ଦୁଃଖ, ଯନ୍ତ୍ରଣା, ଅତୃପ୍ତି, ହତାଶା ଅଥବା ହାହାକାର କୌଣସି ଭାବରେ ବ୍ୟକ୍ତିକୁ ବିଚଳିତ କରିପାରେ ନାହିଁ । ଶ୍ରୀଧରବାବୁଙ୍କ ଜୀବନରେ ସେଇ ଅବିଚଳିତ ଆଦର୍ଶ, ଜୀବନର ଶେଷ ପର୍ଯ୍ୟନ୍ତ ବଞ୍ଚି ରହିଥିଲା । ସେଥିପାଇଁ ସେ ଜୀବନରେ କୌଣସି ପରିସ୍ଥିତିରେ ସୁଦ୍ଧା ଭାଙ୍ଗିପଡ଼ି ନଥିଲେ ।"

*ପ୍ରଫେସର କାହ୍ନୁଚରଣ ମିଶ୍ର : ବିଦଗ୍ଧ ବସୁନ୍ଧରା*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ-୧୯*

୬. "ଜ୍ଞାନ ରାଜ୍ୟର ଯେକୌଣସି ଇଲାକାରେ ତାଙ୍କର ପ୍ରତିଭାକୁ ସ୍ୱୀକାର କରିବାର କଥା । ଇଂରେଜୀ ଭାଷା ଓ ସାହିତ୍ୟରେ ତାଙ୍କର ଦକ୍ଷତା ବିଶେଷ ଭାବରେ ଥିଲା । ଇତିହାସ, ଭୂଗୋଳ, ଗଣିତ, ବିଜ୍ଞାନ, ଅର୍ଥନୀତି, ସମାଜନୀତି, ଦର୍ଶନ, ଜ୍ୟୋତିଷ—ଯାହା ହେଉନା କାହିଁକି ସବୁ ବିଷୟରେ ତାଙ୍କର ଜ୍ଞାନ ଥିଲା ପର୍ଯ୍ୟାପ୍ତ । ସେଥିପାଇଁ ଅଧ୍ୟାପକ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦର୍ଜୀ ତାଙ୍କୁ ନାମିତ କରିଥିଲେ 'ଚଳନ୍ତି ଜ୍ଞାନକୋଷ' ।"

*ଡକ୍ଟର ଦେବେନ୍ଦ୍ର ମହାନ୍ତି : ସ୍ମୃତିରୁ ଖିଏ*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ : ୬୦-୬୧*

୭. "ପ୍ରଗାଢ଼ ସାଧନାର ପ୍ରତୀକ ଋଷି ପ୍ରତିମ ଶ୍ରୀଧରବାବୁଙ୍କ ଜୀବନୀ ପାଠ କଲାବେଳେ ନିଜ ଜୀବନର ବହୁ ଅକୁହା କଥା ଆପେ ଆପେ କହି ହୋଇଯାଏ, ଏହାହିଁ ତାଙ୍କ ଜୀବନର ସାର୍ଥକତା ।"

*ପ୍ରଫେସର କୃଷ୍ଣ ଚରଣ ସାହୁ : ନିରଳସ ସାଧକ*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ : ୩୫*

୮. "x x x ଶ୍ରୀଧର ଦାସଙ୍କୁ ସାଧାରଣ ଭିତରେ ଜଣେ ଅସାଧାରଣ ବ୍ୟକ୍ତି ବୋଲି ମାନିବାକୁ ହେବ ଓ ତାଙ୍କ ନୈତିକ ମୂଲ୍ୟବୋଧ ନିକଟରେ ନତ ସ୍ୱୀକାର କରିବାକୁ ହେବ । ପରମୁଖାପେକ୍ଷିତାହୀନ ତାଙ୍କ ସଂଗ୍ରାମଶୀଳ ବ୍ୟକ୍ତିତ୍ୱକୁ ଶ୍ରଦ୍ଧା କରିବାକୁ ହେବ ।"

*ପ୍ରଫେସର ଦାଶରଥି ଦାସ : ଶ୍ରୀଧର ଦାସ : ସୁଅ ମୁହଁର ପଥର*
*ଶ୍ରୀଧର ସ୍ମରଣେ / ପୃ : ୬୦*

୯. "ବାସ୍ତବିକ ସାର୍ ଥିଲେ କ୍ରାଏଷ୍ଟ କଲେଜର ଭୀଷ୍ମ ପିତାମହ ।"

*ଗୋପାଳ ମିଶ୍ର : କ୍ରାଏଷ୍ଟ କଲେଜର ଭୀଷ୍ମ ପିତାମହ*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ : ୯୦*

୧୦. "ବାସ୍ତବିକ ଶ୍ରୀଧରବାବୁ ଥିଲେ ଜଣେ ନିସ୍ୱାର୍ଥପର କର୍ମଯୋଗୀ । ସମସ୍ତଙ୍କର ପୂଜ୍ୟ ଓ ପରାମର୍ଶଦାତା ।"

*ଶ୍ରୀକାନ୍ତ ପଣ୍ଡା : କର୍ମଯୋଗୀ ଶ୍ରୀଧର ଦାସ*
*ଆଦର୍ଶ ମଣିଷ ଶ୍ରୀଧର ଦାସ / ପୃ : ୯୯*

୧୧. "କେବଳ ଜୀବିକା ଅର୍ଜନର ସମ୍ମାନଜନକ ପନ୍ଥା ରୂପେ ଶିକ୍ଷାନୁଷ୍ଠାନରେ ଅଧ୍ୟାପନା ଅଧ୍ୟାପକ ଦାସଙ୍କ ଜୀବନର ଏକମାତ୍ର ସନ୍ତୋଷ ନଥିଲା । ସେ ଥିଲେ ଯଥାର୍ଥରେ ଜଣେ ନିଖିଳର କର୍ମଯୋଗୀ । ତେଣୁ ଶିଶୁ ସାହିତ୍ୟ ସୃଷ୍ଟି, ବିଶ୍ୱ ସାହିତ୍ୟର କ୍ଲାସିକ୍ ଗ୍ରନ୍ଥର ଅନୁବାଦ, ପାଠ୍ୟ-ପୁସ୍ତକ ଓ ବ୍ୟାକରଣ ରଚନା, ଅଭିଧାନ ପ୍ରଣୟନ; ଏ ସକଳ କ୍ଷେତ୍ରରେ ତାଙ୍କ ସାଧନାର ଦିଗ ପ୍ରସାରିତ ହୋଇଥିଲା । x x x ନିଜ ଜୀବନର ବୈଷୟିକ ଉନ୍ନତି ସାଙ୍ଗକୁ ଭାଷା ସାହିତ୍ୟର ବିକାଶ ସାଧନ ତାଙ୍କ ଧ୍ୟେୟ ଥିଲା ।"

*ପ୍ରଫେସର ଶ୍ରୀନିବାସ ମିଶ୍ର*
*ଶ୍ରୀଧର ସ୍ମରଣିକା / ପୃ : ଅଗ୍ରଲେଖ*

୧୨. "ସାରଙ୍କ ଶୈକ୍ଷିକ ବ୍ୟକ୍ତିତ୍ୱର ଏକ ଅସଲ ଦିଗନ୍ତ ହେଉଛି, ତାଙ୍କର ଗାନ୍ଧୀଧର୍ମୀ ସରଳତା । x x x ଶିକ୍ଷକତା ବ୍ୟତୀତ ତାଙ୍କ ଜୀବନରେ ସାହିତ୍ୟ ପ୍ରୀତି ତ ତାଙ୍କୁ ଉବେଇ ଟୁବେଇ ବାନ୍ଧି ରଖୁଥିଲା ।"

*ପ୍ରଫେସର ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର*
*ଶ୍ରୀଧର ସ୍ମରଣିକା / ପୃ : ୯*

୧୩. "ସେ ଥିଲେ ନିଜ ହାତ ଗଢ଼ା ମଣିଷଟିଏ । ସେଥିପାଇଁ କାହାରି ଉପରେ କେବେହେଲେ ନିର୍ଭର କରିନାହାନ୍ତି ।"

*ପ୍ରଫେସର ପଠାଣି ପଟ୍ଟନାୟକ*

*ଶ୍ରୀଧର ସ୍ମରଣେ / ପୃ : ୯୭*

୧୪. "ସେ ଥିଲେ ଖୁବ୍ ମେଟିକୁଲସ । ସବୁକିଛି ଟିକିନିଖି ଦେଖିବା ଲୋକ । ଯେଉଁ କାମଟି କରୁଥିଲେ ତାକୁ ନିଷ୍ଠାର ସହ ଭଲ ଭାବରେ କରୁଥିଲେ । ଅଧାପନ୍ତରିଆ, ଉପରଠାଉରିଆ ବା ଏଣୁତେଣୁ ଭାବରେ କରି ଦେଉନଥିଲେ । ତେଣୁ ତାଙ୍କ କାମ ଥିଲା ସୁନ୍ଦର ଓ ତ୍ରୁଟିହୀନ ।

*ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି*

*ଶ୍ରୀଧର ସ୍ମରଣେ / ପୃ : ୯୮*

୧୫. "x x x କହିବାକୁ ଗଲେ ସେ ଥିଲେ ଏକ ଚଳନ୍ତି ଅଭିଜ୍ଞତାର ମୂର୍ତ୍ତିମନ୍ତ ପ୍ରତୀକ ।"

*ନୃସିଂହଚରଣ ପାତ୍ର*

*ଶ୍ରୀଧର ସ୍ମରଣେ / ପୃ : ୧୭*

୧୬. "ମଉସାଙ୍କର ସବୁଠାରୁ ଅନୁକରଣୀୟ ଗୁଣ ଥିଲା ତାଙ୍କର ବାଣୀ ସାଧନା । ପଢ଼ିବାକୁ ଓ ଲେଖିବାକୁ ସେ ବହୁତ ଭଲ ପାଉଥିଲେ । ନିୟମିତ ଅଧ୍ୟୟନ ତାଙ୍କର ଗୋଟିଏ ନିଶା ଥିଲା କହିଲେ ଚଳେ । ବୋଧହୁଏ ଦିନକୁ ଦି'କପ୍ ଚା' ଛଡ଼ା ତାଙ୍କର ଆଉ କିଛି ନିଶା ନଥିଲା । ମାତ୍ର ତାଙ୍କର ଝୁଙ୍କ ଥିଲା ପଢ଼ିବାରେ ।"

*ରବୀନ୍ଦ୍ର ନାରାୟଣ ମିଶ୍ର : ଶ୍ରୀଧର ମଉସା*

*ଶ୍ରୀଧର ସ୍ମରଣିକା / ପୃ : ୮୫*

୧୭. "ଶ୍ରୀଧର ଦାସ ପ୍ରାଚୀନ, ନବୀନ ସବୁ କବିଙ୍କ ସାହିତ୍ୟ ବଡ଼ ପ୍ରାଞ୍ଜଳ ଭାବେ ପଢ଼ାଇ ପାରନ୍ତି । x x ଆଧୁନିକ ଓଡ଼ିଆ ସାହିତ୍ୟରେ ମଧ୍ୟ ତାଙ୍କ ସମାଲୋଚନା ଦୃଷ୍ଟିଭଙ୍ଗୀ ଉତ୍କୃଷ୍ଟ । ସାହିତ୍ୟର ବିଭିନ୍ନ ଦିଗ୍‌ବଳୟରେ ତାଙ୍କ ସଫଳ ଦୃଷ୍ଟି ସଂଚାର ପରିଦୃଷ୍ଟ ହୁଏ ।"

*ଅଧ୍ୟାପକ ଗଙ୍ଗାଧର ଷଡ଼ଙ୍ଗୀ : ସ୍ୱର୍ଗତ ଅଧ୍ୟାପକ ଶ୍ରୀଧର ଦାସ*

*ଶ୍ରୀଧର ସ୍ମରଣିକା / ପୃ : ୯୧*

୧୮. "ଅଧ୍ୟାପକ ଶ୍ରୀଧର ଦାସ କେବଳ ଜଣେ ଉଚ୍ଚକୋଟୀର ଶିକ୍ଷାବିତ୍ କିମ୍ବା ଛାତ୍ରବତ୍ସଳ ଶିକ୍ଷକ ନଥିଲେ; ସେ ଥିଲେ ଆମର ପରାମର୍ଶଦାତା ଏବଂ ଜଣେ ହିତୈଷୀ ଅଭିଭାବକ । ଛାତ୍ରମାନଙ୍କ ସୁଖରେ ସୁଖୀ ଓ ଦୁଃଖରେ ସମବେଦନଶୀଳ । ତାଙ୍କୁ ଅଧ୍ୟାପକ ଭାବରେ ପାଇ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗ ଗୌରବାନ୍ୱିତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।"

*ନାଟ୍ୟରତ୍ନ ଭଞ୍ଜ କିଶୋର ପଟ୍ଟନାୟକ : ପୂଜ୍ୟ ଗୁରୁ ଶ୍ରୀଧର ଦାସ : ଏକ ମହାନ୍ ଆତ୍ମା / ଶ୍ରୀଧର ସ୍ମରଣିକା / ପୃ : ୯୯*

୧୯. "ଶ୍ରୀଧର ଦାସଙ୍କର ଓଡ଼ିଆ ସାହିତ୍ୟ ପଢ଼ାଇବାର ଶୈଳୀ ଅତ୍ୟନ୍ତ ଚମତ୍କାର । ମୁଁ ତାଙ୍କର ପ୍ରତ୍ୟକ୍ଷ ଛାତ୍ର ନଥିଲି; ତେବେ ଥରେ ଖ୍ରୀଷ୍ଟ ମହାବିଦ୍ୟାଳୟକୁ କୌଣସି ଏକ କାମରେ ଯାଇଥିଲି । ସେତେବେଳେ ସେ ଶ୍ରେଣୀ ଗୃହରେ ପଢ଼ାଉଥିଲେ । ବାହାରେ ଥାଇ ମୁଁ ମୁଗ୍ଧ ଚିତ୍ତରେ ତାହା ଶୁଣିଛି ଓ ତାଙ୍କ ଅଧ୍ୟାପନା ଶୈଳୀ ସହିତ ପରିଚିତ ହୋଇଛି ।"

*ଡକ୍ଟର କୃଷ୍ଣ ଚରଣ ବେହେରା : (ବ୍ୟକ୍ତିଗତ ଆଲୋଚନା ପ୍ରସଙ୍ଗରେ)*

୨୦. "ଅଧ୍ୟାପକ ଶ୍ରୀଧର ଦାସ ଏକନିଷ୍ଠ ସାଧନାରେ, ଛାତ୍ର ବତ୍ସଳତାରେ, ଜ୍ଞାନ ଆହରଣ ତଥା ବିତରଣରେ, ଆଦର୍ଶରେ ଉଦ୍‌ବୁଦ୍ଧ କରାଇବାରେ ଅନନ୍ୟ ଥିଲେ । ତାଙ୍କ ପରି ମହାନୁଭବ ବ୍ୟକ୍ତିମାନେ କିଛି ନିଅନ୍ତି ନାହିଁ, କେବଳ ଦେଇ ଯାଆନ୍ତି । ଶିକ୍ଷକତାକୁ ମହିମାନ୍ୱିତ କରିଥିବା ଏପରି ଜଣେ ବ୍ୟକ୍ତିଙ୍କର ସ୍ମୃତି ପ୍ରତି ମୁଁ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।"

*ରାମାକାନ୍ତ ରଥ : ଅଭିଭାଷଣ*
*ଅନୁବାଦ କଳା : ପରିସୀମା ଓ ପୁରୋଦୃଷ୍ଟି / ପୃ : ୧*

୨୧. "ସେତେବେଳେ ମୋର ସହକର୍ମୀ ଥିଲେ ଶ୍ରୀଧର ଦାସ—ଓଡ଼ିଆରେ ଏମ୍.ଏ. ପାଶ୍ କରି, ପରେ ସେ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ହୋଇଥିଲେ । ସଂସାରୀଙ୍କ ମଧ୍ୟରେ ସାବଧାନୀ, ଭାବୁକଙ୍କ ମଧ୍ୟରେ କର୍ମୀ । ସାହିତ୍ୟିକଙ୍କ ମହଲରୁ ସେ ଖସି ଆସିଥିଲେ ପାଠ୍ୟ ରଚୟିତାଙ୍କ ସ୍ତରକୁ । ଅର୍ଥ ପ୍ରଚୁର ମିଳିଲା, ମିଳିପାରିଲା ନାହିଁ ପ୍ରତିଷ୍ଠା । ପଣ୍ଡିତ ନାରାୟଣଙ୍କ ସହିତ ମିଶି ସେ ହୋଇଗଲେ ବୟାକରଣ ।"

*ପ୍ରଫେସର କୁଞ୍ଜ ବିହାରୀ ଦାଶ*
*ମୋ କାହାଣୀ / ଓଡ଼ିଶା ବୁକ୍ ଷ୍ଟୋର - ୧୯୮୦ / ପୃ : ୧୯୧*

୨୨. "He is the Proud Father of his three sons-One I.A.S., Second one Allied Railway Service and the youngest an Engineer. He was a very simple person and a learned Oriya Writer. Our Deula Sahi will be proud of him and his children."

*ଡକ୍ଟର ମୋହିତ କୁମାର ପାତ୍ର*
*ଶ୍ରୀଧର ସ୍ମରଣେ / ସ୍ମୃ-Message*

୨୩. "Born and brought up in life, like his father, incircumstances of object poverty, he lived a full life. He was sought after, admired, loved, conspired against and cheated again and again. Yet he continued to trust people as before and his love of the human world remained undiminished.

x x x x A crusader in the cause of the preservation and development of Oriya language and Culture in the outlying Oriya-speaking areas, the author taught Oriya to school students who were being taught another language instead of their mother tongue. His spirited efforts in this direction link him to the lineage of those valiant makers of modern Orissa : Madhusudan Das, Fakirmohan Senapati and others."

*Prof. G.K. Das in his review of Sua Muhanra Patara*
*Indian Literature : 234*
*Sahitya Akademi / New Delhi / P. 186*

***

# ଶ୍ରୀଧର ଦାସ : କାଳାନୁକ୍ରମିକ ତଥ୍ୟ ପରିବେଷଣ

୧୯୦୧ : ଶ୍ରୀଧର ଦାସଙ୍କ ଜନ୍ମ
(ଜାତକାନୁସାରେ ତାଙ୍କର ଜନ୍ମ ୧୯୦୧ ମସିହା ଅକ୍ଟୋବର ମାସ ୪ ତାରିଖ, ମାତ୍ର ସ୍କୁଲ ସାର୍ଟିଫିକେଟ୍‌ରେ ତାଙ୍କର ଜନ୍ମ ୧୯୦୨ ମସିହା ଅକ୍ଟୋବର ମାସ ୧ ତାରିଖ ବୋଲି ଉଲ୍ଲେଖ ରହିଛି)

୧୯୦୬ : ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ବିଦ୍ୟାରମ୍ଭ

୧୯୦୯-୧୦ : ପୁରୋହିତଙ୍କ ଦ୍ୱାରା ଆନୁଷ୍ଠାନିକ ଭାବରେ ବିଦ୍ୟାରମ୍ଭ

୧୯୧୧-୧୨ : କାକଟପୁର ମଧ୍ୟ ଭର୍ଣ୍ଣାକୁଲାର ସ୍କୁଲରେ ବିଦ୍ୟାରମ୍ଭ

୧୯୧୫ : ମଧ୍ୟ ଭର୍ଣ୍ଣାକୁଲାର ବୃତ୍ତି ପରୀକ୍ଷାକୁ ଉତ୍ତୀର୍ଣ୍ଣ

୧୯୧୫-୨୧ : ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ

୧୯୧୯/୨୦/୨୧: ହରିଶ୍ଚନ୍ଦ୍ର ଘୋଷ ମେମୋରିଆଲ ମେଡାଲ ପ୍ରାପ୍ତ

୧୯୨୧ : ଦଶମ ଶ୍ରେଣୀରେ ଫାର୍ଷ୍ଟ ଏଡ୍ ଟ୍ରେନିଂ

୧୯୨୨ : ପୁରୀ ଜିଲ୍ଲା ସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ଓ ସ୍କୁଲ ଲିଭିଙ୍ଗ ସାର୍ଟିଫିକେଟ୍ ପରୀକ୍ଷାରେ 'ବିହାର-ଓଡ଼ିଶା'ରେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ

୧୯୨୨ : ବିହାର ଇଂଜିନିୟରିଂ ସ୍କୁଲରେ ବିଦ୍ୟାରମ୍ଭ (ଶିକ୍ଷା ସ୍ଥଗିତ)

୧୯୨୨ : ବି.ଏନ୍. କଲେଜରେ ଆଇ.ଏ. ପାଠପଢ଼ା ଆରମ୍ଭ

୧୯୨୪ : ଆଇ.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ

୧୯୨୪ : ବୀର ନରସିଂହପୁରର ବିଶ୍ୱନାଥ ମି.ଇ. ସ୍କୁଲରେ ଅସ୍ଥାୟୀ ଭାବରେ ପ୍ରଧାନଶିକ୍ଷକ ଭାବରେ ଚାକିରି ଆରମ୍ଭ (ମାତ୍ର ୯ ମାସ)

୧୯୨୪-୨୫ : କାକଟପୁର ମାଇନର ସ୍କୁଲରେ ପ୍ରଧାନଶିକ୍ଷକ ଭାବରେ ଯୋଗଦାନ

| | | |
|---|---|---|
| ୧୯୨୭ | : | ଅର୍ଦ୍ଧବାର୍ଷିକ ଟିଚର୍ସ ସାର୍ଟିଫିକେଟ ପରୀକ୍ଷାରେ ଉତ୍ତୀର୍ଣ୍ଣ |
| ୧୯୨୭-୨୮ | : | ସ୍କାଉଟ ଅଫିସର ଟ୍ରେନିଂ |
| ୧୯୨୮ | : | ଘରୋଇ ଭାବରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ |
| ୧୯୨୮ | : | ଓଲସିଂହ ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଯୋଗଦାନ |
| ୧୯୨୯ | : | କଟକ ଟ୍ରେନିଂ କଲେଜରେ ୯ ମାସ ଡି.ଇଡି. ପାଠ ଅଧ୍ୟୟନ |
| ୧୯୨୯-୩୦ | : | ଫାର୍ଷ୍ଟ ଏଡ୍ ଟ୍ରେନିଂ (ରି-ଏକ୍‌ଜାମିନେସନ) |
| ୧୯୩୦ | : | ଡି.ଇଡି. ପରୀକ୍ଷାରେ ଉତ୍ତୀର୍ଣ୍ଣ |
| ୧୯୩୦ | : | ବଉଦ ଠାରେ ଥିବା 'King Edward VII' ସ୍କୁଲରେ ଶିକ୍ଷକତା ଓ ପରବର୍ତ୍ତୀ କାଳରେ ସେହିଠାରେ 'Education Officer' ଭାବେ ପଦୋନ୍ନତି |
| ୧୯୩୧ | : | ପ୍ରଥମ କନ୍ୟା ବିଷ୍ଣୁପ୍ରିୟାର ଜନ୍ମ |
| ୧୯୩୩ | : | ପ୍ରଥମ ପୁତ୍ର ରାଧାକୃଷ୍ଣର ଜନ୍ମ |
| ୧୯୩୩-୩୪ | : | ଓଲସିଂହ ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଯୋଗଦାନ |
| ୧୯୩୫ | : | ବାଣପୁର ହାଇସ୍କୁଲରେ ଶିକ୍ଷକତା |
| ୧୯୩୬ | : | ଦ୍ୱିତୀୟ ପୁତ୍ର ଜଗନ୍ନାଥ ପ୍ରସାଦ ଦାସଙ୍କ ଜନ୍ମ |
| ୧୯୩୯ | : | ତୃତୀୟ ପୁତ୍ର କୃଷ୍ଣ ପ୍ରସାଦ ଦାସଙ୍କ ଜନ୍ମ |
| ୧୯୪୨ | : | ଚତୁର୍ଥ ପୁତ୍ର ରଘୁନାଥ ପ୍ରସାଦ ଦାସଙ୍କ ଜନ୍ମ |
| ୧୯୪୨ | : | ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେଇ କୃତୀତ୍ୱର ସହିତ ଉତ୍ତୀର୍ଣ୍ଣ ଓ ବାଣପୁର ତ୍ୟାଗ |
| ୧୯୪୨ | : | ଖଣ୍ଡମଉଦା ହାଇସ୍କୁଲରେ ଶିକ୍ଷକତା |
| ୧୯୪୩ | : | ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଇଂରାଜୀର ପରୀକ୍ଷକ ଭାବେ ନିଯୁକ୍ତି |
| ୧୯୪୩-୪୮ | : | ଜଗତ୍‌ସିଂହପୁରରେ ରହଣୀ, ଜଗତ୍‌ସିଂହପୁର ହାଇସ୍କୁଲରେ ଶିକ୍ଷକତା ଓ ଜମି କ୍ରୟ |
| ୧୯୪୮ | : | କୋରୁଆ ହାଇସ୍କୁଲରେ ଶିକ୍ଷକତା (ଗ୍ରୀଷ୍ମାବକାଶ ପର୍ଯ୍ୟନ୍ତ) |
| ୧୯୪୮ | : | ଉତ୍କଳ ଖ୍ରୀଷ୍ଟିଆନ କଲେଜର ଅଧ୍ୟାପକ ଭାବରେ ଯୋଗଦାନ |
| ୧୯୬୮ | : | ଖ୍ରୀଷ୍ଟ ମହାବିଦ୍ୟାଳୟ (ଉତ୍କଳ ଖ୍ରୀଷ୍ଟିଆନ କଲେଜର ନୂଆ ନାମ)ରୁ ଅବସର |
| ୧୯୭୪ | : | ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର ଲାଭ |
| ୧୯୭୮ | : | ଦୃଷ୍ଟିଶକ୍ତି କ୍ଷୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସାହିତ୍ୟିକ ସମ୍ବର୍ଦ୍ଧନା ଲାଭ |
| ୧୯୮୦ | : | ଦୃଷ୍ଟିଶକ୍ତି ଲୋପ |
| ୧୯୮୮ | : | ମୃତ୍ୟୁ (ଅପ୍ରେଲ ୨୪ ତାରିଖ) |



# ଶ୍ରୀଧର ଦାସ : ଘଟଣାନୁକ୍ରମିକ ତଥ୍ୟ ପରିବେଷଣ

| | |
|---|---|
| ପୂରାନାମ | ଶ୍ରୀଧର ଦାସ |
| ପିତାଙ୍କ ନାମ | ଶ୍ୟାମାଚରଣ ଦାସ |
| ମାତାଙ୍କ ନାମ | ଶ୍ରଦ୍ଧାମଣି ଦେବୀ |
| ଜନ୍ମ ସମୟ | ୧୯୦୧ ମସିହା ଅକ୍ଟୋବର ମାସ ୪ ତାରିଖ (ଜାତକାନୁଯାୟୀ)<br>(୧୯୦୨ ମସିହା ଅକ୍ଟୋବର ମାସ ୧ ତାରିଖ ସ୍କୁଲ ସାର୍ଟିଫିକେଟାନୁଯାୟୀ) |
| ଜନ୍ମସ୍ଥାନ | କାକଟପୁର ଅଞ୍ଚଳର ନାଉସିରା ଗ୍ରାମ |
| ଜମିଜମା | ପିତାଙ୍କ ମୃତ୍ୟୁ ବେଳକୁ (୧୯୩୯) ମୋଟ ବାର ଏକର ଜମି ଥିଲା, ଯାହାକି ଏବେ ତାଙ୍କର ଭାଇ ଗଙ୍ଗାଧର ଭୋଗ କରୁଛନ୍ତି । ପଟ୍ଟା, କାଗଜପତ୍ର ଇତ୍ୟାଦିରେ ଶ୍ରୀଧର ଦାସଙ୍କ ନାମ ନାହିଁ । ଷଡ଼ଯନ୍ତ୍ରର ଶିକାର ହୋଇ ସେ ସବୁ ଭାଇଙ୍କୁ ଦାନପତ୍ରରେ ଦେଇ ଦେଇଛନ୍ତି । ବର୍ତ୍ତମାନ କଟକସ୍ଥିତ ଦେଉଳସାହିରେ ଥିବା ଘର ଖଣ୍ଡିକ ତାଙ୍କ ସ୍ୱଅର୍ଜିତ ସମ୍ପତ୍ତି । |
| ଶିକ୍ଷାଗତ ଯୋଗ୍ୟତା : | ଏମ୍.ଏ. (ଓଡ଼ିଆ) |
| ପ୍ରାଥମିକ ବିଦ୍ୟାରମ୍ଭ | ପର୍ଯ୍ୟାୟକ୍ରମେ (୧) ନିମ୍ନ ପ୍ରାଥମିକ ବିଦ୍ୟାଳୟ, କାକଟପୁର, (୨) କାକଟପୁର ଭର୍ଣ୍ଣାକୁଲାର ସ୍କୁଲ, କାକଟପୁର, (୩) ପୁରୀ |

ଜିଲ୍ଲା ସ୍କୁଲ, ପୁରୀ (୧୯୧୬-୧୯୨୪)ରେ ଶିକ୍ଷା ଗ୍ରହଣ କରି ସ୍କୁଲ ଲିଭିଙ୍ଗ ସାର୍ଟିଫିକେଟ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ଗଣିତ, ଭର୍ଣ୍ଣାକୁଲାର ଓ ସଂସ୍କୃତରେ ଡିଷ୍ଟିଙ୍କସନ୍ ମଧ୍ୟ ପାଇଥିଲେ । ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଅବିଭକ୍ତ ବିହାର ଓ ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ରଖି ମାସିକ ଟ ୧୫ ଙ୍କା ଲେଖାଏଁ ବୃତ୍ତି ମଧ୍ୟ ପାଇଥିଲେ । ଏଇ ସ୍କୁଲ ଲିଭିଙ୍ଗ ସାର୍ଟିଫିକେଟ ପରୀକ୍ଷା ଓ ମାଟ୍ରିକ୍ୟୁଲେସନ ପରୀକ୍ଷା ଉଭୟ ୧୯୨୨ ମସିହାରେ ଅନୁଷ୍ଠିତ ହୋଇଥିଲା ।

**କଲେଜ ଶିକ୍ଷା**

୧୯୨୨ ମସିହାରେ ବିହାର ଇଂଜିନିୟରିଂ ସ୍କୁଲରେ ବିଦ୍ୟାରମ୍ଭ । ମାତ୍ର ସେଠାରେ ସାହେବୀ ଶିକ୍ଷକଙ୍କ କ୍ଷମତାର ଅପବ୍ୟବହାର ଓ ମାତ୍ରାଧିକ ଅର୍ଥଦଣ୍ଡରେ ବୀତସ୍ପୃହ ହୋଇ ସେ ଇଂଜିନିୟରିଂ ପାଠକୁ ତ୍ୟାଗ କରି ବିହାର ନ୍ୟାସନାଲ କଲେଜ୍, ବାଙ୍କିପୁର (ବିହାର)ରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇ କଲେଜ ପାଠପଢ଼ା ଆରମ୍ଭ । ଏହି ସମୟରେ ଶ୍ରୀଧର ଦାସଙ୍କ ସହପାଠୀ ଥିଲେ ପ୍ରଥମ ନାଥ ବାନାର୍ଜୀ । ଉପର ଶ୍ରେଣୀରେ ଯେଉଁମାନେ ପଢୁଥିଲେ, ସେମାନଙ୍କ ମଧ୍ୟରୁ ଅନ୍ନଦା ଶଙ୍କର ରାୟ (ବି.ଏ. ଶ୍ରେଣୀର ଛାତ୍ର), ଶରତ ଚନ୍ଦ୍ର ମୁଖାର୍ଜୀ (ବି.ଏ. ଶ୍ରେଣୀର ଛାତ୍ର), କରୁଣାକର କର (ସଂସ୍କୃତରେ ଏମ୍.ଏ. କରୁଥିବା ଛାତ୍ର)ଙ୍କ ସହିତ ଶ୍ରୀଧର ଦାସଙ୍କ ଗଭୀର ଆତ୍ମୀୟତା ଥିଲା ।

(ପରୀକ୍ଷା ଉପରାନ୍ତ ଅବସର ସମୟ : ପ୍ରଥମ ବାର୍ଷିକ ପରୀକ୍ଷା ଶେଷ କରି ଗ୍ରୀଷ୍ମଛୁଟିରେ ସେ ଘରକୁ ଆସନ୍ତି, ପୁରୀକୁ । ଏଇଠାରେ ସେ ଦୁଇଜଣ ଆମେରିକୀୟ ମହିଳାଙ୍କୁ ଦୁଇମାସ ପାଇଁ ଓଡ଼ିଆ ଟ୍ୟୁସନ କରନ୍ତି । ପ୍ରଥମ ଦଶଦିନର ପଢ଼ା ବାବଦକୁ ସେ ସେତେବେଳେ ପାଇଥିଲେ ଟ. ୪୦/-; ଯାହାକି ଗୋଟିଏ ସବ୍‌ଡେପୁଟୀର ଦରମା ସଙ୍ଗେ ସମାନ ଥିଲା ।)

୧୯୨୪ ମସିହାରେ ଶ୍ରୀଧର ଦାସ ଆଇ.ଏ. ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୁଅନ୍ତି ।

| | |
|---|---|
| ବିବାହ ବନ୍ଧନ | ଆଇ.ଏ. ପାଶ୍ କରିବା ପରେ ବିବାହ ବନ୍ଧନରେ ସେ ଛନ୍ଦିହୋଇ ଯାଆନ୍ତି । ସ୍ତ୍ରୀଙ୍କ ନାମ ଇନ୍ଦୁମଣି ଦେବୀ । ଶ୍ୱଶୁରଘର ପୁରୀ ଜିଲ୍ଲାରେ । ସମୟ ୧୯୨୪ ମସିହା । |
| କର୍ମମୟ ଜୀବନର ଶୁଭାରମ୍ଭ | (ଆର୍ଥିକ ଅନଟନ ହେତୁ ସେ ଚାକିରି କରିବାକୁ ବାଧ୍ୟ ହୁଅନ୍ତି ସତ; ମାତ୍ର ତାଙ୍କ ମଧ୍ୟରେ ଥିବା ଅଧ୍ୟୟନଶୀଳତା ତାଙ୍କୁ ଶେଷ ଜୀବନ ପର୍ଯ୍ୟନ୍ତ ମୋହାବିଷ୍ଟ କରି ରଖେ ।) |

**କର୍ମମୟ ଜୀବନର ପ୍ରଥମ ପର୍ବ (୧୯୨୪-୧୯୨୮) :**

୧ - ବୀର ନରସିଂହପୁର ବିଶ୍ୱନାଥ ମି.ଇ. ସ୍କୁଲରେ ୯ ମାସ ପାଇଁ ଖାଲି ଥିବା ପ୍ରଧାନଶିକ୍ଷକ ଚାକିରିରେ ନିଯୁକ୍ତ ପାଆନ୍ତି । ଏହି ବିଦ୍ୟାଳୟଟି ଆଠଗଡ଼ର ରାଜା ବିଶ୍ୱନାଥ ଦେବବର୍ମାଙ୍କ ବଦାନ୍ୟତାରେ ନିର୍ମିତ ହୋଇଥିଲା । ଏଠାରେ ଶ୍ରୀଧର ଦାସଙ୍କ ଦରମା ମାସିକ ଟ. ୪୦/- ଥିଲା ।

୨ - ଏହାପରେ କାକଟପୁର ମାଇନର ସ୍କୁଲରେ ହେଡ୍‌ମାଷ୍ଟର ରୂପେ କାର୍ଯ୍ୟ କରନ୍ତି ।

**ଶିକ୍ଷା :** ୧ - ୧୯୨୭ ମସିହାରେ ସେ ଏଲ୍.ଟି. ପଢ଼ିବା ପାଇଁ ଦରଖାସ୍ତ କରନ୍ତି । ସେତେବେଳେ ଏହି ପାଠ ପଢ଼ିବା ପାଇଁ ଯଦିଓ ନ୍ୟୁନତମ ଯୋଗ୍ୟତା ଥିଲା ଆଇ.ଏ. ପାଶ୍; ତଥାପି ସେହି ପାଠକୁ ପଢ଼ିବା ପାଇଁ ବି.ଏ. ବା ଏମ୍.ଏ. ପିଲାମାନେ ଦରଖାସ୍ତ କରୁଥିବାରୁ ସେ ଏଲ୍.ଟି. ପଢ଼ିପାରନ୍ତି ନାହିଁ । ପରବର୍ଷକୁ ଅବଶ୍ୟ ସେହି ଏଲ୍.ଟି. ଉଠିଗଲା ଓ ତା' ସ୍ଥାନରେ ଡି.ଇଡି. ନାମକ ଏକ ନୂତନ ପାଠ ସ୍ଥାନ ପାଇଲା, ଯାହାକୁ ପଢ଼ିବା ପାଇଁ ନ୍ୟୁନତମ ଯୋଗ୍ୟତା ଥିଲା ବି.ଏ. । ତେଣୁ ଏଲ୍.ଟି. ପାଠ ପ୍ରତି ଥିବା ଆଗ୍ରହରେ ସବୁଦିନ ପାଇଁ ପୂର୍ଣ୍ଣଚ୍ଛେଦ ପଡ଼ିଯାଏ ।

୨ - ଇତିମଧ୍ୟରେ ଶ୍ରୀଧର ଦାସ ମାର୍ଚ୍ଚ, ୧୯୨୭ ଓ ସେପ୍ଟେମ୍ବର, ୧୯୨୮ ମସିହାରେ Half-yearly examination in the art of teaching for teachers of English subject ପରୀକ୍ଷା ଦେଇ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ତା ୨.୫.୧୯୨୮ ରିଖ ଠାରୁ ତା ୧୧.୫.୧୯୨୮ ରିଖ ପର୍ଯ୍ୟନ୍ତ ସ୍କାଉଟ୍ ଟ୍ରେନିଂ ନେଇଥିଲେ ।

୩ - ପୁନଶ୍ଚ ଏହା ମଧ୍ୟରେ ଘରୋଇ ଭାବରେ ବି.ଏ. ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରି ଚାକିରି କାଳରେ ଛୁଟି ନେବାର କଠିନତା ସମ୍ପର୍କରେ ସଚେତନ ପୂର୍ବକ ସେ ୧୯୨୮ ମସିହାରେ ସପ୍ଲିମେଣ୍ଟାରୀ ପରୀକ୍ଷା ମାଧ୍ୟମରେ ବି.ଏ. ପାଶ୍ କରନ୍ତି ।

(ବି.ଏ. ପାଶ୍ ପରେ ଆଉ ମାଇନର ସ୍କୁଲରେ ରହିବାକୁ ତାଙ୍କର ଇଚ୍ଛା ହୁଏନାହିଁ । ଅନ୍ୟପକ୍ଷରେ ସେ ସେତେବେଳେ କେତେକଙ୍କ ସହିତ ଅପ୍ରିୟ ହୋଇ ଉଠିଥିବାରୁ ସେହି କାକଟପୁର ଏମ୍.ଇ. ସ୍କୁଲ ଛାଡ଼ନ୍ତି ।)

## କର୍ମମୟ ଜୀବନର ଦ୍ୱିତୀୟ ପର୍ବ (୧୯୨୮-୧୯୩୦) :

୧ - ୧୯୨୮ ମସିହାରେ ସ୍ଥାନୀୟ ଜମିଦାର ଦାଶରଥି ପଟ୍ଟନାୟକଙ୍କ ପୃଷ୍ଠପୋଷକତାରେ ନୂଆ ହୋଇ ତିଆରି ହୋଇଥିବା ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବେ ନିଯୁକ୍ତି । ମାସିକ ଦରମା ଟ. ୭୦/- (ଯଦିଓ ଦରମା ବାବଦକୁ ସେ ସ୍ୱାକ୍ଷର କରୁଥିଲେ ମାସିକ ଟ. ୯୦/-) ।

**ଶିକ୍ଷା :** ୧- ୧୯୨୯ ମସିହାରେ ୯ ମାସ ପାଇଁ ଡି.ଇଡି. ଟ୍ରେନିଂ ପାଇଁ କଟକ ଟ୍ରେନିଂ କଲେଜ (ବର୍ତ୍ତମାନର ରାଧାନାଥ ଉଚ୍ଚତର ପ୍ରଶିକ୍ଷଣ ମହାବିଦ୍ୟାଳୟ [Radhanath I.A.S.E.]; କଟକ)ରେ ଅଧ୍ୟୟନ । ଅଧ୍ୟୟନ କାଳରେ ପୁଣିଥରେ ସ୍କାଉଟ ଟ୍ରେନିଂ (Re-Examination Training) ପ୍ରାପ୍ତ । ୧୯୩୦ ମସିହା, ଅପ୍ରେଲ ମାସରେ ଡି.ଇଡି. ପରୀକ୍ଷାରେ ଉତ୍ତୀର୍ଣ୍ଣ ।

୨ - ଶିକ୍ଷାର ପରିସମାପ୍ତି ପରେ ପୁନଶ୍ଚ ୧୯୩୦ ମସିହାରେ ଓଲସିଂହ ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ରୂପେ ନିଯୁକ୍ତି । ଏହି ସମୟକୁ ସ୍କୁଲରେ ଏକ ପ୍ରକାର ଅଶାନ୍ତ ବାତାବରଣ ଖେଳୁଥାଏ । ତେଣୁ ଅଶାନ୍ତ ବଳୟରୁ ଶାନ୍ତ ପରିବେଶକୁ ଯିବା ପାଇଁ ତାଙ୍କ ଭିତରେ ଥିବା ଅଦମ୍ୟ ଲାଳସା ଏଇଠି ତାଙ୍କ ଜୀବନରେ ପୁଣି ଗୋଟିଏ ମୋଡ଼ ସୃଷ୍ଟି କଲା ।

## କର୍ମମୟ ଜୀବନର ତୃତୀୟ ପର୍ବ (୧୯୩୦-୧୯୩୪) :

୧ - ୧୯୩୦ ମସିହାରେ ବଉଦ ଠାରେ ଥିବା "କିଙ୍ଗ୍ ଏଡୱାର୍ଡ ସପ୍ତମ ସ୍କୁଲ"ରେ ଟ୍ରେନିଂପ୍ରାପ୍ତ ଗ୍ରାଜୁଏଟ୍ ହେଡମାଷ୍ଟର ରୂପେ କାର୍ଯ୍ୟଭାର ଗ୍ରହଣ । ମାସିକ ବେତନ ଟ. ୮୦-୫-୧୨୦ । ରହିବା ପାଇଁ ଘର ଇତ୍ୟାଦି ମାଗଣା । ରାଜାଙ୍କ ଇଚ୍ଛାକୁ ପୂରଣ କରିବା ପାଇଁ ଏଇଠି ଶ୍ରୀଧର ଦାସ ନିଜ ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିବା ପାଇଁ ଅକ୍ଳାନ୍ତ ଚେଷ୍ଟା କରନ୍ତି । ସଫଳ ହୁଅନ୍ତି ମଧ୍ୟ । ଫଳରେ ବଉଦରେ ସେହି ସ୍କୁଲଟି King Edward VII High School ଭାବରେ ନିର୍ମିତ ହେଲା । ଏବେ ତାହା ତତ୍କାଳୀନ ରାଜାସାହେବଙ୍କ ପିତାଙ୍କ ନାମାନୁସାରେ ଯୋଗୀନ୍ଦ୍ରଦେବ ହାଇସ୍କୁଲ ହୋଇଅଛି ।

୨ - ରାଜା ଷ୍ଟେଟ୍‌ରେ ଶିକ୍ଷାର ବିସ୍ତାର ପାଇଁ ଶ୍ରୀଧର ଦାସଙ୍କୁ Education Officer ଭାବରେ ନିଯୁକ୍ତି ପ୍ରଦାନ କରନ୍ତି । ମାସିକ ବେତନ ଟ. ୧୦୦-୨୦୦, ଗସ୍ତଖର୍ଚ୍ଚ ମାସିକ ଟ. ୨୦/- ।

୩ - ଏହି ସମୟରେ ଶ୍ରୀଧର ଦାସ ରାଜବାଟୀରେ ରାଜାସାହେବଙ୍କ ପିତା ଯୋଗୀନ୍ଦ୍ରଦେବଙ୍କ ନାମାନୁସାରେ ଏକ ଲାଇବ୍ରେରୀ ନିର୍ମାଣ କରାଇଥିଲେ ।

୪ - ଏହି ସମୟରେ ଗୋପାଳ ଚନ୍ଦ୍ର ପ୍ରହରାଜ ନିଜର 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପାଇଁ ରାଜାସାହେବଙ୍କ ଦ୍ୱାରସ୍ଥ ହୋଇଥିବା ବେଳେ ଶ୍ରୀଧର ଦାସ ରାଜାସାହେବଙ୍କୁ କହି ଗ୍ରନ୍ଥର ପ୍ରକାଶନଜନିତ ବ୍ୟୟଭାରକୁ ରାଜାଙ୍କ ଦ୍ୱାରା ମଞ୍ଜୁର କରାଇ ଦେଇଥିଲେ ।

**ସନ୍ତାନ ଲାଭ :** ଏହି ବଉଦର ରହଣୀ କାଳରେ ଅର୍ଥାତ୍ ୧୯୩୧ ମସିହାରେ ପ୍ରଥମ ଝିଅ ବିଷ୍ଣୁପ୍ରିୟାର ଜନ୍ମ ଓ ୧୯୩୩ ମସିହାରେ ପ୍ରଥମ ପୁଅ ରାଧାକୃଷ୍ଣର ଜନ୍ମ । ଏହି ସମୟରେ ଶ୍ରୀଧର ଦାସ ଏମ୍.ଇଡି. ପଢ଼ିବାକୁ ଇଚ୍ଛା ପ୍ରକାଶ କରନ୍ତି । ରାଜ କର୍ମଚାରୀ ଓ ରାଜାସାହେବଙ୍କ ସହ ଏହି ସଂକ୍ରାନ୍ତରେ ମନୋମାଳିନ୍ୟ ସୃଷ୍ଟି ହୁଏ । ଏହା କ୍ରମେ ବିଭିନ୍ନ ଆନୁସଙ୍ଗିକ ଘଟଣାକୁ ପ୍ରଭାବିତ କରେ । ଫଳରେ ସେ ବାଧହୋଇ ଷ୍ଟେଟ୍‌ର ଏଜୁକେସନ ଅଫିସର ପଦବୀରୁ ଇସ୍ତଫା ପ୍ରଦାନ କରନ୍ତି ।

## କର୍ମମୟ ଜୀବନର ଚତୁର୍ଥ ପର୍ବ (୧୯୩୪-୧୯୩୫) :

ଏହି ସମୟର କାର୍ଯ୍ୟକୁ ଶ୍ରୀଧର ଦାସ ନିଜ ଜୀବନର ଭୁଲ ନିଷ୍ପତ୍ତି ବୋଲି ସ୍ୱୀକାର କରିଛନ୍ତି । ସେଥିପାଇଁ ଅନୁତାପ ମଧ୍ୟ କରିଛନ୍ତି । କାରଣ ବଉଦ ଷ୍ଟେଟ୍‌ର ଏଜୁକେସନ ଅଫିସର ପଦବୀରୁ ଇସ୍ତଫା ଦେଇ ସେ ପୁଣି ଓଳସିଂହ ହାଇସ୍କୁଲରେ ହେଡ୍‌ମାଷ୍ଟର ରୂପେ କାର୍ଯ୍ୟଭାର ଗ୍ରହଣ କରିଛନ୍ତି । ମାସିକ ଦରମା ଟ. ୧୨୦/-। ଏଠାରେ ମାତ୍ର ଏକବର୍ଷ କାର୍ଯ୍ୟ କରିବା ପରେ ସେ ଏହି ଚାକିରି ଛାଡ଼ିଲେ ।

## କର୍ମମୟ ଜୀବନର ପଞ୍ଚମ ପର୍ବ (୧୯୩୫-୧୯୪୨) :

**ସନ୍ତାନ ହାନୀ :** ୧୯୩୫ ମସିହାରେ ବାଣପୁର ହାଇସ୍କୁଲରେ ଶିକ୍ଷକତା, ମାସିକ ଦରମା ଟ. ୭୦/- । ଏହି ବାଣପୁରର ରହଣି କାଳରେ ପ୍ରଥମ ପୁତ୍ର ରାଧାକୃଷ୍ଣର ପ୍ରାଣହାନୀ ଘଟେ । ସହ-କର୍ମଚାରୀଙ୍କ ସହ ମନାନ୍ତର ମଧ୍ୟ ହୁଏ । ନିଜ ଆତ୍ମସମ୍ମାନର ଖାତିରିରେ ସେ ୧୯୪୨ ମସିହାରେ ବାଣପୁର ସ୍କୁଲ ତ୍ୟାଗ କରନ୍ତି । ଏହି ବାଣପୁରରେ ଚାକିରି କାଳ ଥିଲା ମାତ୍ର ୬ ବର୍ଷ ।

**ସନ୍ତାନ ଲାଭ :** ୧୯୩୬ ମସିହାରେ ଦ୍ୱିତୀୟ ପୁତ୍ର ଜଗନ୍ନାଥ ଦାସଙ୍କ ଜନ୍ମ ।

୧୯୩୯ ମସିହାରେ ତୃତୀୟ ପୁତ୍ର କୃଷ୍ଣ ପ୍ରସାଦ ଦାସଙ୍କ ଜନ୍ମ ।
୧୯୪୨ ମସିହାରେ ଚତୁର୍ଥ ପୁତ୍ର ରଘୁନାଥ ଦାସଙ୍କ ଜନ୍ମ ।

**ସ୍ୱ-ଅର୍ଜିତ ସମ୍ପତ୍ତି :** ଏହି ସମୟକୁ ଶ୍ରୀଧର ଦାସ ପ୍ରାୟ ୮/୧୦ ମାଣ ଜମି କିଣିଥିଲେ ।

**ଶିକ୍ଷା :** ଏହି ସମୟ ମଧ୍ୟରେ ସେ ଘରେ ପଢ଼ାପଢ଼ି କରି ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେବାପାଇଁ ପୂର୍ଣ୍ଣମାତ୍ରାରେ ପ୍ରସ୍ତୁତ ହୁଅନ୍ତି ଓ ଶେଷରେ ୧୯୪୨ ମସିହା, ନଭେମ୍ବର ମାସରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ଏମ୍.ଏ. ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି ।

**କର୍ମମୟ ଜୀବନର ଷଷ୍ଠ ପର୍ବ (୧୯୪୨-୧୯୪୮) :**

୧୯୪୨ ମସିହାରେ ବାଣପୁର ଛାଡ଼ିବା ପରେ ଶ୍ରୀଧର ଦାସ ବିଭିନ୍ନ ସ୍କୁଲରେ ଶିକ୍ଷକତା କରନ୍ତି । ଯେପରି :—

(୧) ଖଣ୍ଡମଉଦାର ହାଇସ୍କୁଲ, ସିଂହଭୂମି
(୨) ବହଡ଼ାଗୋଡ଼ାର ହାଇସ୍କୁଲ, ସିଂହଭୂମି
(୩) ହରିହରପୁର ଏକାଡେମୀ, କଟକ ଜିଲ୍ଲା
(୪) କୋରୁଆ ହାଇସ୍କୁଲ, କଟକ ଜିଲ୍ଲା
(୫) ଶ୍ରୀକୃଷ୍ଣ ଏକାଡେମୀ, ଜଗତ୍‌ସିଂହପୁର (୧୯୪୩-୧୯୪୮)

**ସ୍ୱ-ଅର୍ଜିତ ସମ୍ପତ୍ତି :** ୧୯୪୩ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ଜଗତ୍‌ସିଂହପୁରରେ ରହଣି କାଳରେ କିଛି ସମ୍ପତ୍ତି ଅର୍ଜନ କରିଥିଲେ ।

**କର୍ମମୟ ଜୀବନର ସପ୍ତମ ପର୍ବ (୧୯୪୮-୧୯୬୮) :**

୧୯୪୮ ମସିହାରେ P.S.C. ତରଫରୁ ମନୋନୀତ ହୋଇ ଶ୍ରୀଧର ଦାସ ରେଭେନ୍‌ସା ମହାବିଦ୍ୟାଳୟରେ ନିଯୁକ୍ତି ପାଆନ୍ତି । ମାତ୍ର ସରକାରୀ ଚାକିରି ଲୋଭକୁ ପ୍ରତ୍ୟାଖ୍ୟାନ କରି ସେ ସେତେବେଳେ ଉତ୍କଳ ଖ୍ରୀଷ୍ଟିଆନ କଲେଜ (ବର୍ତ୍ତମାନ ଖ୍ରୀଷ୍ଟ କଲେଜ)ରେ ଓଡ଼ିଆ ଅଧ୍ୟାପକ ରୂପେ ଯୋଗ ଦିଅନ୍ତି । ଏହି ୧୯୪୮ ମସିହାରେ ପ୍ରଥମ କରି ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅନର୍ସ କ୍ଲାସ୍ ଖୋଲା ହୋଇଥିଲା । ଉତ୍କଳ ଖ୍ରୀଷ୍ଟିଆନ କଲେଜରେ ତାଙ୍କର ଚାକିରି କାଳ ୧୯୪୮ ମସିହାରୁ ୧୯୬୮ ମସିହା, ୨୦ ବର୍ଷ ।

ଅବସରକାଳୀନ ଜୀବନ : ୧୯୭୮ ମସିହା ବେଳକୁ କ୍ରମଶଃ ଦୃଷ୍ଟିଶକ୍ତି କ୍ଷୀଣ ହୋଇଆସେ ଓ ୧୯୮୦ ମସିହା ବେଳକୁ ଦୃଷ୍ଟି ଶକ୍ତି ନଷ୍ଟ ହୋଇଯାଏ । ମାତ୍ର ଏହି ସମୟରେ ସେ ନିଜ ଆତ୍ମୀୟମାନଙ୍କ ସହାୟତାରେ ପଢ଼ାପଢ଼ି କାର୍ଯ୍ୟକୁ ଅବ୍ୟାହତ ରଖିଛନ୍ତି । ଏତଦ୍ ସହିତ ନିଜର ଲେଖାଲେଖି କାର୍ଯ୍ୟକୁ ମଧ୍ୟ ଜାରି ରଖିଛନ୍ତି । ବିଶେଷକରି ତାଙ୍କର ଆତ୍ମଜୀବନୀ "ସୁଅ ମୁହଁର ପତର" ଏହି ସମୟର ଏକ ସାର୍ଥକ କୃତି ।

ବେଶଭୂଷା : ଅତ୍ୟନ୍ତ ସାଧାରଣ, ଖଦଡ଼ର ଧଳା ପଞ୍ଜାବୀ ଓ ଧୋତି, ପଞ୍ଜାବୀ ଉପରେ ଏକ କଳାରଙ୍ଗର କୋଟ, ଆଖିରେ ଚଷମା ଏବଂ ପାଟିରେ ପାନ ।

ପ୍ରିୟ ପୁସ୍ତକ : ୧- ପୁରୀ ଜିଲ୍ଲା ସ୍କୁଲରେ ପାଠ ପଢୁଥିବା ବେଳେ ପ୍ରାଇଜ୍ ସ୍ୱରୂପ ପାଇଥିବା ବହି ଯେପରି : ରାଧାନାଥ ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳୀ, ଗଙ୍ଗାଧରଙ୍କ ପ୍ରଣୟ ବଲ୍ଲରୀ, ତପସ୍ୱିନୀ, ଉତ୍କଳ ଲକ୍ଷ୍ମୀ, ଚିନ୍ତାମଣି ମହାନ୍ତିଙ୍କ ବିକ୍ରମାଦିତ୍ୟ ପ୍ରଭୃତି ଓଡ଼ିଆ ବହି ।

୨- ଇଂରାଜୀ ପୁସ୍ତକ ଭାବରେ Lamb's Tales from Shakespeare; Miss Milford ଙ୍କର Our Village, ଲାଲବିହାରୀ ଦେଓଙ୍କର Bengal Peasant Life ଓ Folk Tales of Bengal.

୩. ଲାଇବ୍ରେରୀରେ ଥିବା ବହିରୁ Burke's Speeches on the Impleachment of Warren Hastings, R. Hagard ଙ୍କର 'She', Confession of a Thug, Tales from Indian Chivalry, Smile's Character ପ୍ରଭୃତି ।

ଜୀବନର ଅନ୍ୟତମ ଦିଗ : ହୋମିଓପ୍ୟାଥି ଚିକିତ୍ସା ପଦ୍ଧତିରେ ଗଭୀର ଜ୍ଞାନ ଓ ଆସ୍ଥା ।

ଜୀବନର ମଧୁମୟ ସ୍ମୃତି : ୧୯୨୧ ବେଳକୁ ମହାତ୍ମାଗାନ୍ଧୀ ଓଡ଼ିଶାକୁ ଆସିଥାନ୍ତି । ସାକ୍ଷୀଗୋପାଳରେ ସଭା ହେବ । ମହାତ୍ମାଙ୍କୁ ଦେଖିବା ପାଇଁ ସେ ଦୀର୍ଘ ୩୫ ମାଇଲ ବାଟ ଚାଲି ଚାଲି ଯାଇ ପହଞ୍ଚିଲେ

ସାକ୍ଷୀଗୋପାଳ ଠାରେ ଓ ମହାତ୍ମାଙ୍କୁ ଦେଖିଥିଲେ ଏବଂ ମୁଗ୍ଧ ଚିତ୍ତରେ ତାଙ୍କର ଭାଷଣ ଶୁଣିଥିଲେ ।

ଜୀବନର ଅତୃପ୍ତ ଇଚ୍ଛା : ୧- ଇଂଜିନିୟରିଂ ପାଠରେ ନାମ ଲେଖାଇଥିଲେ ମଧ୍ୟ ଶେଷରେ ସେ ପାଠ ଛାଡ଼ିଲେ, ଇଂଜିନିୟରଟିଏ ହୋଇପାରିଲେ ନାହିଁ ।

୨- କବି ହେବାର ବାସନା ରଖି କବିତା ମାଧ୍ୟମରେ ସାହିତ୍ୟ ଜଗତକୁ ପ୍ରବେଶ କରିଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ କବିଟିଏ ହୋଇପାରିଲେ ନାହିଁ ।

(ବୋଧହୁଏ ଶ୍ରୀଧର ଦାସଙ୍କର ଏହି ଦୁଇଟି ଅଦମ୍ୟ ଇଚ୍ଛାଶକ୍ତି ତାଙ୍କର ଯୋଗ୍ୟତମ ପୁତ୍ରମାନଙ୍କ ଠାରେ ପୁଣିଥରେ ଅଙ୍କୁରିତ ହୋଇଉଠିଲା । ପୁତ୍ରମାନେ ତାଙ୍କ ସ୍ୱପ୍ନକୁ ଚରିତାର୍ଥ କଲେ । ଆଜି ବଡ଼ପୁଅ ଜଗନ୍ନାଥ ପ୍ରସାଦ ଆନ୍ତର୍ଜାତିକ ସ୍ତରରେ ଜଣେ ଖ୍ୟାତିସମ୍ପନ୍ନ କବି ଓ ସାନପୁଅ ରଘୁନାଥ ପ୍ରସାଦ ଜଣେ ସ୍ୱନାମଧନ୍ୟ ସୁଦକ୍ଷ ତଥା ସଫଳ ଇଂଜିନିୟର ।)

ଜୀବନରେ ଦୁଃଖ : ସମସ୍ତଙ୍କର ମଙ୍ଗଳ କାମନା କରୁ କରୁ ମଧ୍ୟ ଅନେକଙ୍କ ଦ୍ୱାରା ପ୍ରତାରିତ ହୋଇଛନ୍ତି । ଏପରିକି ନିଜ ରକ୍ତର ଭାଇ ଗଙ୍ଗାଧର ମଧ୍ୟ ଜାଲ୍ କରି ସମସ୍ତ ପୈତୃକ ସମ୍ପତ୍ତିକୁ ନିଜ ନାମରେ କରାଇ ନେଇଛନ୍ତି । ପଟ୍ଟା-ପାଉତି-କାଗଜପତ୍ର ସବୁଥିରୁ ଜାଲ କରି ତାଙ୍କର ନାମକୁ ଉଠାଇ ଦିଆଯାଇଛି ।

ଜୀବନର ଭଲଗୁଣ : ସ୍ନେହୀ ମଣିଷଟିଏ । ସହଜରେ ଅନ୍ୟକୁ ବିଶ୍ୱାସ କରିଯାଆନ୍ତି । ଅତ୍ୟନ୍ତ ସତ୍ୟପ୍ରିୟ । ନିର୍ଭୀକ, ପରୋପକାରୀ, ଛାତ୍ରବତ୍ସଳ ତଥା କର୍ତ୍ତବ୍ୟ ସଚେତନ ମଣିଷଟିଏ ।

ଜୀବନର ଖରାପ ଗୁଣ : ଅତ୍ୟନ୍ତ କ୍ଷଣକୋପୀ ଓ ବଦରାଗୀ । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଆଗପଛ ନ ବିଚାରି ହଠାତ୍ କିଛି ଗୋଟାଏ କରି ପକାଇବା ତାଙ୍କର ଏକ ଅଭ୍ୟାସ । ସେଥିପାଇଁ ସେ ଅନେକ ସମୟରେ ଅନୁତାପ କରିଛନ୍ତି ମଧ୍ୟ ।

ଜୀବନରେ ଆସିଥିବା ଅନୁତାପର ସମୟ : ଦ୍ୱିତୀୟ ଥର ପାଇଁ ଓଲସିଂହ ଦାଶରଥି ହାଇସ୍କୁଲରେ ଯୋଗଦାନ । ସେ ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି– "ମୁଁ ଟିକିଏ ଅତି ମାତ୍ରାରେ ଭାବପ୍ରବଣ । ସାମାନ୍ୟ ଘଟଣାରେ ବିଚଳିତ ହୋଇ ଯାହା କିଛି ଗୋଟାଏ କରିପକାଏ । ପରିଣାମରେ କଷ୍ଟ ଭୋଗ କରିଥାଏ । ଅନେକ ଘଟଣାରେ କଚଡ଼ା ଖାଇ ମଧ୍ୟ ମୁଁ ମୋର ସେହି ପ୍ରକୃତି ଛାଡ଼ିପାରିନାହିଁ । ଏବେ ସେହି ବୃଦ୍ଧ ବୟସରେ ସୁଦ୍ଧା ମୁଁ ସେହି ପ୍ରକୃତିର ଫଳ ଭୋଗ କରୁଅଛି ।"

(ଭୁଲ ଉପରେ ଭୁଲ / ସୁଅ ମୁହଁର ପତର / ପୃ : ୧୮୦)

ପ୍ରିୟ ଶିକ୍ଷକ : ଚନ୍ଦ୍ରମୋହନ ମହାରଣା ।

ଜୀବନରେ ଲାଭ କରିଥିବା ଶ୍ରେଷ୍ଠ ବ୍ୟକ୍ତିତ୍ୱଙ୍କ ସହ ସମ୍ପର୍କ :

୧. ଗୋପବନ୍ଧୁ ଦାସ
୨. ଗୋଦାବରୀଶ ମିଶ୍ର
୩. ରାଜେନ୍ଦ୍ର ପ୍ରସାଦ
୪. ଠକ୍କର ବାପା (ଅମୃତଲାଲ ଭିଠଲ ଦାସ ଠକ୍କର) ୧୯୧୮-୧୯
୫. ଆନିବେସାନ୍ତଙ୍କ ଭାଷଣ ଶୁଣିଛନ୍ତି ।
୬. ସାର ଆଶୁତୋଷ ମୁଖାର୍ଜୀ (Tiger of Bengal)
୭. ଲାଲା ଲଜପତ ରାୟ (Lion of the Punjab) ୧୯୨୫-୨୬

ଜୀବନରେ ପାଇଥିବା ଶ୍ରେଷ୍ଠ ସମ୍ମାନ ଓ ପୁରସ୍କାର :

୧. ୧୯୬୮ ମସିହାରେ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଅବସରକାଳୀନ ବିଦାୟ ସମ୍ବର୍ଦ୍ଧନା ।

୨. ୧୯୭୨ ମସିହାରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ସମ୍ମାନ ।

୩. ୧୯୭୪ ମସିହାରେ ସୋଭିଏଟ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର ।

୪. ୧୯୭୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ମାନ ।

ଛାତ୍ର ମହଲରେ ତାଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ
ହେଉଥିବା ଏକ ପ୍ରତୀକାତ୍ମକ ବ୍ୟଞ୍ଜନା : ଚଳନ୍ତି ଜ୍ଞାନକୋଷ ।

କଟକର ଦେଉଳସାହି ପାଇଁ ଅବଦାନ

୧ - ରଘୁନାଥଜୀଉ ବିଦ୍ୟାପୀଠର ନିର୍ମାଣ କାଳ ୧୯୭୮ରୁ ୧୯୮୮ ମସିହା ପର୍ଯ୍ୟନ୍ତ ସେ ଥିଲେ ବିଦ୍ୟାଳୟ ପରିଚାଳନା ସମିତିର ସଭାପତି ।

୨ - ରଘୁନାଥଜୀଉ ବିଦ୍ୟାପୀଠ ପାଇଁ ପ୍ରସ୍ତୁତ ହୋଇଥିବା ସମ୍ବିଧାନର ସେ ଥିଲେ ଜଣେ ଅନ୍ୟତମ ପ୍ରଣେତା ।

୩ - ସ୍ୱ-ଅର୍ଜିତ ସମ୍ପତ୍ତିରୁ କିଛି ସ୍ମୃତି ପାଇଁ ସାହିକୁ ଦାନ କରିବା ଦ୍ୱାରା ସାହିର ଦୁର୍ଗାମଣ୍ଡପଟି ସେଠାରେ ନିର୍ମାଣ ହୋଇଅଛି ।

ଜୀବନର ଶ୍ରେଷ୍ଠ କୃତି : ସ୍ୱରଚିତ ବିଭିନ୍ନ ରଚନାବଳୀ ।

(ଅଧ୍ୟାପକ ଶ୍ରୀଧର ଦାସଙ୍କର ପୂର୍ଣ୍ଣ ରଚନାବଳୀର ଏକ ତାଲିକା ଏହି ପୁସ୍ତକର ଅନ୍ୟ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ପ୍ରଦତ୍ତ ରହିଛି ।)

ମୃତ୍ୟୁ ୧୯୮୮ ମସିହା ଅପ୍ରେଲ ମାସ ୨୪ ତାରିଖ ।

ଜୀବନ ସୀମା ୮୬ ବର୍ଷ ୬ ମାସ ୨୦ ଦିନ ।

ଅଧ୍ୟାପକ ଶ୍ରୀଧର ଦାସ ସାହିତ୍ୟର ବିଭିନ୍ନ ବିଭାଗରେ ସ୍ୱ ଲେଖନୀ ଚାଳନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ଯେପରି ଭାବରେ ସମୃଦ୍ଧ କରିଅଛନ୍ତି, ସେଥିପାଇଁ ସେ କାଳ କାଳ ପାଇଁ ସ୍ମରଣୀୟ ହୋଇ ରହିବେ ।

***

# ସ୍ୱପ୍ନ ଓ ସଂପର୍କର ମଣିଷ

ଅଧ୍ୟାପକ ଶ୍ରୀଧର ଦାସ ବିଗତ ଶତାବ୍ଦୀର ଜଣେ ପ୍ରବୁଦ୍ଧ ପୁରୁଷ । ତାଙ୍କର ସମୁଦାୟ ଜୀବନ ସୀମା ୮୬ ବର୍ଷ ୬ ମାସ ୨୦ ଦିନ; ମୋଟାମୋଟି ଭାବରେ ୮୭ ବର୍ଷ ବୋଲି ଅଭିହିତ କରାଯାଇପାରେ । ତାଙ୍କର ଆତ୍ମଜୀବନୀ 'ସୁଅ ମୁହଁର ପତର'କୁ ଅନୁଧ୍ୟାନ କଲେ ଜଣାଯାଇଥାଏ ଯେ, ବାଲ୍ୟକାଳରୁ ନିଜ ପାଇଁ ନିଜର ଗୋଟିଏ ପରିଚୟ ସୃଷ୍ଟି କରି ଆତ୍ମସମ୍ମାନର ସହ ବଞ୍ଚିବା ଉଦ୍ଦେଶ୍ୟରେ ତାଙ୍କ ଆଖିରେ ରହିଥିଲା କେବଳ ସ୍ୱପ୍ନ ଓ ହୃଦୟରେ ଥିଲା ସମ୍ପର୍କର ଆବେଗ । ତେଣୁ ସ୍ୱପ୍ନ ଓ ସମ୍ପର୍କର ସ୍ରୋତରେ ସେ କେବଳ ନିଜକୁ ଭସାଇ ଦେଇଛନ୍ତି । ଆଉ ସେହି ଭାସମାନ ଅବସ୍ଥାରେ ସେ କିନ୍ତୁ କେବେ ସତ୍ୟଠାରୁ ଦୂରେଇ ଯାଇନାହାନ୍ତି । ପ୍ରକାରାନ୍ତରେ କହିବାକୁ ଗଲେ ସେ କେତେବେଳେ ଅସତ୍ୟ ବିରୁଦ୍ଧରେ ନିଜର ସ୍ପଷ୍ଟ ମତକୁ ପ୍ରକାଶ କରିଛନ୍ତି ତ ପୁଣି କେତେବେଳେ ଅସତ୍ୟର ବାତାବରଣରୁ ନିଜକୁ ମୁକ୍ତ କରିବା ପାଇଁ ନିଜର ଗତିପଥକୁ ସେ ନିଜେ ବଦଳାଇ ଦେଇଛନ୍ତି । ମାତ୍ର ଅନ୍ୟାୟ ଆଗରେ ନିଜକୁ କେବେ ସମର୍ପି ଦେଇନାହାନ୍ତି । ଅଧିକନ୍ତୁ ବାଲ୍ୟକାଳରୁ ସେ ସତ୍ୟ ପ୍ରତି ନିଜର ନିର୍ଭୀକତା ପ୍ରକାଶ କରିଆସିଛନ୍ତି । ତାଙ୍କ ଜୀବନରୁ କେତୋଟି ଦୃଷ୍ଟାନ୍ତକୁ ଏହି ମର୍ମରେ ଉପସ୍ଥାପିତ କରାଯାଇପାରେ । ଆନୁଷ୍ଠାନିକ ଭାବେ ତାଙ୍କର ବିଦ୍ୟାରମ୍ଭର ପ୍ରାୟ ତିନି ଚାରିବର୍ଷ ପରେ ଯେତେବେଳେ ପାରମ୍ପରିକ ବିଧିରେ ତାଙ୍କର ବିଦ୍ୟାରମ୍ଭ ହେଲା, ସେତେବେଳେ ପଣ୍ଡିତ ମହାଶୟ କ'ଣ ପୂଜା କରିସାରି ତଳେ 'ସିଧୀରସ୍ତୁ' ବୋଲି ଲେଖି ତାଙ୍କୁ ତାହା ମଡ଼େଇବାକୁ କହିବାରୁ ସେ ତାହାକୁ ସଂଶୋଧନ କରିବା ଉଦ୍ଦେଶ୍ୟରେ ଲିଭାଇ ସେ ସ୍ଥାନରେ 'ସିଦ୍ଧି' ବୋଲି ଲେଖିଦେଲେ ଓ ସେହି କାରଣରୁ ତାଙ୍କୁ ଅନେକ ଗାଳି ଖାଇବାକୁ ହୋଇଥିଲା । ମାତ୍ର ଶିଶୁ ଅବସ୍ଥାରୁ ସତ୍ୟର ପ୍ରକାଶ ଦିଗରେ ତାଙ୍କର ସ୍ୱତଃସ୍ଫୂର୍ତ୍ତ ଆବେଗ ବାସ୍ତବରେ ଅତ୍ୟନ୍ତ ବିସ୍ମୟକର । ସେହିଭଳି ଆଉ ଗୋଟିଏ ଉଦାହରଣ ମଧ୍ୟ ଆମେ ସେହି ବାଲ୍ୟକାଳରୁ ନେଇପାରିବା । ଥରେ ନି.ପ୍ରା. ବିଦ୍ୟାଳୟରେ ସେ ବୃତ୍ତି ପରୀକ୍ଷାକୁ ଉତ୍ତୀର୍ଣ୍ଣ ହୋଇଥିଲେ । ପରୀକ୍ଷାର ଫଳ

ବାହାରିବା ଦିନ ବାପା ଆସି ଥଟାରେ ତାଙ୍କ ବୋଉ ଶ୍ରଦ୍ଧାମଣି ଦେବୀଙ୍କୁ କହିଲେ, "ପୁଅ ଗୁଣମଣି ପରୀକ୍ଷା ଦେଇଥିଲା ଯେ, ଫେଲ୍ ହୋଇଛି ।" ଏହା ଶୁଣି ଶିଶୁ ଶ୍ରୀଧର ଅତ୍ୟନ୍ତ ନିର୍ଭୀକ ଭାବରେ ବାପାଙ୍କୁ କହିଥିଲେ ଯେ, "ପନ୍ଦର କୋଡ଼ିଏ ଜଣ ପରୀକ୍ଷା ଦେଇଥିଲେ । ମୋଟେ ତିନି କି ଚାରିଜଣ ବୃତ୍ତି ପାଇବେ; ଆଉ ସମସ୍ତେ ଫେଲ୍ । ମୁଁ ଫେଲ୍ ହୋଇଗଲି ବୋଲି କଅଣ ହୋଇଗଲା ?" ନିଜ ଭିତରେ ସତ୍ୟ ପ୍ରତି ପ୍ରଚଣ୍ଡ ସ୍ୱାଭିମାନ ନଥିଲେ କେହି କେବେ ଏପରି କଥା କହିପାରିବେ ନାହିଁ ।

ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟକାଳରୁ ତାଙ୍କ ସତ୍ ସ୍ୱଭାବର ଯେଉଁ ପରିଚୟ ମିଳିଥିଲା, ପରବର୍ତ୍ତୀ କାଳର ଦାରୁଣ ଜୀବନ ସଂଗ୍ରାମ କାଳରେ ତାହାହିଁ ଯେପରି ତାଙ୍କର ପାଥେୟ ହୋଇଉଠିଥିଲା । ପ୍ରାଥମିକ ସ୍ତରରେ ଅବଶ୍ୟ ତାଙ୍କର ପିତା ଶ୍ୟାମଚରଣ ନିଜର ଆର୍ଥିକ ଅନଟନ ହେତୁ ପୁତ୍ରର ଉ.ପ୍ରା. ପାଶ୍ ପରେ ନି.ପ୍ରା. ଶ୍ରେଣୀରେ ତା'ର ଶିକ୍ଷକତା କଥା ଭାବିଥିଲେ । ମାତ୍ର ଉଚ୍ଚଶିକ୍ଷା ପ୍ରତି ଥିବା ତାଙ୍କର ମାତ୍ରାଧିକ ଆଗ୍ରହ ନିକଟରେ ନିଜର ସାମାନ୍ୟ ସ୍ୱାର୍ଥ-ଚିନ୍ତା ପରାସ୍ତ ସ୍ୱୀକାର କଲା । ସେ ବୃତ୍ତି ପାଇ କାକଟପୁରର ମଧ୍ୟ ଭର୍ଣ୍ଣାକୁଲାର ସ୍କୁଲରେ ପାଠ ପଢ଼ିଲେ । ପରେ ପୁରୀ ଜିଲ୍ଲା ସ୍କୁଲରେ ବିଦ୍ୟାଧ୍ୟୟନ କଲେ । ଏହି ସମୟରେ ଶିକ୍ଷାର ତୁଳନାତ୍ମକ ଦିଗଟିକୁ ମାପିମା ପାଇଁ ସତେ ଯେପରି ସେ ମଝିରେ ମଝିରେ ଦୌଡ଼ି ଯାଇଥିଲେ ନିକଟସ୍ଥ ସତ୍ୟବାଦୀ ବନବିଦ୍ୟାଳୟରେ ପାଠ ପଢୁଥିବା ନିଜର ସାଙ୍ଗସାଥୀମାନଙ୍କ ନିକଟକୁ । ଏହି ମର୍ମରେ ସେ ଉତ୍କଳମଣି ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହରଙ୍କ ସାନିଧ ମଧ୍ୟ ଲାଭ କରିବାର ସୌଭାଗ୍ୟଟିକୁ ପ୍ରାପ୍ତ କରିଥିଲେ । ପରବର୍ତ୍ତୀ କାଳରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କ୍ରମେ ବିହାର ଇଂଜିନିୟରିଂ ସ୍କୁଲରେ ପାଠ ପଢ଼ିବା ପାଇଁ ଯୋଗ ଦିଅନ୍ତି । ମାତ୍ର ଶିକ୍ଷକଙ୍କର ଶାସକୀୟ ଉପଦ୍ରବରେ ସେ କ୍ରମଶଃ ଅତିଷ୍ଠ ହୋଇ ସେ ସେହି ସ୍କୁଲକୁ ତ୍ୟାଗ କରନ୍ତି ପଛେ, ଶିକ୍ଷକଙ୍କର ଅନ୍ୟାୟୋଚିତ ଆଚରଣକୁ ମଥାପାତି ସ୍ୱୀକାର କରନ୍ତି ନାହିଁ । ପରବର୍ତ୍ତୀ କାଳରେ ସେ ବି.ଏନ୍. କଲେଜରୁ ଆଇ.ଏ. ପାଶ୍ କରନ୍ତି । ଏହାପରେ ଅବଶ୍ୟ ସେ ନିଜର ଦାୟିତ୍ୱବୋଧ ସମ୍ପର୍କରେ ସଚେତନ ହୋଇ ପିତାଙ୍କର ଆଦେଶରେ ଶିକ୍ଷକତାର ଜୀବନ ଆରମ୍ଭ କରିଥିଲେ । ଶିକ୍ଷକ ପିତାଙ୍କ ରକ୍ତ ତାଙ୍କ ଧମନୀରେ ପ୍ରବାହିତ ହେଉଥିଲା । ତେଣୁ ସେ ଶିକ୍ଷକତା କରୁଥିଲେ ମଧ୍ୟ ଉଚ୍ଚଶିକ୍ଷା ପ୍ରତି ନିଜର ଆଗ୍ରହକୁ କେବେ ଅବଦମିତ କରି ରଖିନଥିଲେ । ଅଧ୍ୟାପନା ସହିତ ଏକାନ୍ତ ଭାବରେ ଅଧ୍ୟୟନ ପ୍ରତି ତାଙ୍କର ମନୋନିବେଶ ତାଙ୍କୁ ଶେଷରେ ଓଡ଼ିଆ ଭାଷା ସାହିତ୍ୟରେ ସର୍ବୋଚ୍ଚ ଡିଗ୍ରୀ ଏମ୍.ଏ. ଉପାଧି ପ୍ରଦାନ କରିଥିଲା । ୧୯୨୪ ମସିହାରେ ଗୋଟିଏ ମାଇନର ସ୍କୁଲର ଶିକ୍ଷକତା କରୁଥିବା ଶିକ୍ଷକ ଶ୍ରୀଧର ନିଜର ବୃତ୍ତିଗତ ଜୀବନର ଶେଷ ପର୍ଯ୍ୟାୟରେ ଖ୍ରୀଷ୍ଟ

ମହାବିଦ୍ୟାଳୟରୁ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଜଣେ ପ୍ରଜ୍ଞାପୁରୁଷ ତଥା ଜଣେ ସ୍ନେହୀ ଅଧ୍ୟାପକ ଭାବରେ ୧୯୬୮ ମସିହାରେ ଅବସର ଗ୍ରହଣ କଲେ ।

ଅବସର ପରବର୍ତ୍ତୀ ଜୀବନରେ ସେ କଟକର ଦେଉଳସାହି ସ୍ଥିତ ନିଜ ବାସଭବନରେ ଏକାନ୍ତ ଭାବରେ ଜ୍ଞାନ-ତପସ୍ୱୀ ସମ ସାରସ୍ୱତ ସାଧନାରେ ମଗ୍ନ ରହିଗଲେ । ନିଜ ଜୀବନରେ ସେ ପ୍ରାୟ ୧୩୦ ଖଣ୍ଡ ପୁସ୍ତକ ପ୍ରଣୟନ କରିଥିଲେ । ତାଙ୍କ ସାରସ୍ୱତ ସୃଷ୍ଟିର ଉଦ୍‌ଭାସନରେ ସେ ଯେତିକି ଉଜ୍ଜ୍ୱଳିତ ନୁହନ୍ତି, ଜଣେ ବୈୟାକରଣ ଭାବରେ ସେ ତତୋଽଧିକ ଭାବରେ ଖ୍ୟାତି ସମ୍ପନ୍ନ ଓ ଦେଦୀପ୍ୟମାନ । ଓଡ଼ିଆ ସାହିତ୍ୟର ଛାତ୍ର, ଅଧ୍ୟାପକ ଓ ଓଡ଼ିଆ ଭାଷା ସାହିତ୍ୟକୁ ଶ୍ରଦ୍ଧା କରୁଥିବା ପ୍ରତ୍ୟେକ ବ୍ୟକ୍ତି ବିଶେଷ ମାତ୍ରେ ହିଁ 'ସର୍ବସାର ବ୍ୟାକରଣ'କୁ ଜାଣନ୍ତି ଓ ସେହି ମର୍ମରେ ପଣ୍ଡିତ ଶ୍ରୀଧର ଦାସଙ୍କୁ ମଧ୍ୟ ଚିହ୍ନନ୍ତି । ବିଶେଷକରି ଶିଶୁ ଓ କିଶୋରମାନେ, ଯେଉଁମାନେ ନିଜର ଅଧ୍ୟୟନଶୀଳ ମନନ ନେଇ ଓଡ଼ିଆ ଭାଷା ମାଧ୍ୟମରେ ବିଶ୍ୱ ସାହିତ୍ୟ ସହିତ ସମ୍ପର୍କ ରକ୍ଷା କରିବାକୁ ପ୍ରୟାସ ଜାରି ରଖନ୍ତି, ସେମାନେ ମଧ୍ୟ ଶ୍ରୀଧର ଦାସଙ୍କୁ ଚିହ୍ନନ୍ତି । କାରଣ ଶିଶୁ ଓ କିଶୋରମାନଙ୍କ ଜିଜ୍ଞାସାକୁ ଚରିତାର୍ଥ କରିବା ପାଇଁ ସେ ଯେପରି ବିଶ୍ୱର ସମସ୍ତ କ୍ଲାସିକ୍ ସାହିତ୍ୟକୁ ଓଡ଼ିଆ ଭାଷାରେ ସରଳ ଓ ବୋଧଗମ୍ୟ ରୀତିରେ ଅନୁବାଦ କରିଛନ୍ତି; ତାହା ବାସ୍ତବରେ ଅନ୍ୟତ୍ର ବିରଳ । ବଞ୍ଚିଥିବା ବେଳେ ତାଙ୍କୁ ଲୋକେ 'ଚଳନ୍ତି ଜ୍ଞାନକୋଷ' ବୋଲି ସମ୍ବୋଧନ କରୁଥିଲେ; ଆଜି ତାଙ୍କର ଅନୁପସ୍ଥିତିରେ ମଧ୍ୟ ତାଙ୍କର 'ନବ ଅଭିଧାନ' ଭାଷାକୋଷ ତାଙ୍କୁ ଚିରସ୍ମରଣୀୟ କରି ରଖିଛି । ତାଙ୍କର ଆତ୍ମଜୀବନୀ ପାଠ କଲେ ତାଙ୍କ ସମ୍ବନ୍ଧରେ ଅନେକ କଥା ଜାଣିବାକୁ ମିଳିବା ସଙ୍ଗେ ସଙ୍ଗେ ବଞ୍ଚିବାକୁ ହେଲେ ଆଖିରେ ଅସରନ୍ତି ସ୍ୱପ୍ନ ନେଇ ସତ୍ୟ ମାଧ୍ୟମରେ କିପରି ସମ୍ପର୍କର ସେତୁକୁ ଅତିକ୍ରମ କରିବାକୁ ହୋଇଥାଏ, ତାହାକୁ ବେଶ ପ୍ରାଞ୍ଜଳ ଭାବରେ ବୁଝିହୁଏ । ବାପୁଜୀ ସତ୍ୟକୁ ନେଇ ନିଜ ଜୀବନରେ ଅନେକ ପରୀକ୍ଷା କରିଥିଲେ; ମାତ୍ର ଅଧ୍ୟାପକ ଶ୍ରୀଧର ଦାସ ସତ୍ୟ ମାଧ୍ୟମରେ ନିଜର ସ୍ୱପ୍ନକୁ ସାକାର କରିବାର ଦୁର୍ବାର କାମନା କେବଳ ମନ ମଧ୍ୟରେ ପୋଷଣ କରିନାହାନ୍ତି, ସେହି ସ୍ୱପ୍ନକୁ ସତ୍ୟର ସହାୟତାରେ ସାକାର କରିଛନ୍ତି ମଧ୍ୟ । କେବଳ ସେତିକି ନୁହେଁ, ଅନ୍ତରଙ୍ଗ ବନ୍ଧୁ ଓ ସ୍ନେହର ଛାତ୍ରମାନଙ୍କ ଆଖିରେ ନିଜର ସ୍ଥିତାବସ୍ଥାରୁ ଆହୁରି ଉନ୍ନତତର ମାର୍ଗରେ ଗତି କରିବା ପାଇଁ ଅନେକ ସ୍ୱପ୍ନ ମଧ୍ୟ ଭରି ଦେଇଛନ୍ତି ଏବଂ ନିଜର ସୃଜନଶୀଳ ସାରସ୍ୱତ ସୃଷ୍ଟି ମାଧ୍ୟମରେ ନିଜର ମନନ ଜଗତରେ ଅନ୍ୟକୁ ପହଞ୍ଚାଇବା ପାଇଁ ସୀମାହୀନ ସମ୍ପର୍କର ସେତୁ ନିର୍ମାଣ କରିଛନ୍ତି । ଆଜି ସେ ନିଜ କର୍ମ ଓ କୃତି ମାଧ୍ୟମରେ ଅମୃତତ୍ୱ ଲାଭ କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।



# ପରିଶିଷ୍ଟ

## (କ) ଶ୍ରୀଧର ଦାସଙ୍କ ସାରସ୍ୱତ ରଚନାବଳୀ

କ୍ର. ସଂ.      ପ୍ରକାଶିତ ଗ୍ରନ୍ଥ

### ଅଭିଧାନ :

୧. ନବ ଅଭିଧାନ (ଓଡ଼ିଆ-ଓଡ଼ିଆ-ଇଂରାଜୀ) ୧୯୬୭ ଦ୍ୱିତୀୟ ସଂସ୍କରଣ
୨. Student's English Oriya Dictionary
୩. ବିବିଧ କୋଷ (ଅନ୍ୟ ଲେଖକଙ୍କ ସାହାଯ୍ୟରେ)

### ବ୍ୟାକରଣ :

୧. ଲଘୁ ବ୍ୟାକରଣ
୨. ସଂସ୍କୃତ ବ୍ୟାକରଣ (ଅନ୍ୟ ଲେଖକଙ୍କ ସହାୟତାରେ)
୩. ମଧ୍ୟ ବ୍ୟାକରଣ (ଅନ୍ୟ ଲେଖକଙ୍କ ସହାୟତାରେ)
୪. ସଂସ୍କୃତ ବ୍ୟାକରଣ ଓ ରଚନା (ଅନ୍ୟ ଲେଖକଙ୍କ ସହାୟତାରେ)
୫. ସର୍ବସାର ବ୍ୟାକରଣ (ପ୍ରଥମ ସଂସ୍କରଣ-୧୯୪୩)
୬. ସରଳ ଓଡ଼ିଆ ବ୍ୟାକରଣ (ଅନ୍ୟଜଣଙ୍କ ସାହାଯ୍ୟରେ)
୭. ମୌଳିକ ଲଘୁ ବ୍ୟାକରଣ ଓ ରଚନା (ଅନ୍ୟ ଲେଖକଙ୍କ ସହାୟତାରେ)
୮. ମୌଳିକ ମଧ୍ୟ ବ୍ୟାକରଣ ଓ ରଚନା (ଅନ୍ୟ ଲେଖକଙ୍କ ସହାୟତାରେ)
୯. ସରଳ ସଂସ୍କୃତ ବ୍ୟାକରଣ
୧୦. ମଧ୍ୟ ଓଡ଼ିଆ ବ୍ୟାକରଣ (ପ୍ରଥମ ଭାଗ)
୧୧. ମଧ୍ୟ ଓଡ଼ିଆ ବ୍ୟାକରଣ (ଦ୍ୱିତୀୟ ଭାଗ)

### ଅନ୍ୟାନ୍ୟ ପାଠ୍ୟ ପୁସ୍ତକ :

୧. ମନୋହର ପାଠ (ପ୍ରଥମ ଭାଗ/ମଞ୍ଜୁରୀ ପ୍ରାପ୍ତ)
୨. ମନୋହର ପାଠ (ଦ୍ୱିତୀୟ ଭାଗ/ମଞ୍ଜୁରୀ ପ୍ରାପ୍ତ)
୩. ପାଠ୍ୟ ପ୍ରଦୀପ (ତୃତୀୟ ଭାଗ/ମଞ୍ଜୁରୀ ପ୍ରାପ୍ତ ହୋଇନଥିଲା)

୪. ପାଠ୍ୟ ପ୍ରଦୀପ (ଚତୁର୍ଥ ଭାଗ/ମଞ୍ଜୁରୀ ପ୍ରାପ୍ତ ହୋଇନଥିଲା)
୫. କଥାମାଳା (ଅନ୍ୟ ଦୁଇଜଣଙ୍କ ସହାୟତାରେ)
୬. କଥା ସୁମନ (ପ୍ରଥମ ଭାଗ/ମଞ୍ଜୁରୀ ପ୍ରାପ୍ତ)
୭. କଥା ସୁମନ (ଦ୍ୱିତୀୟ ଭାଗ/ମଞ୍ଜୁରୀ ପ୍ରାପ୍ତ)
୮. ଆମ ଦେଶର ଇତିହାସ ଗପ (ପ୍ରଥମ ଭାଗ)
୯. ଆମ ଦେଶର ଇତିହାସ ଗପ (ଦ୍ୱିତୀୟ ଭାଗ)
୧୦. ମଞ୍ଜୁଷା (ଅଷ୍ଟମ ଶ୍ରେଣୀ ପାଇଁ/ମଞ୍ଜୁରୀ ପ୍ରାପ୍ତ)
୧୧. ଜୀବନୀ ବର୍ତ୍ତିକା (ଅଷ୍ଟମ ଶ୍ରେଣୀ ପାଇଁ)
୧୨. ପଞ୍ଚ ପ୍ରଦୀପ (ମଞ୍ଜୁରୀ ପ୍ରାପ୍ତ)
୧୩. ଅଳଙ୍କାର ମଞ୍ଜରୀ

## ପାଠ୍ୟ-ପୁସ୍ତକ ବିଷୟକ :

୧. ସାହିତ୍ୟ ମୁକୁର (ପ୍ରଥମ ଭାଗ)
୨. ସାହିତ୍ୟ ମୁକୁର (ଦ୍ୱିତୀୟ ଭାଗ)
୩. ପାଠ କଳିକା (ପ୍ରଥମ ଭାଗ/ଅନ୍ୟ ଲେଖକଙ୍କ ସହାୟତାରେ)
୪. ପାଠ କଳିକା (ଦ୍ୱିତୀୟ ଭାଗ/ଅନ୍ୟ ଲେଖକଙ୍କ ସହାୟତାରେ)
୫. ପାଠ କୁସୁମ (ଅନ୍ୟମାନଙ୍କ ସହାୟତାରେ)
୬. ନୂତନ ସାହିତ୍ୟ ସଂଗ୍ରହ (ଅଷ୍ଟମ ଶ୍ରେଣୀ ପାଇଁ ମଞ୍ଜୁରୀ ପ୍ରାପ୍ତ/ଅନ୍ୟ ଲେଖକଙ୍କ ସହାୟତାରେ)
୭. Tales of Utkal (ମଞ୍ଜୁରୀ ପ୍ରାପ୍ତ ନୁହେଁ)
୮. ନବ ଇତିହାସ (ପ୍ରଥମ ଭାଗ)
୯. ନବ ଇତିହାସ (ଦ୍ୱିତୀୟ ଭାଗ)
୧୦. ନବ ଭୂଗୋଳ (ପ୍ରଥମ ଭାଗ)
୧୧. ନବ ଭୂଗୋଳ (ଦ୍ୱିତୀୟ ଭାଗ)

## ଅନୁବାଦ :

୧. ପୃଥିବୀ ପାଇଁ ଜଳ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୨. ଶାନ୍ତି ପଥରେ ବୀର ସୈନିକ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)

୩. ଜର୍ଜ୍ ଏବଂ ଏଣ୍ଟିଙ୍ଗ ହାଉସ୍ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୪. ମାର୍କିନ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସଂପ୍ରଦାୟ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୫. ଭିଏତନାମ ଯୁଦ୍ଧ କାହିଁକି ? (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୬. ଭିଏତ୍ କଙ୍ଗ (U.S.A. Information Service ଆନୁକୂଲ୍ୟରେ ପ୍ରକାଶିତ)
୭. ଶିବାନୀ ପଲ୍ଲୀର କଳା ଚିତାବାଘ
୮. ବୃକ୍ଷ ଜଗତ (N.B.T. India, New Delhi ଆନୁକୂଲ୍ୟରେ ପ୍ରକାଶିତ)
୯. ଆଲିବାବା (N.B.T. India, New Delhi ଆନୁକୂଲ୍ୟରେ ପ୍ରକାଶିତ)
୧୦. ଦିବ୍ୟଚକ୍ଷୁ (N.B.T. India, New Delhi ଆନୁକୂଲ୍ୟରେ ପ୍ରକାଶିତ)
୧୧. ଭାରତର ଅର୍ଥନୈତିକ ଇତିହାସ (Indian Council of Historical Research ଆନୁକୂଲ୍ୟରେ ପ୍ରକାଶିତ)
୧୨. ରବିନ୍ ହୁଡ୍
୧୩. ବିଚିତ୍ର କାହାଣୀ
୧୪. ଲିଓ ଟଲଷ୍ଟୟଙ୍କ ଗଳ୍ପମାଳା
୧୫. ଅଲିଭର ଟ୍ୱିଷ୍ଟ (ଚାର୍ଲସ ଡିକେନ୍ସ) - ୧୯୭୨
୧୬. ଗଲିଭରର ଭ୍ରମଣ କାହାଣୀ (ଏଚ୍.ଜି.ୱେଲସଙ୍କ Gauliver's Travel
୧୭. ମୃଚ୍ଛକଟିକ ଓ ମୁଦ୍ରା ରାକ୍ଷସ (ନୂତନ ସଂସ୍କରଣ) - ୧୯୮୦
୧୮. ଅଶୀ ଦିନରେ ପୃଥିବୀ ପରିକ୍ରମଣ (ଜୁଲସ ଭର୍ଣ୍ଣେଙ୍କର Around the World in Eighty Days.)
୧୯. ବିଚିତ୍ର ତାବିଜ (ସାର ୱାଲଟରେ ସ୍କଟଙ୍କର The Talisman) - ୧୯୭୦
୨୦. ଶେକ୍ସପିୟର କାହାଣୀ - ପ୍ରଥମ ଭାଗ - ୧୯୭୦
୨୧. ଶେକ୍ସପିୟର କାହାଣୀ - ଦ୍ୱିତୀୟ ଭାଗ - ୧୯୭୦
୨୨. ଶେକ୍ସପିୟର କାହାଣୀ - ତୃତୀୟ ଭାଗ
୨୩. ଗ୍ରୀସ୍ ଦେଶର ଉପକଥା
୨୪. ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ୍ ଭ୍ରମଣ (ଜୁଲସ ଭର୍ଣ୍ଣେଙ୍କର Twenty Thousand League under the sea.)
୨୫. ଟମ ସଏର (ମାର୍କ ଟୁଇନଙ୍କର Tom Sawyer)

୨୬. ଟଲଷ୍ଟୟ କାହାଣୀ (ପ୍ରଥମ ଭାଗ) - ୧୯୭୧
୨୭. ଟଲଷ୍ଟୟ କାହାଣୀ (ଦ୍ୱିତୀୟ ଭାଗ)
୨୮. ଟଲଷ୍ଟୟ କାହାଣୀ (ତୃତୀୟ ଭାଗ)
୨୯. ରିପ ଭ୍ୟାନ୍ ଉଇଙ୍କିଲ୍-(ୱାସିଂଟନ ଇରିଭିଙ୍ଗଙ୍କର Rip Van Winkle) - ୧୯୭୨
୩୦. ଗ୍ରୀସ୍ ଦେଶର ପୁରାଣ କାହାଣୀ - ୧୯୭୫
୩୧. ଓଏକଫିଲଡ଼ର ଭାଇକାର - (ଏଲିଭର ଗୋଲଡ୍ ସ୍ମିଥଙ୍କର Vicar of Wakefield) ପୁନଃମୁଦ୍ରଣ - ୧୯୮୦
୩୨. ଗୃହୀ ଓ ସନ୍ନ୍ୟାସୀ (ଚାର୍ଲସ ରିଡ୍‌ଙ୍କର The Claister and the Health.) - ୧୯୭୫
୩୩. ଚେକଭ କାହାଣୀ - ୧୯୭୧
୩୪. ଆଇ ଭାନ ହୋ - (ୱାଲଟର ସ୍କଟ)
୩୫. ଚନ୍ଦ୍ରକାନ୍ତ ମଣି
୩୬. ରତ୍ନଦ୍ୱୀପ - (ଆର୍.ଏଲ୍.ଷ୍ଟିଭେନ୍‌ସନଙ୍କ Treasure Island) - ୧୯୭୧
୩୭. ଡେଭିଡ କପରଫିଲ୍ଡ
୩୮. ଟମକକାଙ୍କ କେବିନ - (ସାମୁଏଲ ହାରିଏଟ୍ ବିଚରେଷ୍ଟୋଙ୍କ Uncle Tom's Cabin) - ୧୯୭୨
୩୯. ହୋମର କାହାଣୀ (ପୁନଃମୁଦ୍ରଣ) - ୧୯୭୭
୪୦. ଗର୍କୀ କାହାଣୀ - ପ୍ରଥମ ଭାଗ - ୧୯୭୨
୪୧. ଗର୍କୀ କାହାଣୀ - ଦ୍ୱିତୀୟ ଭାଗ - ୧୯୮୧
୪୨. ମୋ ପାସାଁ କାହାଣୀ - ପ୍ରଥମ ଭାଗ - ୧୯୭୭
୪୩. ମୋ ପାସାଁ କାହାଣୀ - ଦ୍ୱିତୀୟ ଭାଗ
୪୪. ମୋ ପାସାଁ କାହାଣୀ - ତୃତୀୟ ଭାଗ
୪୫. ମୋ ପାସାଁ କାହାଣୀ - ଚତୁର୍ଥ ଭାଗ
୪୬. ଇଶପ୍ କାହାଣୀ
୪୭. ହିତ କଥା
୪୮. ରାମାୟଣ କାହାଣୀ (ପୁନଃମୁଦ୍ରଣ) ୧୯୭୭
୪୯. ମହାଭାରତ କାହାଣୀ - ୧୯୭୪
୫୦. ଟାଇମ ମେସିନ୍ - (ଏଚ୍.ଜି.ୱେଲ) - ୧୯୭୨
୫୧. ଶ୍ରୀ (ସାର ଏଚ୍.ରାଇଡର ହାଗାର୍ଡଙ୍କର She) - ୧୯୭୩

୫୨. ଅହମିକା ଓ ଭ୍ରାନ୍ତି (ଜନ ଅଷ୍ଟିନଙ୍କର Pride and Prejudice) - ୧୯୭୩)
୫୩. ଜାତକ କାହାଣୀ - ପ୍ରଥମ ଭାଗ
୫୪. ଜାତକ କାହାଣୀ - ଦ୍ୱିତୀୟ ଭାଗ
୫୫. ଜାତକ କାହାଣୀ - ତୃତୀୟ ଭାଗ
୫୬. ଜାତକ କାହାଣୀ - ଚତୁର୍ଥ ଭାଗ - ୧୯୮୩
୫୭. ମିତ୍ରଲାଭ - ପ୍ରଥମାର୍ଦ୍ଧ
୫୮. ମିତ୍ରଲାଭ - ଦ୍ୱିତୀୟାର୍ଦ୍ଧ
୫୯. ସୁହୃଦ ଭେଦ
୬୦. ମିତ୍ର ଭେଦ - ପ୍ରଥମାର୍ଦ୍ଧ - ୧୯୭୨
୬୧. ମିତ୍ର ଭେଦ - ଦ୍ୱିତୀୟାର୍ଦ୍ଧ - ୧୯୭୨
୬୨. ମିତ୍ର ପ୍ରାପ୍ତି
୬୩. କାକଲୁକୀୟ
୬୪. ଲବ୍ଧ ପ୍ରଣାଶ
୬୫. ମାଳବିକା ଅଗ୍ନିମିତ୍ର ଓ ଉର୍ବଶୀ - ୧୯୮୦
୬୬. ବେତାଳ ପଞ୍ଚବିଂଶତି
୬୭. ବାଉଣ୍ଟି ଜାହାଜରେ ବିଦ୍ରୋହ (ଜନ୍ ବାରେଙ୍କର Mutiny on Bounty) - ୧୯୭୭
୬୮. ରୁଷିଆ ଦେଶର ଲୋକ କାହାଣୀ
୬୯. ଆମ ଓଡ଼ିଶା କଥା
୭୦. ଅଳଙ୍କାର ପ୍ରବେଶ
୭୧. ସୋରାବ ଓ ରୁସ୍ତମ (ପଦ୍ୟାନୁବାଦ)
୭୨. ଅପରୀକ୍ଷିତ କାରକ
୭୩. ପଞ୍ଚତନ୍ତ୍ର (ସଂପୂର୍ଣ୍ଣ ଗ୍ରନ୍ଥ) - ପ୍ରଥମ ଭାଗ (୧ମ ଖଣ୍ଡ ଠାରୁ ୫ମ ଖଣ୍ଡ) ଓ ଦ୍ୱିତୀୟ ଭାଗ
୭୪. ହିତୋପଦେଶ (ସଂପୂର୍ଣ୍ଣ ଗ୍ରନ୍ଥ) ପ୍ରଥମ ଖଣ୍ଡ ଠାରୁ ତୃତୀୟ ଖଣ୍ଡ
୭୫. ବିଗ୍ରହ ଓ ସନ୍ଧି
୭୬. ଶକୁନ୍ତଳା (କାଳିଦାସ) - ୧୯୭୩

## ଟ୍ରାନ୍ସଲେସନ୍ :

୧. M.E. Translation and Composition

## ସଂପାଦନା :

୧. ରକ୍ମିଣୀ ବିଭା
୨. ଚିଲିକା
୩. ଦରବାର
୪. ମଥୁରା ମଙ୍ଗଳ
୫. ରସ କଲ୍ଲୋଳ
୬. ବିଦଗ୍ଧ ଚିନ୍ତାମଣି
୭. ଚନ୍ଦ୍ରଭାଗା

## ଜୀବନୀ :

୧. ଗଙ୍ଗାଧର ମେହେର
୨. ନନ୍ଦକିଶୋର ବଳ
୩. କବିସୂର୍ଯ୍ୟ ବଳଦେବ ରଥ
୪. ସାଧୁସୁନ୍ଦର ଦାସ

## ଆତ୍ମଜୀବନୀ :

୧. ସୁଅ ମୁହଁର ପତର - ୧୯୮୨*

## ଅନ୍ୟାନ୍ୟ ସୂତ୍ରରୁ : ୩ ଖଣ୍ଡ**

## ମୋଟ କୃତି ସଂଖ୍ୟା : ୧୩୦***

* 'ସୁଅ ମୁହଁର ପତର' ଆତ୍ମଜୀବନୀଟି ପ୍ରଥମେ ଅଧ୍ୟାପକ ଶ୍ରୀଧର ଦାସଙ୍କ ଦ୍ୱାରା ନିଜସ୍ୱ ଖର୍ଚ୍ଚରେ ପ୍ରକାଶିତ ହୋଇଥିଲା ।

** ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ ଆତ୍ମଜୀବନୀ ଲେଖିବା ବେଳକୁ ନିଜ ସାହିତ୍ୟ କୃତିକୁ ସ୍ମୃତିଚାରଣ କରି ୧୧୯ ଖଣ୍ଡ ପୁସ୍ତକର ନାମ ଉଲ୍ଲେଖ କରିଛନ୍ତି । ଆତ୍ମଜୀବନୀକୁ ମିଶାଇଲେ ତାହା ହେବ ୧୨୦ ଖଣ୍ଡ । ମାତ୍ର ଏହି ଗ୍ରନ୍ଥର ଲେଖକ ବିଭିନ୍ନ ଗ୍ରନ୍ଥାଗାରରେ ଶ୍ରୀ ଦାସଙ୍କର ସାହିତ୍ୟ କୃତିକୁ ଅନୁଧ୍ୟାନ କରୁଥିବା ବେଳେ ଆଉ ୭ ଖଣ୍ଡ ପୁସ୍ତକର ସନ୍ଧାନ କରିଛନ୍ତି । ଯାହା ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ ନାହିଁ । ତାହା ହେଉଛି : ଅନୁବାଦ ବିଭାଗର 'ରିପ୍‌ଭ୍ୟାନ୍ ଉଇଙ୍କିଲ୍' - ୧୯୭୮,

'ଗ୍ରୀସ ଦେଶର ପୁରାଣ କାହାଣୀ' - ୧୯୭୫, 'ଓଏକ୍ ଫିଲ୍ଡର ଭାଇକାର' - ୧୯୮୦, 'ଗୃହୀ ଓ ସନ୍ନ୍ୟାସୀ' - ୧୯୭୫, 'ଗର୍କୀ କାହାଣୀ' - ଦ୍ୱିତୀୟ ଭାଗ - ୧୯୮୧, 'ମୋ ପାସାଁ କାହାଣୀ' - ଚତୁର୍ଥ ଭାଗ - ୧୯୭୮ ଓ 'ହିତୋପଦେଶ' ସଂପୂର୍ଣ୍ଣ ଗ୍ରନ୍ଥ । ଏହିପରି ଭାବରେ ତାଙ୍କର କୃତି ହେବ : ଅଭିଧାନ - ୩ ଖଣ୍ଡ, ବ୍ୟାକରଣ - ୧୧ ଖଣ୍ଡ, ଅନ୍ୟାନ୍ୟ ପାଠ୍ୟ-ପୁସ୍ତକ - ୧୩ ଖଣ୍ଡ, ପାଠ୍ୟ-ପୁସ୍ତକ ବିଷୟକ - ୧୧ ଖଣ୍ଡ, ଅନୁବାଦ - ୭୬ ଖଣ୍ଡ, ଟ୍ରାନ୍ସଲେସନ - ୧ ଖଣ୍ଡ, ସଂପାଦନା - ୭ ଖଣ୍ଡ, ଜୀବନୀ - ୪ ଖଣ୍ଡ ଓ ଆତ୍ମଜୀବନୀ - ୧ ଖଣ୍ଡ; ମୋଟ = ୧୨୭ ଖଣ୍ଡ ପୁସ୍ତକ ।

*** ଏହାଛଡ଼ା ଅନେକ ଯଶସ୍ୱୀ ଲେଖକଙ୍କ ପ୍ରବନ୍ଧାଦିରେ ମଧ୍ୟ ସେ ଆଉ କେତେକ ପୁସ୍ତକ ରଚନା କରିଥିବା କଥା ଉଲ୍ଲେଖ କରାଯାଇଛି । ଯେପରି : ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ସହ ମିଶି ସେ ଲେଖିଛନ୍ତି, "କୌତୁକ ପାଠ" (୧୯୫୯) ବା ଫକୀର ମୋହନ ସେନାପତିଙ୍କ 'ଛ ମାଣ ଆଠଗୁଣ୍ଠ'ର ସଂକ୍ଷିପ୍ତ ଅନୁବାଦ, "ପିଲାଙ୍କ ଛ ମାଣ ଆଠଗୁଣ୍ଠ" (ବିଭୂତି ପଟ୍ଟନାୟକ) ପ୍ରଭୃତି । ଯଦି ଏହି ଦୁଇଟି ପୁସ୍ତକକୁ ମିଶାଇ ଦିଆଯାଏ, ତେବେ ତାଙ୍କ କୃତି ସଂଖ୍ୟା ହେବ ୧୨୯ । ଅନ୍ୟପକ୍ଷରେ ଶ୍ରୀଧର ଦାସ ନିଜ ଆତ୍ମଜୀବନୀରେ ୨୮୨ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ, ସେ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ସାହଚର୍ଯ୍ୟରେ କଲେଜ ପିଲାଙ୍କ ପାଇଁ ଏକ 'ପ୍ରବନ୍ଧ' ପୁସ୍ତକ ସଂପାଦନା କରିଥିଲେ । ଏହି ପୁସ୍ତକଟିକୁ ମିଶାଇଦେଲେ ହେବ ମୋଟରେ ୧୩୦ ଖଣ୍ଡ ପୁସ୍ତକ । ଆଶା କରାଯାଉଛି ଅନୁସନ୍ଧାନ କଲେ ହୁଏତ ତାଙ୍କର ଆହୁରି ଅନେକ ପୁସ୍ତକର ସନ୍ଧାନ ମିଳିପାରିବ ।

ଅନୁବାଦ ବିଭାଗର କ୍ରମିକ ସଂଖ୍ୟା ୧୨ ଠାରୁ ଆରମ୍ଭ କରି ୭୦ ପର୍ଯ୍ୟନ୍ତ ଉଲ୍ଲେଖ ଥିବା ମୋଟ ୫୯ ଖଣ୍ଡ ପୁସ୍ତକ "ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା" ଶୀର୍ଷକ ଶୃଙ୍ଖଳା କ୍ରମରେ ଗ୍ରନ୍ଥ ମନ୍ଦିର, କଟକ-୨ଙ୍କ ଆନୁକୂଲ୍ୟରୁ ପ୍ରକାଶିତ । ଯଥାସମ୍ଭବ ଏହି ପୁସ୍ତକଗୁଡ଼ିକୁ ବିଜ୍ଞାନଭିତ୍ତିକ କରିବା ପାଇଁ ଏହାର ପୂର୍ବ ପ୍ରକାଶ କାଳ ଓ କେତେକ ଗ୍ରନ୍ଥର ପ୍ରଥମ ପ୍ରକାଶ କାଳକୁ ଉଲ୍ଲେଖ କରାଯାଇଛି । ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳାର ଅନ୍ୟାନ୍ୟ ପୁସ୍ତକଗୁଡ଼ିକ, ଯେଉଁଥିରେ ପ୍ରକାଶ କାଳ ଉଲ୍ଲେଖ କରାଯାଇନାହିଁ, ସେହିସବୁ ପୁସ୍ତକ ବର୍ତ୍ତମାନ ନୂତନ ସଂସ୍କରଣ : ୧୯୯୬ ଭାବରେ ପ୍ରକାଶ ପାଇଛି । ଏତଦ୍‌ବ୍ୟତୀତ 'ନବ ଅଭିଧାନ' ପ୍ରଭୃତି କେତେକ ପୁସ୍ତକ ମଧ୍ୟ ନୂତନ ସଂସ୍କରଣ ଭାବରେ ବର୍ତ୍ତମାନ ପ୍ରକାଶ ପାଇସାରିଛି ଓ 'ବିବିଧ କୋଷ' ବର୍ତ୍ତମାନ ପ୍ରକାଶ ଅପେକ୍ଷାରେ ରହିଛି ।

## (ଖ) ଅଧ୍ୟାପକ ଶ୍ରୀଧର ଦାସଙ୍କ ଉପରେ ଲେଖା ଯାଇଥିବା କେତେକ ମୂଲ୍ୟବାନ ପୁସ୍ତକ

| | | | |
|---|---|---|---|
| ୧. ଶ୍ରୀଧର ସ୍ମରଣିକା | : | ସଂପାଦନା | ପ୍ରଫେସର ଡକ୍ଟର ଶ୍ରୀନିବାସ ମିଶ୍ର |
| | | ପ୍ରକାଶକ | ଶ୍ରୀଧର ସ୍ମୃତି ସଂସଦ<br>୧୧୧, ଶହୀଦ୍ ନଗର,<br>ଭୁବନେଶ୍ୱର - ୭ |
| ୨. ଶ୍ରୀଧର ସ୍ମରଣେ | : | ସଂପାଦନା | ଶ୍ରୀ ହେମନ୍ତ କୁମାର ପରିଡ଼ା |
| | | ପ୍ରକାଶକ | ରଘୁନାଥଜୀଉ ମହାବିଦ୍ୟାଳୟ<br>ଦେଉଳସାହି, ତୁଳସୀପୁର,<br>କଟକ-୭୫୩୦୦୮ |
| | | ପ୍ରକାଶକାଳ : | ଅକ୍ଟୋବର, ୧୯୯୭ |
| ୩. ଆଦର୍ଶ ମଣିଷ ଶ୍ରୀଧର ଦାସ | : | ସଂପାଦନା | ଡକ୍ଟର ବିଭୁତି ପଟ୍ଟନାୟକ |
| | | ପ୍ରକାଶକ | ପ୍ରାଚୀ ପ୍ରକାଶନ<br>୨୨, ସୂର୍ଯ୍ୟକିରଣ ମାର୍କେଟ<br>ଶହୀଦ୍ ନଗର,<br>ଭୁବନେଶ୍ୱର - ୭୫୧୦୦୭ |
| | | ପ୍ରକାଶକାଳ : | ୨୦୦୩ |

***

## (ଗ) 'ସୁଅ ମୁହଁର ପତର' ଆତ୍ମଜୀବନୀର ବିଭିନ୍ନ ସଂସ୍କରଣ

| | | | |
|---|---|---|---|
| ୧. | ସୁଅ ମୁହଁର ପତର | : ଲେଖକ | ଶ୍ରୀଧର ଦାସ |
| | | ପ୍ରକାଶକ | ଶ୍ରୀଧର ଦାସ |
| | | ପ୍ରକାଶ କାଳ: | ୧୯୮୨ |
| ୨. | ସୁଅ ମୁହଁର ପତର | : ଲେଖକ | ଶ୍ରୀଧର ଦାସ |
| | | ପ୍ରକାଶକ | ଶ୍ରୀଧର ଦାସ ସ୍ମାରକୀ ପ୍ରତିଷ୍ଠାନ<br>ଉତ୍କଳ ବିଶ୍ୱବିଦ୍ୟାଳୟ,<br>ବାଣୀବିହାର,<br>ଭୁବନେଶ୍ୱର - ୭୫୧୦୦୪ |
| ୩. | ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥ<br>ସୁଅ ମୁହଁର ପତର | : ଲେଖକ | ଶ୍ରୀଧର ଦାସ |
| | | ପ୍ରକାଶକ | ସହଦେବ ପ୍ରଧାନ<br>ଫ୍ରେଣ୍ଡସ୍ ପବ୍ଲିଶର୍ସ,<br>ବିନୋଦ ବିହାରୀ,<br>କଟକ-୭୫୩୦୦୨ |
| | | ପ୍ରକାଶକାଳ : | ୨୦୦୨ (୨ୟ ସଂସ୍କରଣ) |
| ୪. | A Leaf in the Strem<br>(An Autobiography)<br>("ସୁଅ ମୁହଁର ପତର"ର<br>ଇଂରାଜୀ ଅନୁବାଦ) | Translated by : | Mary Mohanty<br>Lecturer,<br>Puri College, Puri<br>Publisher : Rupantar<br>L.D. Institute Campus<br>N-6-470, IRC Village,<br>Nayapalli,<br>Bhubaneswar-751015 |
| | | First Edition : | 2006 |



## (ଘ) 'ପଣ୍ଡିତ ଶ୍ରୀଧର ଦାସ ସ୍ମାରକୀ ବକ୍ତୃତାମାଳାର ପ୍ରକାଶନ

୧. ତୁଳନାତ୍ମକ ସାହିତ୍ୟ : ତତ୍ତ୍ୱ ଓ ପ୍ରୟୋଗ :

ସଂପାଦନା ଡକ୍ଟର ବିଜୟ କୁମାର ଶତପଥୀ

ପ୍ରକାଶକ ପଣ୍ଡିତ ଶ୍ରୀଧର ଦାସ
ମେମୋରିଆଲ ଟ୍ରଷ୍ଟ
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର

ପ୍ରକାଶକାଳ : ୨୦୦୪

୨. ଅନୁବାଦ କଳା : ପରିସୀମା ଓ ପୁରୋଦୃଷ୍ଟି :

ସଂପାଦନା ଡକ୍ଟର ସଂଘମିତ୍ରା ମିଶ୍ର

ପ୍ରକାଶକ ପଣ୍ଡିତ ଶ୍ରୀଧର ଦାସ
ମେମୋରିଆଲ ଟ୍ରଷ୍ଟ
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର
ପ୍ରକାଶକାଳ : ୨୦୦୬

***

## (ଡ) ଶ୍ରୀଧର ଦାସ ପଠାଇଥିବା କେତେକ ଚିଠି :

(୧) ବିଶିଷ୍ଟ ସାହିତ୍ୟିକ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ନିକଟକୁ ପଠାଯାଇଥିବା ଏକ ଚିଠି ।*

### ଅଧ୍ୟାପକ ଶ୍ରୀଧର ଦାସ

କଟକ
୧.୨.୭୮

ପ୍ରିୟ କୁଞ୍ଜବାବୁ,

ସମାଜରେ ଆପଣଙ୍କର 'ଚନ୍ଦ୍ରମୋହନ' ପଢ଼ିଲି । କେତେକଥା ମନେ ପଡ଼ିଲା । ସେ ଆମର ହେଡ୍‌ମାଷ୍ଟର ଥିଲେ ପୁରୀ ଜିଲ୍ଲା ସ୍କୁଲରେ । ୧୯୧୯ ମସିହାରେ ସେ ହେଡ୍‌ମାଷ୍ଟର ହୋଇ ଅଳ୍ପ କେତେମାସ ମାତ୍ର ଥିଲେ । କିନ୍ତୁ ସେଇ କେତୋଟି ମାସ ଅବିସ୍ମରଣୀୟ ।

ସେ ଆସିବା ପୂର୍ବରୁ ତାଙ୍କ ବିଷୟରେ ଆମର ଅଦ୍ଭୁତ ଧାରଣା ଥିଲା । ଉତ୍କଳ ସାହିତ୍ୟରେ ତାଙ୍କର ଯୌବନ କାଳର ଏକ ଫଟୋ ବାହାରିଥିଲା । ଶୁଣିଥିଲୁ, ତାଙ୍କ ଭଳି ରାଗୀ କଠୋର ଲୋକ ପୃଥିବୀରେ ନଥିବେ । ଟ୍ରେନିଂ ସ୍କୁଲର ଛାତ୍ରମାନଙ୍କୁ କେଉଁଠି ଜରିମାନାରେ ବ୍ୟତିବ୍ୟସ୍ତ କରିଦିଅନ୍ତି । ତାଙ୍କ ଜ୍ୱାଳାରେ ସ୍କୁଲରେ ସମସ୍ତେ ଥରହର । ଯାହାହେଉ, ସେ ଆସିଲେ । ଦେଖିଲୁ ଯେ ପ୍ରାୟ ପଚାଶ ବର୍ଷର ଜଣେ ବୃଦ୍ଧ । ଶୃଙ୍ଖଳା ରକ୍ଷାରେ କଠୋରତାର ଜୀବନ୍ତ ପ୍ରତିମୂର୍ତ୍ତି । ବାସ୍ତବରେ ସେ ଗମ୍ଭୀର ସ୍ୱରରେ କାହାକୁ ଡାକିଲେ ତା'ର ହୃତ୍‌କମ୍ପ ହେବାର କଥା । ମୋତେ ବୋର୍ଡିଂର ମନିଟର ଭାବରେ ତାଙ୍କର ନିକଟ ସମ୍ପର୍କରେ ଆସିବାକୁ ହୋଇଥିଲା । ସେ ଥିଲେ ବୋର୍ଡିଂର ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ । ବୋର୍ଡିଂ ସଂଲଗ୍ନ ଘରେ ସପରିବାର ରହୁଥିଲେ । ସ୍କୁଲରୁ ଆସିବା ପରେ ତାଙ୍କର ଗେରୁଆ ପରିଧାନ, ଦେହ ସାଧାରଣତଃ ମୁକ୍ତ, ବେଳେବେଳେ ସେହି ଗେରୁଆ ଲୁଗାର ଗୋଟିଏ ଅଂଶ ଉପର ଭାଗରେ ପଡ଼ିଥାଏ । ବାଟରେ ଚାଲିଲାବେଳେ ବରାବର ଗୋଟିଏ ପ୍ରାନ୍ତରେ ଯାଉଥିବେ । ସେ ଚାଲିରେ ଗୋଟାଏ ବିଶେଷତ୍ୱ ଥିଲା ।

---

* ଏହି ଚିଠିଟି ଡଃ କୁଞ୍ଜ ବିହାରୀ ଦାଶଙ୍କ ମୋ କାହାଣୀ ପୁସ୍ତକର ୧୯୧ ପୃଷ୍ଠାରେ ରହିଛି ।

ଫକୀରମୋହନଙ୍କ ସମ୍ବନ୍ଧରେ ସେ କହୁଥିଲେ, ତାଙ୍କର ହୃଦୟ ରସଗୋଲା ପରି ଥିଲା । କିନ୍ତୁ ମୋର ମନେହୁଏ, ଚନ୍ଦ୍ରମୋହନବାବୁ ଥିଲେ ନାରିକେଳ । ତାଙ୍କର ବାହାର ଯେତିକି ରୂକ୍ଷ, ଅନ୍ତର ସେତିକି ସରସ ଥିଲା ।

ସେ ଯେଉଁଦିନ ସ୍କୁଲରୁ ବିଦାୟ ନେଲେ ସେଦିନ ସଭାସମିତି କିଛି ହୋଇନଥିଲା । ରାତିରେ ଆମେ ବୋର୍ଡିଂରେ ଗୋଟିଏ ବିଦାୟ ସଭା କଲୁ । ଚଉକି ଟେବୁଲ ପଡ଼ିଲା । ଚନ୍ଦ୍ରମୋହନବାବୁଙ୍କୁ ଡାକିଲୁ । ଗେରୁଆ ଲୁଗା ପିନ୍ଧି ଗୋଟାଏ କାନି ବେକରେ ଗୁଡ଼ାଇ ସେ ଆସି ପହଞ୍ଚିଲେ । ପଚାରିଲେ—ପିଲାଏ, କାହିଁକି ଡାକିଛ ? ଆମେ କହିଲୁ—ଆପଣ ଯାଉଛନ୍ତି । ଆମକୁ କିଛି ଉପଦେଶ ଦିଅନ୍ତୁ ।

ସେ ଚଉକିରେ ନବସି ତଳେ ବାଲିରେ ବସିଲେ । ଆମେ ମଧ୍ୟ ତାଙ୍କୁ ବେଢ଼ି ତଳେ ବସିଲୁ । ସେ କହିଲେ—ଆଚ୍ଛା, ମୁଁ ଗୋଟାଏ କଥା କହି ଯିବି—ତୁମମାନଙ୍କର ଚରିତ୍ର ଏପରି ହେଉ, ଯେପରିକି ଶତ୍ରୁ ସୁଦ୍ଧା ସେଥିରେ ଦୋଷ ଦେଖିନପାରୁ ।

ବେଶ୍ ବିଦାୟ ସଭା ଏତିକିରେ ଶେଷ । ବୋଧହୁଏ ଏଡ଼େ ସାରବାନ୍, ଏଡ଼େ କ୍ଷୁଦ୍ର ବକ୍ତୃତା ଅନ୍ୟ କେହି ଦେଇନଥିବେ ।

ସେ ସବୁ ବିଦ୍ୟାରେ ପଣ୍ଡିତ ଥିଲେ । ରାତି ଅଧରେ ବୋର୍ଡିଂ ପିଲାମାନଙ୍କୁ ଡାକି ତାରାମାନଙ୍କୁ ଚିହ୍ନାଇଥିଲେ । ଇଂରାଜୀ, ଭୂଗୋଳ, ଇତିହାସ—ସବୁଥିରେ ତାଙ୍କର ଗଭୀର ପ୍ରବେଶ ଥିଲା । ତାଙ୍କ ପାଣ୍ଡିତ୍ୟ ପିଲାଙ୍କୁ ଗୋଟିଏ ଅସୁବିଧାରେ ପକାଉଥିଲା । ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକ ସେ ଶେଷ କରିପାରୁନଥିଲେ । ଗୋଟିଏ ପିରିୟଡ଼ରେ ହୁଏତ ଗୋଟିଏ ଇଂରେଜୀ Lessonରୁ ଧାଡ଼ିଏ ଦୁଇଧାଡ଼ି ହୋଇପାରେ ନାହିଁ । କାରଣ ଦିନେ ଦିନେ ଗୋଟିଏ ଗୋଟିଏ ଶବ୍ଦ ଉପରେ ହୁଏତ ପିରିୟଡ଼ ଶେଷ । କିନ୍ତୁ ବର୍ଷ ଭିତରେ ସେ ଯଦି ପୃଷ୍ଠାଏ ଦୁଇପୃଷ୍ଠା ପଢ଼ାନ୍ତି ତେବେ ମଧ୍ୟ କ୍ଷତି ନଥାନ୍ତା, କାରଣ ଯିଏ ତାଙ୍କ ପଢ଼ାକୁ ନିୟମିତ ଶୁଣିଥିବ ସେ ଅକ୍ଲେଶରେ ଅନ୍ୟ ଅଂଶ ସବୁ ନିଜେ ନିଜେ ପଢ଼ି ବୁଝିପାରିବ । ସେ ଶକ୍ତି ଦେଉଥିଲେ; ସାହାଯ୍ୟ ଦେଉନଥିଲେ । ତାଙ୍କର ବ୍ୟାକରଣ ସୋପାନ ବହିର ପ୍ରାୟ ୪୦ଟି ସଂସ୍କରଣ ହୋଇଥିଲା । ପ୍ରାଥମିକ ବିଦ୍ୟାଳୟର ପାଠ୍ୟ କଥାବଳୀର ଗଦ୍ୟାଂଶ ବୋଧହୁଏ ଇ.ମାର୍ସଡେନ୍‌ଙ୍କ ଲିଖିତ ଇଂରେଜୀର ଅନୁବାଦ, କିନ୍ତୁ ସେଥିରେ ଥିବା କବିତାଗୁଡ଼ିକ ଚନ୍ଦ୍ରମୋହନବାବୁଙ୍କର । ସେଥିରେ କେତୋଟିରେ ଋତୁ ବର୍ଣ୍ଣନା ଅଛି । ମଧୁବାବୁଙ୍କ ସାହିତ୍ୟ କୁସୁମରେ ମଧ୍ୟ ଋତୁ ବର୍ଣ୍ଣନା ଅଛି । କିନ୍ତୁ, ଦୁହିଙ୍କ ବର୍ଣ୍ଣନାର ପାର୍ଥକ୍ୟ ପାଠକ ଉପଲବ୍ଧି କରିପାରିବେ ।

ଚନ୍ଦ୍ରମୋହନ ଶୀତଋତୁ ବର୍ଣ୍ଣନାରେ ଲେଖିଛନ୍ତି–

"ନିଶାରେ, ଅଜସ୍ର ତୁଷାର ବର୍ଷିଲା,
ଧଳାଭସ୍ମ ବୋଳା ତପସ୍ୱୀ ମହିଳା ପରାୟେ ଯାମିନୀ ଦିଶିଲା ।"

ଶେଫାଳୀକୁ ଦେଖି କବି ଚନ୍ଦ୍ରମୋହନ କଳ୍ପନା କରିଛନ୍ତି–

"ପ୍ରବାଳବୃନ୍ତରେ ଖଚିତ ସ୍ଫଟିକ ଦଳ
ତୁଳନା ଲଭନ୍ତା ହୋଇଲେ ସୁବାସିତ କୋମଳ ।"

ସନ୍ତାନହରା ରମଣୀର ଲୋତକଧାର ତାଙ୍କ ଚକ୍ଷୁରେ ଦେଖାଯାଇଛି–

"ତା' ହୃଦ ସଙ୍ଗରେ ସେ ଶିଶୁକୁମରେ ଯେ, କୋମଳ ସୂତ୍ରେ ଭଲେ
ବାନ୍ଧିଥିଲା ବିହି ଛିଡ଼ିଯାନ୍ତେ ତାହା ଲମ୍ବିଛି ଲୋତକ ଛଳେ ।"

ବେଶି ଲେଖିନଥାନ୍ତୁ ପଛକେ, ସେ ଥିଲେ ଯଥାର୍ଥ କବି । ଖାଲି ସମୁଦ୍ର ସୁନ୍ଦର ନୁହେଁ, ତୁଷାର ବିନ୍ଦୁ ମଧ୍ୟ ସୁନ୍ଦର ।

ଆପଣ ତ ପୁଣି ବିଶ୍ୱଭାରତୀ ସମ୍ପର୍କରେ ଆସିଲେ । ସେଠାରେ ସୁବିଧା ଅଛି । ଚନ୍ଦ୍ରମୋହନଙ୍କର ରଚନା ସଂଗ୍ରହ କରନ୍ତୁ, ଜୀବନୀ ଲେଖନ୍ତୁ ।

ଥରେ ମୋ ମୁଣ୍ଡରେ ଗୋଟାଏ ବିଚିତ୍ର ଚିନ୍ତା ପଶିଥିଲା । ବର୍ଣ୍ଣାଡଶଙ୍କ ଖଣ୍ଡିଏ ଚିଠିର ମୂଲ୍ୟ ହଜାର ହଜାର ଟଙ୍କା ହେଉଛି । ଲେଖକମାନଙ୍କ ଦସ୍ତଖତ ପାଇଁ ମଧ୍ୟ ପ୍ରଚୁର ମୂଲ୍ୟ ଦେବାକୁ ପଡ଼ିଥାଏ । ଉତ୍କଳ ସାହିତ୍ୟ ସମାଜ ଆମ ସାହିତ୍ୟିକମାନଙ୍କର ହାତଲେଖା– ଚିଠି, ପ୍ରବନ୍ଧ, ଦସ୍ତଖତ ଆଦି ସଂଗ୍ରହ କଲେ, କିପରି ହୁଅନ୍ତା ! ରବି ଠାକୁରଙ୍କ ପତ୍ରାବଳୀ ପ୍ରଭୃତି ପତ୍ର ସାହିତ୍ୟ ପରି ଓଡ଼ିଆରେ ପତ୍ର ସାହିତ୍ୟର ସୃଷ୍ଟି ହୋଇପାରିବା ଅସମ୍ଭବ କି ? ଅବଶ୍ୟ ଆମର କବି ଲିପି ଅଛି । କିନ୍ତୁ ଅଳଙ୍କାର ଭିତରେ ସେହି ନିମ୍ବକାଠିଟି ।

ଖଣ୍ଡେ ପୁରୁଣା ବହିରୁ ଚନ୍ଦ୍ରମୋହନବାବୁଙ୍କର ଇଂରେଜୀ ଦସ୍ତଖତ ପାଇଲି । ଏଇଟି ରଖିବା ଯୋଗ୍ୟ ନୁହେଁ କି ?

ସାହିତ୍ୟିକମାନଙ୍କର ସ୍ୱହସ୍ତ ଲେଖାର ସଂଗ୍ରହ ବିଷୟରେ ଚିନ୍ତା କରିବାକୁ ଅନୁରୋଧ ।

ମୁଁ ଏବେ ବିଶେଷ ଦୁର୍ବଳ ଅନୁଭବ କରୁଛି । କୁଆଡ଼େ ଯିବାଆସିବା କରିବାକୁ କଷ୍ଟବୋଧ କରୁଛି । ଆଶା, ଭଲ ଥିବେ ।

ଆପଣଙ୍କର

ଶ୍ରୀଧର ଦାସ

(୨) ଉତ୍କଳ ବିଶ୍ୱବିଦ୍ୟାଳୟର ପତ୍ର ବିନିମୟ ପାଠ୍ୟକ୍ରମର ନିର୍ଦ୍ଦେଶକଙ୍କ ନିକଟକୁ ପଠାଯାଇଥିବା ଖଣ୍ଡିଏ ଚିଠି ।

To The Director, Correspondence Course,
Utkal University, BBS-4

Sir,

Please refer to your office letter No 42053 dt 19.5.75 I am sending herewith the Lessons on the book "Samukar Swapna". Since the book is intended for non-detailed study I have not included any objective type questions. The lessons have been prepared from the examination point of view of Intermediate Candidates. I shall be thankful if you kindly go through the lessons and offer your suggestions if any.

I hope to send the lessons on the two remaining books in about weeks.

Yours ff.

S. Das

15/6/75

# (ଚ) ଶ୍ରୀଧର ଦାସଙ୍କ ନିକଟକୁ ଆସିଥିବା କେତେକ ଚିଠି :

(୧) ଟିକିଲିର ରାଜାସାହେବଙ୍କ ନିକଟରୁ ଆସିଥିବା ଏକ ଚିଠି ।

From,
Sri A. N. H. Jagadev,
Raja Saheb of Tekkali.
P.O. Tekkali (Dt. Srikakulam)

POST CARD

CORRECT ADDRESS ENSURES QUICK DELIVERY

Mr. Sridhar Das M.A.,
Professor, The Christ College.
P.O. Cuttack
(Orissa)

## (ଛ) ଶ୍ରୀଧର ଦାସଙ୍କ ସ୍ୱାକ୍ଷରଯୁକ୍ତ ସ୍ୱହସ୍ତ ଲେଖା

ଶାନ୍ତି ପାଠ

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ॥

ଶାନ୍ତି ବାଚନ

ହେ ପରମବ୍ରହ୍ମ ନାରାୟଣ । ଏ ବିଶ୍ୱେ ତୁମ୍ଭି ପୂର୍ଣ୍ଣ ଜାଣ ॥
କାର୍ଯ୍ୟବ୍ରହ୍ମ ହିଁ ପୂର୍ଣ୍ଣ ପୁଣ । ପୂର୍ଣ୍ଣରୁ ପୂର୍ଣ୍ଣର ଜନମ ॥
ପ୍ରଳୟ କାଳେ ପରବ୍ରହ୍ମ । କାର୍ଯ୍ୟବ୍ରହ୍ମର ପୂର୍ଣ୍ଣ ନାଶ ॥
ଗ୍ରହଣ କରି ରହେ ପୂର୍ଣ୍ଣ । ମୋହର ପରବ୍ରହ୍ମ ଲୀନ ॥
ଆଧିଭୌତିକ ଆଧ୍ୟାତ୍ମିକ । ଆଉରି ଯେ ଆଧିଦୈବିକ ॥
ଏ ସେହି ତ୍ରିତାପ ଜର୍ଜରି । ଲଭନ୍ତୁ ସେ ସକଳେ ଶାନ୍ତି ॥

ଶ୍ରୀଧର ଦାସ

# ସହାୟକ ଗ୍ରନ୍ଥସୂଚୀ


୧. ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରା - ଅଧ୍ୟାପକ ଗଗନେନ୍ଦ୍ର ନାଥ ଦାଶ / ଓଡ଼ିଆ ଗବେଷଣା ପରିଷଦ, ଅରବିନ୍ଦ ନଗର, କଟକ

୨. ମୋ କାହାଣୀ - କୁଞ୍ଜବିହାରୀ ଦାଶ / ଓଡ଼ିଶା ବୁକ୍‌ଷ୍ଟୋର, ବିନୋଦ ବିହାରୀ, କଟକ

୩. ସୋରାବ ଓ ରୁସ୍ତମ (ଦ୍ୱିତୀୟ ସଂସ୍କରଣ) - ଶ୍ରୀଧର ଦାସ / ଉତ୍କଳ ସାହିତ୍ୟ ପ୍ରେସ୍, କଟକ

୪. ନବ ଅଭିଧାନ (ଦ୍ୱିତୀୟ ସଂସ୍କରଣ) - ଶ୍ରୀଧର ଦାସ / ଗ୍ରନ୍ଥ ମନ୍ଦିର, କଟକ

୫. ରସ କଲ୍ଲୋଳ - ଶ୍ରୀଧର ଦାସ / ଗ୍ରନ୍ଥ ମନ୍ଦିର, କଟକ

୬. ସୁଅ ମୁହଁର ପତର - ଶ୍ରୀଧର ଦାସ

୭. ମୋ ପାସାଁଙ୍କ କାହାଣୀ (ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ) - ଶ୍ରୀଧର ଦାସ / ଗ୍ରନ୍ଥ ମନ୍ଦିର, କଟକ

୮. ଜୀବନ ବର୍ତ୍ତିକା - ଶ୍ରୀ ଶ୍ରୀଧର ଦାସ ଓ ପଠାଣି ପଟ୍ଟନାୟକ / ଗ୍ରନ୍ଥ ମନ୍ଦିର, କଟକ

୯. ଆଦର୍ଶ ମଣିଷ ଶ୍ରୀଧର ଦାସ - (ସଂ) ବିଭୁତି ପଟ୍ଟନାୟକ / ପ୍ରାଚୀ ପ୍ରକାଶନ, ଶହୀଦ୍ ନଗର, ଭୁବନେଶ୍ୱର

୧୦. ଶ୍ରୀଧର ସ୍ମରଣେ - (ସଂ) ହେମନ୍ତ କୁମାର ପରିଡ଼ା / ରଘୁନାଥଜୀଉ ବିଦ୍ୟାଳୟ, ଦେଉଳସାହି, କଟକ-୭୫୩୦୦୮

୧୧. ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ - କେଦାରନାଥ ମହାପାତ୍ର

୧୨. ସର୍ବସାର ବ୍ୟାକରଣ - ପଣ୍ଡିତ ନାରାୟଣ ମହାପାତ୍ର ଓ ଶ୍ରୀଧର ଦାସ / ନିଉ ଷ୍ଟୁଡେଣ୍ଟସ ଷ୍ଟୋର, କଟକ

୧୩. ମାଧ୍ୟମିକ ଓଡ଼ିଆ ବ୍ୟାକରଣ - ମାଧ୍ୟମିକ ଶିକ୍ଷା ବୋର୍ଡ, ଓଡ଼ିଶା

୧୪. ଅନୁବାଦ କଳା : ପରିସୀମା ଓ ପୁରୋଦୃଷ୍ଟି - ଡକ୍ଟର ସଂଘମିତ୍ରା ମିଶ୍ର ପଣ୍ଡିତ ଶ୍ରୀଧର ଦାସ ମେମୋରିଆଲ ଟ୍ରଷ୍ଟ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

୧୫. ଶ୍ରୀଧର ସ୍ମରଣିକା - (ସଂ) ପ୍ରଫେସର ଡଃ ଶ୍ରୀ ଶ୍ରୀନିବାସ ମିଶ୍ର / ଶ୍ରୀଧର ସ୍ମୃତି ସଂସଦ, ଶହୀଦ୍ ନଗର, ଭୁବନେଶ୍ୱର
୧୬. ସ୍ମୃତି ବର୍ତ୍ତିକା - (ସଂ) ଅଭିରାମ ମହାପାତ୍ର / ଗ୍ରନ୍ଥ ମନ୍ଦିର, କଟକ
୧୭. ଆଲୋଚନା ପତ୍ର - ଡଃ କ୍ଷେତ୍ରବାସୀ ନାୟକ / ସାଥୀ ମହଲ, କଟକ
୧୮. Art of Translation - T.H. Warren
୧୯. The Art of Translation - Dr. C. Rajgopalchary
୨୦. Selected Essays - T.S. Eliot / Faber & Faber Ltd., London
୨୧. A leaf in the Stream (An autobiography) - (Tr) Mary Mohanty, Rupantar, Bhubaneswar
୨୨. History of Orissa (1st Edition) - H.K. Mahtab

## ପତ୍ର ଓ ପତ୍ରିକା

୧. ସହକାର (୫ମ ସଂଖ୍ୟା, ୧.୧୪ ସଂଖ୍ୟା - ୩ୟ ଭାଗ,- ୧୨ଶ ସଂଖ୍ୟା - ୫ ଭାଗ, ସ୍ୱନକ୍ଷତ୍ର ସଂଖ୍ୟା - ଜାନୁୟାରୀ, ୨୦୦୫)
୨. ମନପବନ ୮ମ ବର୍ଷ - ୩ୟ ଓ ୪ର୍ଥ ସଂଖ୍ୟା
୩. ପ୍ରଜାତନ୍ତ୍ର ସେପ୍ଟେମ୍ବର, ୨୪/୨୫, ୧୯୫୦
୪. ଗଳ୍ପ (ଉପନ୍ୟାସ ବିଶେଷାଙ୍କ) : ପୂଜା - ୨୦୦୫
୫. ଠେକା ଓ ଠେଙ୍ଗାର ମଣିଷ (ଦାଶରଥି ପଟ୍ଟନାୟକ ବିଶେଷାଙ୍କ)
୬. ଶ୍ରୀଧର ଦାସଙ୍କ ନିକଟକୁ ଆସିଥିବା ଓ ସେ ଅନ୍ୟଙ୍କ ନିକଟକୁ ପଠାଇଥିବା ଚିଠି, ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି ପ୍ରଭୃତି ଅନେକ ଉପାଦେୟ ଦ୍ରବ୍ୟ (ପରିଶିଷ୍ଟରେ ତାହାର ଫଟୋଚିତ୍ର ଦିଆଯାଇଛି)
୭. ପ୍ରଫେସର ପଠାଣି ପଟ୍ଟନାୟକଙ୍କ ସହିତ 'ସାକ୍ଷାତକାର' / ତା : ୦୭.୦୧.୨୦୦୭
୮. Indian Literature (234) / July-Aug-2006 / Sahitya Akademi, New Delhi

***



ଡକ୍ଟର ରବିନାରାୟଣ ମହାରଣାଙ୍କ କଟକସ୍ଥ ଦରଘାବଜାରରେ ଏକ କୌଳିକ ଚିତ୍ରକାର ପରିବାରରେ ୧୯୬୩ ମସିହା ଜାନୁଆରୀ ମାସ ୨ ତାରିଖରେ ଜନ୍ମ । ତାଙ୍କର ପ୍ରଥମ ସାରସ୍ୱତ ସ୍ୱାକ୍ଷର ସ୍ୱରୂପ କବିତା 'ଭୂଗୋଳ ଗୀତ' ଓ 'ଦୃଶ୍ୟ' ନାମକ ଏକ ଚିତ୍ର ସ୍ଥାନୀୟ ପ୍ୟାରୀ ମୋହନ ଏକାଡେମୀର ମୁଖପତ୍ର 'ଉତ୍କଳ ପୁତ୍ର' (୧୯୭୫)ରେ ପ୍ରକାଶ ପାଏ ଓ ସେହିଦିନଠାରୁ ସେ ସାହିତ୍ୟ ଓ ଚିତ୍ରକଳାର ସମ୍ମୋହନରେ ବାନ୍ଧି ହୋଇ ରୁହନ୍ତି । ସମସାମୟିକ ଅନେକ ପତ୍ର-ପତ୍ରିକାରେ ତାଙ୍କର ସାରସ୍ୱତ ସ୍ୱାକ୍ଷର ବେଶ୍ ସୁସ୍ପଷ୍ଟ । ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଅନୁବାଦ କ୍ଷେତ୍ରରେ ତାଙ୍କର ଲେଖନୀ ଚଳଚଞ୍ଚଳ । ୧୯୯୬ ମସିହାରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ ପ୍ରଫେସର ଡକ୍ଟର ଦାଶରଥି ଦାସଙ୍କ ତତ୍ତ୍ୱାବଧାନରେ 'ସଚ୍ଚିଦାନନ୍ଦ ରାଉତରାୟଙ୍କ କାବ୍ୟ କୃତି' ଶୀର୍ଷକ ସନ୍ଦର୍ଭ ଉପସ୍ଥାପନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ 'କଳା ବିଭୂଷଣ' ଉପାଧି ପ୍ରାପ୍ତ । ସଂପ୍ରତି କଟକର ଦେଉଳସାହି ସ୍ଥିତ ରଘୁନାଥଜୀଉ ମହାବିଦ୍ୟାଳୟରେ ସେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପନାରତ ।



ଓଡ଼ିଶା ସାହିତ୍ୟ ଏକାଡେମୀ

ISBN : 81-7586-167-3